# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**September-October- 2016**

୭୩ ଭାଗ　　୨ୟ – ୩ୟ ସଂଖ୍ୟା　ଭାଦ୍ର –କାର୍ତ୍ତିକ　　ସେପ୍ଟେମ୍ବର–ଅକ୍ଟୋବର – ୨୦୧୬



---



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪–୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦



# ସୂଚୀ

ସେପ୍ଟେମ୍ବର-ଅକ୍ଟୋବର-୨୦୧୬

# ଶ୍ରଦ୍ଧାଞ୍ଜଳି



## ମହାତ୍ମା ଗାନ୍ଧୀ

**୦୨.୧୦.୧୮୬୯ – ୩୦.୦୧.୧୯୪୮**

### ମୋ' ସ୍ୱପ୍ନର ଭାରତ

'ମୁଁ ଏପରି ଭାରତବର୍ଷ ନିମନ୍ତେ କାମ କରିବି, ଯେଉଁଠି ଦରିଦ୍ରରୁ ଦରିଦ୍ରତମମାନେ ଅନୁଭବ କରିବେ ଯେ ଏହା ସେମାନଙ୍କର ଦେଶ, ଯାହାର ନିର୍ମାଣରେ ସେମାନଙ୍କର ଫଳପ୍ରଦ ଅବଦାନ ରହିଥିବ, ଏପରି ଭାରତବର୍ଷ ଯେଉଁଠାରେ କି ଜନସାଧାରଣଙ୍କ ମଧ୍ୟରେ ଛୋଟ ବଡ଼ ବୋଲି କିଛି ଶ୍ରେଣୀ ଭେଦ ନଥିବ, ଏପରି ଭାରତବର୍ଷ ଯେଉଁଠାରେ କି ସମସ୍ତ ସମ୍ପ୍ରଦାୟ ପୂର୍ଣ୍ଣ ସଂଗତିରେ ବାସ କରିବେ, ଏପରି ଏକ ଭାରତବର୍ଷ ଯେଉଁଠାରେ ଅଭିଶପ୍ତରୂପୀ ଅସ୍ପୃଶ୍ୟତା କିମ୍ବା ମାଦକ ଓ ନିଶାଦ୍ରବ୍ୟର ସ୍ଥାନ ନଥିବ, ପୁରୁଷଙ୍କ ପରି ମହିଳାମାନେ ସମାନ ଅଧିକାର ଉପଭୋଗ କରିବେ ଆଉ ଅବଶିଷ୍ଟ ପୃଥିବୀ ସହ ଆମେ ଶାନ୍ତିରେ ସହାବସ୍ଥାନ କରିବୁ । ଏହା ହେଉଛି ମୋ' ସ୍ୱପ୍ନର ଭାରତବର୍ଷ ।'

– ଏମ୍.କେ. ଗାନ୍ଧୀ

# ଶ୍ରଦ୍ଧାଞ୍ଜଳି



ସର୍ଦ୍ଦାର ବଲ୍ଲଭଭାଇ ପଟେଲ
୩୧.୧୦.୧୮୭୫ – ୧୫.୧୨.୧୯୫୦



ଜୟପ୍ରକାଶ ନାରାୟଣ
୧୧.୧୦.୧୯୦୨ – ୦୮.୧୦.୧୯୭୯



ଲାଲ ବାହାଦୁର ଶାସ୍ତ୍ରୀ
୦୨.୧୦.୧୯୦୪ – ୧୧.୦୧.୧୯୬୬



ଉତ୍କଳମଣି ଗୋପବନ୍ଧୁ ଦାସ
୦୯.୧୦.୧୮୭୭ – ୧୭.୦୬.୧୯୨୮

# ଶ୍ରଦ୍ଧାଞ୍ଜଳି



ସୁନାମଧନ୍ୟ ଚିତ୍ରଶିଳ୍ପୀ ଓ ସାହିତ୍ୟିକ ଦିନନାଥ ପାଠୀ





# ଶ୍ରଦ୍ଧାଞ୍ଜଳି





ଓଡ଼ିଆ ଚଳଚ୍ଚିତ୍ର ଜଗତର
ବିଶିଷ୍ଟ ଅଭିନେତା ଓ ନିର୍ଦ୍ଦେଶକ
ଗୋବିନ୍ଦ ତେଜ୍



ବିଶିଷ୍ଟ ଲେଖକ
ଅପୂର୍ବ ରଞ୍ଜନ ରାୟ



# ସମ୍ପାଦକୀୟ



ଜାମ୍ମୁ କାଶ୍ମୀରର ଉରି ଆତଙ୍କବାଦୀ ଆକ୍ରମଣରେ ଦେଶମାତୃକାର ସେବାରେ ଶହୀଦ୍ ହୋଇଥିବା ବୀର ଯବାନମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ସମ୍ପାଦକୀୟ ପୃଷ୍ଠାଟି ଉତ୍ସର୍ଗୀକୃତ... ।

ଲେଲିନ୍ ମହାନ୍ତି

ସମ୍ପାଦକ

# ମହାନଦୀ ପ୍ରସଙ୍ଗ

ଭାରତୀୟ ସଂସ୍କୃତି ଓ ପରମ୍ପରାରେ ନଦୀ ହେଉଛି ମାତୃକୈନ୍ଦ୍ରିକ ପୂଜନୀୟା । ପୁରାକାଳରେ ଏହି ନଦୀର ଉଭୟ କୂଳରେ ସଭ୍ୟତା ଗଢି ଉଠିଥିଲା । ଚାଷବାସଠାରୁ ଆରମ୍ଭ କରି ବାଣିଜ୍ୟ ବିପଣନ ପର୍ଯ୍ୟନ୍ତ ଏହି ନଦୀ ସହାୟକ ସାବ୍ୟସ୍ତ ହେଉଥିଲା । ଭାରତବର୍ଷର ପ୍ରମୁଖ ନଦୀମାନଙ୍କ ମଧ୍ୟରେ ମହାନଦୀ ଅନ୍ୟତମ ।

ଓଡିଶାର ଧନଧାନ୍ୟ ଓ ପ୍ରଗତି କ୍ଷେତ୍ରରେ ମହାନଦୀର ଅବଦାନ ଅତୁଳନୀୟ । ମହାନଦୀ ଓଡ଼ିଶାର ସାମାଜିକ ଓ ଅର୍ଥନୈତିକ ଜୀବନଧାରାକୁ ବହୁଳ ଭାବେ ପ୍ରଭାବିତ କରୁଛି । ଓଡ଼ିଶାର ସାଂସ୍କୃତିକ ଜୀବନ ମଧ୍ୟ ମହାନଦୀକୁ ନେଇ ଗଢି ଉଠିଛି । ଓଡ଼ିଶାର ୧୬ଟି ଜିଲ୍ଲାକୁ ମହାନଦୀ ଛୁଇଁଛି । ମହାନଦୀ ଉପତ୍ୟକା ୯୫ ଶହ ବର୍ଗ କିଲୋମିଟର ଓ ୨୦୦ କି.ମି. ଉପକୂଳକୁ ନେଇ ପରିବ୍ୟାପ୍ତ । ବିଶୁଦ୍ଧ ପାନୀୟ ଜଳ ପାଇଁ ଓଡ଼ିଶା ମହାନଦୀ ଉପରେ ନିର୍ଭରଶୀଳ । ପ୍ରକୃତରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଯଥାର୍ଥଭାବେ କହିଛନ୍ତି ଯେ, ମହାନଦୀ ହେଉଛି ଓଡ଼ିଶାର ଜୀବନରେଖା ଓ ମହାନଦୀ ମା'ପରି ଓଡ଼ିଶାର ୪.୫ କୋଟିରୁ ଉର୍ଦ୍ଧ୍ୱ ଓଡ଼ିଶାବାସୀଙ୍କୁ ବଞ୍ଚିବାର ସୁଯୋଗ ଯୋଗାଉଛି । ୧୯୪୭ରେ କେନ୍ଦ୍ରୀୟ ପ୍ରକଳ୍ପଭାବେ ମହାନଦୀ ଉପରେ ହୀରାକୁଦ ନଦୀବନ୍ଧ ପ୍ରତିଷ୍ଠା ହୋଇଥିଲା । ସେତେବେଳେ ଓଡ଼ିଶାକୁ ସର୍ବନିମ୍ନ ୧୨.୨୮ ନିୟୁତ କ୍ୟୁସେକ୍ ପାଣି ଉପଲବ୍ଧ ହେବ ବୋଲି ପ୍ରତିଶ୍ରୁତି ଦିଆଯାଇଥିଲା । ତତ୍କାଳୀନ ଅବିଭକ୍ତ ମଧ୍ୟପ୍ରଦେଶ ରାଜ୍ୟ ମଧ୍ୟ ଏହାକୁ ଗ୍ରହଣ କରିଥିଲା । କିନ୍ତୁ ଛତିଶଗଡ ସରକାରଙ୍କ ଓଡ଼ିଶା ବିରୁଦ୍ଧରେ ଡଞ୍ଚକତା ଓ ଦୋମୁହାଁ ନୀତି ଯୋଗୁଁ ସମଗ୍ର ଓଡ଼ିଶାବାସୀ ଆଜି ମର୍ମାହତ । ଆବଶ୍ୟକୀୟ ମଞ୍ଜୁରୀ ନ ନେଇ ଏବଂ ଓଡ଼ିଶା ସହିତ ତଥ୍ୟ ଆଦାନ ପ୍ରଦାନ ନକରି ମହାନଦୀର ଉପରମୁଣ୍ଡରେ ଛତିଶଗଡ ସରକାର କରୁଥିବା ନିର୍ମାଣ କ୍ଷେତ୍ରରେ ବିଭିନ୍ନ ବୈଧାନିକ ନୀତି ନିୟମର ଉଲ୍ଲଙ୍ଘନ କରାଯାଇଛି । ଉପରମୁଣ୍ଡରେ ଛତିଶଗଡ ନିଜ ରାଜ୍ୟର ଶିଳ୍ପାୟନ ତଥା ନଦୀର ଘରୋଇକରଣ ପାଇଁ ବିଭିନ୍ନ ବ୍ୟାରେଜ୍ ନିର୍ମାଣ ପୂର୍ବକ ମହାନଦୀର ଜଳକୁ ଅବରୋଧ କରିଚାଲିଛି । ଯାହାର ପରିଣତି ସ୍ୱରୂପ ହୀରାକୁଦ ନଦୀବନ୍ଧ ପ୍ରଭାବିତ ହେବ ଏବଂ ଏପରି ପରିସ୍ଥିତି ଓଡିଶାବାସୀଙ୍କ ଜୀବନଜୀବିକା କ୍ଷେତ୍ରରେ ବିପର୍ଯ୍ୟୟ ସାବ୍ୟସ୍ତ ହେବ । ମହାନଦୀର ଜଳ ଆବଶ୍ୟକ ସମୟରେ ଓଡିଶାର ଚାଷୀଭାଇମାନଙ୍କ ପାଇଁ ଉପଯୋଗୀ ହୋଇପାରିବ ନାହିଁ । ଅଧିକନ୍ତୁ ବର୍ଷାଦିନେ ଏହା ଓଡିଶାର ଚାଷୀକୁଳ ନିମନ୍ତେ ପ୍ରତିକୂଳ ପରିବେଶ ସୃଷ୍ଟି କରିବ । ଏହାଦ୍ୱାରା ରାଜ୍ୟର ସାମାଜିକ-ଅର୍ଥନୈତିକ ବିକାଶ ସଂପୂର୍ଣ୍ଣ ବାଧାପ୍ରାପ୍ତ ହେବ । ଏହା ସହିତ ମହାନଦୀର ଉପର ମୁଣ୍ଡରେ ବନ୍ଧ ବାନ୍ଧିବାଦ୍ୱାରା ଓଡ଼ିଶାର ଜଳସେଚନ ଓ ବିଦ୍ୟୁତ୍ ଉତ୍ପାଦନ ବାଧାପ୍ରାପ୍ତ ହେବ । ମହାନଦୀ ଅବବାହିକା ଅଞ୍ଚଳରେ ଜଳସ୍ତର କମିବା ସହିତ ପରିବେଶ ଉପରେ ମଧ୍ୟ ଏହାର କୁପ୍ରଭାବ ପଡିବାର ସମ୍ଭାବନା ଅଛି । ଏହା ସହିତ ମହାନଦୀର ଜଳସ୍ରୋତ କମିଲେ ଏହା ଉପରେ ନିର୍ଭରଶୀଳ ମତ୍ସ୍ୟଜୀବୀମାନେ ବହୁଳ ଭାବେ କ୍ଷତିଗ୍ରସ୍ତ ହେବେ । ଅଧିକନ୍ତୁ ପ୍ରମୁଖ ଗୁରୁତ୍ୱପୂର୍ଣ୍ଣ ପରିବେଶ ସ୍ଥଳୀକୁ ମଧ୍ୟ ପ୍ରଭାବିତ କରିବ । ଏହା ସମଗ୍ର ସମୁଦ୍ର ଉପକୂଳର ପରିବେଶ ବ୍ୟବସ୍ଥାକୁ ଅସନ୍ତୁଳିତ କରିଦେବ । ଓଡ଼ିଶା ହେଉଛି ବାତ୍ୟା ବିପର୍ଯ୍ୟୟ ପ୍ରବଣ ରାଜ୍ୟ । ଏହି ବିପର୍ଯ୍ୟୟରୁ ହେନ୍ତାଳ ବଣ ଓଡ଼ିଶାକୁ ରକ୍ଷା କରେ । ହେନ୍ତାଳ ବଣ ପାଇଁ ମହାନଦୀର ପ୍ରବାହ ଅତ୍ୟନ୍ତ

ଗୁରୁତ୍ୱପୂର୍ଣ୍ଣ । ଓଡ଼ିଶାର ଦୁଇ ତୃତୀୟାଂଶ ଲୋକ କୃଷି ଉପରେ ନିର୍ଭର କରୁଥିବା ବେଳେ ଓଡ଼ିଶାର କୃଷି ବ୍ୟବସ୍ଥା ମହାନଦୀକୁ ନେଇ ପର୍ଯ୍ୟବସିତ । ତେଣୁ ମହାନଦୀ ଓଡ଼ିଶାବାସୀଙ୍କ ପାଇଁ ଜୀବନରେଖା । ମହାନଦୀ ମଧ୍ୟ ରାଜ୍ୟର ପରିବେଶ ବ୍ୟବସ୍ଥାକୁ ସନ୍ତୁଳିତ ରଖିଥାଏ ।

ମହାନଦୀ ଜଳ ବିବାଦର ସମାଧାନ ନିମନ୍ତେ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ତ୍ରିପାକ୍ଷିକ ବୈଠକରେ ଯୋଗଦେବା ପୂର୍ବରୁ ଶତାଧିକ ସଙ୍ଗଠନର ହଜାର ହଜାର ବ୍ୟକ୍ତିବିଶେଷ, ବିଭିନ୍ନ ରାଜନୈତିକ ଦଳର ନେତା ଓ କର୍ମୀ, ଅବସରପ୍ରାପ୍ତ ଜଳସମ୍ପଦ ଇଂଜିନିୟରମାନଙ୍କ ସହିତ ଆଲୋଚନା କରିଥିଲେ । ସାରା ରାଜ୍ୟର କୋଣଅନୁକୋଣରୁ ହଜାର ହଜାର ପ୍ରତିନିଧି ସଚିବାଳୟଠାରେ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ମହାନଦୀ ଜଳ ବିବାଦ ସମ୍ପର୍କରେ ସେମାନଙ୍କ ମୂଲ୍ୟବାନ ମତାମତ ପ୍ରଦାନ କରିଥିଲେ । ଦିଲ୍ଲୀରେ ପହଞ୍ଚିବା ପରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଲୋକସଭା ଓ ରାଜ୍ୟସଭା ସାଂସଦଗଣଙ୍କ ସହିତ ମଧ୍ୟ ଏ ସମ୍ପର୍କରେ ଆଲୋଚନା କରିଥିଲେ ।

ଆନ୍ତଃରାଜ୍ୟ ନଦୀ ଜଳ ବଣ୍ଟନରେ ଓଡ଼ିଶା କେବଳ ନ୍ୟାଯ୍ୟ ଅଧିକାର ଓ ସମାନତା ଚାହୁଁଛି । ତେବେ ଉପରମୁଣ୍ଡର କୌଣସି ରାଜ୍ୟର ବେଆଇନ କାର୍ଯ୍ୟଧାରା ଏହି ସଂଘୀୟ ବ୍ୟବସ୍ଥାର ଉଲ୍ଲଙ୍ଘନ କରୁଛି, ଯାହାକି ଦୁର୍ଭାଗ୍ୟଜନକ । ବୈଠକ କାଳରେ ମୁଖ୍ୟମନ୍ତ୍ରୀ କହିଥିଲେ ଯେ, ଯଦି କେନ୍ଦ୍ର ସରକାର ମହାନଦୀ ଜଳ ବିବାଦର ସମାଧାନ ପାଇଁ ଚାହୁଁଛନ୍ତି ତେବେ ଛତିଶଗଡ ସରକାରଙ୍କୁ ତୁରନ୍ତ ପ୍ରକଳ୍ପ କାମ ବନ୍ଦ କରିବାକୁ କୁହନ୍ତୁ । କେନ୍ଦ୍ର ସରକାରଙ୍କ ଜଙ୍ଗଲ ଓ ପରିବେଶ ମନ୍ତ୍ରଣାଳୟ ଛତିଶଗଡ ପ୍ରକଳ୍ପର ମଞ୍ଜୁରୀକୁ ଆଉ ଥରେ ସମୀକ୍ଷା କରୁ । କେନ୍ଦ୍ରୀୟ ଜଳ ଆୟୋଗ ଓଡ଼ିଶାର ସ୍ୱାର୍ଥକୁ ଦୃଷ୍ଟିରେ ରଖି ବୈଧାନିକ ପଦକ୍ଷେପ ନେଉ ଏବଂ ମହାନଦୀ ଓ ତା'ର ଶାଖା ନଦୀରେ ହେଉଥିବା ସମସ୍ତ ନିର୍ମାଣ କାର୍ଯ୍ୟକୁ ବନ୍ଦ କରିବାକୁ ପଦକ୍ଷେପ ଗ୍ରହଣ କରୁ । ସମସ୍ତ ନିର୍ମାଣ କାର୍ଯ୍ୟ ବନ୍ଦ ହେଲାପରେ କେନ୍ଦ୍ର ସରକାର ଏକ ତଥ୍ୟ ଅନୁଧ୍ୟାନକାରୀ କମିଟି ବା ଫ୍ୟାକ୍ଟ ଫାଇଣ୍ଡିଂ କମିଟି ଗଠନ କରନ୍ତୁ । ସେ ପୁନରାବୃତ୍ତି କରିଥିଲେ ଯେ, ମହାନଦୀ ହେଉଛି ଓଡ଼ିଶାର ଜୀବନରେଖା । ଓଡ଼ିଶାର ୬୫ ପ୍ରତିଶତ ଲୋକ ମହାନଦୀ ଉପରେ ନିର୍ଭରଶୀଳ । ୧୬ଟି ଜିଲ୍ଲାର ଲୋକଙ୍କ ଜୀବନଜୀବିକା ମହାନଦୀ ଉପରେ ନିର୍ଭର କରେ । ଏହାଛଡା ମହାନଦୀ ପରିବେଶ ସନ୍ତୁଳନ ପାଇଁ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଉଭୟ କେନ୍ଦ୍ର ସରକାର ଓ ଛତିଶଗଡ ସରକାର ସଂଘୀୟ ବ୍ୟବସ୍ଥାର ପ୍ରକୃତ ଧର୍ମକୁ ସମ୍ମାନ ଦେବେ ବୋଲି ତାଙ୍କର ଆଶା ରହିଛି ।

ନିକଟରେ କେନ୍ଦ୍ର ସରକାରଙ୍କ ଏକ ପତ୍ର ରାଜ୍ୟ ସରକାରଙ୍କ ହସ୍ତଗତ ହୋଇଛି । ଏଥିରେ ଛତିଶଗଡକୁ କାମ ବନ୍ଦ କରିବା ସଂକ୍ରାନ୍ତରେ କୌଣସି ନିର୍ଦ୍ଦେଶ ଦିଆଯାଇଥିବାର ଉଲ୍ଲେଖ ନାହିଁ । ତେବେ ମହାନଦୀ ପ୍ରସଙ୍ଗରେ ଏକ ବିଶେଷଜ୍ଞ କମିଟି ଗଠନ ପାଇଁ ପ୍ରସ୍ତାବ ଦିଆଯାଇଛି । ଛତିଶଗଡ ସରକାର କାମ ବନ୍ଦ କରୁନଥିବା ବେଳେ ବିଶେଷଜ୍ଞ କମିଟି ନେଇ ପ୍ରସଙ୍ଗର ସମାଧାନ କରିପାରିବା ବିଶ୍ୱାସ ହେଉନାହିଁ । ଏହି ପରିପ୍ରେକ୍ଷୀରେ ବିଶେଷଜ୍ଞ କମିଟିରେ ଓଡ଼ିଶାର ପ୍ରତିନିଧି ପଠାଇବା କ'ଣ ଉଚିତ ହେବ ? ତେଣୁ ବିଶେଷଜ୍ଞ କମିଟି ଗଠନ ପ୍ରସ୍ତାବକୁ ସରକାର ପ୍ରତ୍ୟାଖ୍ୟାନ କରିବା ସହ ଉକ୍ତ ପ୍ରସଙ୍ଗରେ ଓଡ଼ିଶାର ସ୍ୱାର୍ଥଦୃଷ୍ଟିରୁ ଏକା ଲଢ଼ିବେ ବୋଲି ସରକାର ଘୋଷଣା କରିଛନ୍ତି ।

ମହାନଦୀ ଜଳ ବିବାଦର ସମାଧାନ ପରିପ୍ରେକ୍ଷୀରେ ସମଗ୍ର ଓଡ଼ିଶାବାସୀଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ । ଦଳମତ ନିର୍ବିଶେଷରେ ରାଜ୍ୟ ଓ ରାଜ୍ୟବାସୀଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ସଭିଏଁ ଆଗେଇ ଆସିବା ଉଚିତ । ଓଡ଼ିଆ ଜାତିର ଇତିହାସ, ସଂସ୍କୃତି, ସାମାଜିକ ଏବଂ ଅର୍ଥନୈତିକ କ୍ଷେତ୍ରକୁ ପରିପୁଷ୍ଟ କରିଥିବା ମହାନଦୀର ସୁରକ୍ଷା ପ୍ରତିଟି ଓଡ଼ିଆର ନୈତିକ କର୍ତ୍ତବ୍ୟ ହେଉ, ଏତିକି ଆଶା ।



# ମା' ଶକ୍ତିମୟୀ

**କୁଞ୍ଜ ବିହାରୀ ସାହୁ**



**ମା' ସର୍ବଂସହା ସୃଷ୍ଟିର ଅନୁପମ କୃତି । ସଂସାରର ସର୍ବଶ୍ରେଷ୍ଠ ଆଧାର ହେଉଛି ମାଆ । ବିପଦ–ଆପଦରେ ଆହାଃ କହିଦେଇ ସନ୍ତାନକୁ ପଣତ କାନିରେ ଘୋଡ଼େଇ ରଖେ । ମାଟିରୁ ଆକାଶ ଲମ୍ବା ତାହାର ପଣତ । ଗର୍ଭଧାରଣଠାରୁ ଆରମ୍ଭ କରି ପ୍ରସବ ବେଦନାଜନିତ ଦୁଃଖକୁ ପାସୋରି ଦେଇ ସେ *ସର୍ବସ୍ୟ ଆର୍ତ୍ତସ୍ୟ* ନିବୃତିଂକୁ ବିଚାର କରେ । ଆକାଶ ପରି ବିଶାଳ ତା'ର ହୃଦୟ । ସାଗର ପରି ଗଭୀର ଆନ୍ତରିକତା । ସେ ମହିମାମୟୀ । ପିତା ସ୍ୱର୍ଗ ସହିତ ତୁଳନା ହେଲେ ହେଁ ମାଆ ସ୍ୱର୍ଗାଦପୀ ଗରୀୟସୀ । ଆଖି ଲୁହ ଓ ଛାତିର କୋହକୁ ପ୍ରଚ୍ଛନ୍ନ ଭାବେ ସାଇତି ରଖି ସେ ସନ୍ତାନର ମଙ୍ଗଳ ମନାସେ । 'ମାଆ ନାମ ମଧୁର ଅତି ଅମୃତ ସମାନ କିମ୍ବା ମାଆ ତୁମେ ଜଗତର ସାହା ଭରସା' କବିତାର ଧାଡ଼ିଗୁଡ଼ିକ ଭାବାବେଗର ଆଲେଖ୍ୟ ବହନ କରେ । ମାତାପିତାଙ୍କଠାରୁ ହଜାରେ ଗୁଣରେ ଗୌରବାନ୍ୱିତା ସେ । ତେଣୁ ସହସ୍ରଂ ତୁ ପିତୃନ ମାତା ଗୌରବେଣ ଅତି ରିଚ୍ୟତେ ଉକ୍ତିର ଯଥାର୍ଥତା ରହିଛି ।**

ମାଆ ବିଭିନ୍ନ ନାମକରଣରେ ପ୍ରକଟିତ ହେଲେ ହେଁ ଆସନ୍ନ ବିପଦରୁ ପତିତଙ୍କୁ ଉଦ୍ଧାର କରିବା ହିଁ ତାହାର ମୁଖ୍ୟ ଭୂମିକା ଥାଏ । ନିଖିଳ ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି, ପ୍ରଳୟର ସେ ଅଧିକାରିଣୀ । ସେ ହିଁ ଦୁର୍ଗା, ମହାମାୟୀ, ଆଦ୍ୟାଶକ୍ତି । ଏଥିପାଇଁ କୁହାଯାଇଛି –

ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସେୈ ନମସ୍ତସେୈ ନମସ୍ତସେୈ ନମୋଦ୍ଧନମଃ ।

ଏହି ଉପାସନାକୁ ଧରାପୃଷ୍ଠର ସର୍ବ ପ୍ରାଚୀନ ଧର୍ମୀୟ ଚେତନା ରୂପେ ମାନ୍ୟତା ଦିଆଯାଇଛି । ବୈଦିକ ସଭ୍ୟତାରେ ପୁରୁଷ ଦେବତାଙ୍କ ପ୍ରାଧାନ୍ୟ ଥିଲେ ମଧ୍ୟ ଅଦିତି, ଉଷା, ସରସ୍ୱତୀ, ପୃଥିବୀ, ରାତ୍ରୀ ପ୍ରଭୃତି ଦେବୀଙ୍କୁ ପୂଜା କରାଯାଉଥିଲା । ପୁରାଣ ଅଧ୍ୟୟନ କଲେ ଜଣାପଡେ ଯେ ଦକ୍ଷ କନ୍ୟା ସତୀଙ୍କ ଯଜ୍ଞ କୁଣ୍ଡରେ ପ୍ରାଣ ବିସର୍ଜନ ସ୍ୱୟଂ ଶଙ୍କରଙ୍କୁ ଉପହାସିତ କରିଥିଲା । ପତ୍ନୀଙ୍କ ଦଗ୍ଧ ଶରୀରକୁ ନିଜ ସ୍କନ୍ଧ ଦେଶରେ ବହନ କରି ସେ ଚତୁର୍ଦ୍ଦିଗ ଭ୍ରମଣ କଲେ । ଶଙ୍କରଙ୍କ

ତାଣ୍ଡବ ରୂପକୁ ଅବଲୋକନ କରି ସ୍ୱୟଂ ବିଷ୍ଣୁ ନିଜ ଚକ୍ରଦ୍ୱାରା ସତୀଙ୍କ ଶରୀରକୁ ଖଣ୍ଡ ବିଖଣ୍ଡିତ କରିଦେଲେ । ସେହି ଖଣ୍ଡ ବିଖଣ୍ଡିତ ଅଂଶ ଭୂପୃଷ୍ଠରେ ପତିତ ହୋଇ କାଳକ୍ରମେ ସେଗୁଡିକ ଶକ୍ତି ପୀଠରେ ରୂପାନ୍ତରିତ ହେଲା । ଦେବୀ ସତୀ ଭିନ୍ନ ଭିନ୍ନ ନାମରେ ପୂଜା ପାଇଲେ ଏବଂ ସମସ୍ତ ପତିତର ଦୁଃଖ-ଅବସାଦକୁ ଦୂର କରିବାକୁ ଚେଷ୍ଟିତ ହେଲେ ।

ପୁରାଣରେ କଥିତ ଅଛି ଯେ ଓଡ଼ିଶାରେ ପ୍ରତିଷ୍ଠିତ ଆଠଗୋଟି ଶକ୍ତି ପୀଠର ମହାନତା ରହିଛି । ସ୍ଥାନଟିର ପ୍ରାଧାନ୍ୟ କେବଳ ମା' ଶକ୍ତିମୟୀଙ୍କ ସ୍ଥିତି ପାଇଁ ହୋଇପାରିଛି । ଭକ୍ତଙ୍କ ଗହଳି ଏବଂ ଭକ୍ତି ପୀଠକୁ ମହନୀୟ କରିବା ସଙ୍ଗେ ସଙ୍ଗେ ଦେବୀମାନଙ୍କର କୃପାବାରି ଝରିପଡ଼ିଛି । ସେହି ଶକ୍ତିପୀଠଗୁଡ଼ିକ ହେଲା –

ବାଣପୁରେ ଭଗବତୀ ଶ୍ରୀକ୍ଷେତ୍ରେ ବିମଳା
କାକଟପୁରେ ରହିଲୁ ନାମ ତୋ ମଙ୍ଗଳା ।
ଝଙ୍କଡେ ଶାରଳା ନାମ ଅଟଇ ତୋହର
ବିରଜାଇ ନାମ ବିଜେ କରୁ ଯାଜପୁର ।
ବାଙ୍କୀରେ ନାମ ତୋର ଅଟେ ଚର୍ଚ୍ଚିକାଇ
ସମ୍ବଲପୁରେ ନାମ ତୋର ବହିଲୁ ସମଲାଇ ।
ତାଳଚେରେ ହିଙ୍ଗୁଳା ନାମ ତୋର ମାଆ
ଏହିପରି ଖ୍ୟାତ ତୋର ଆଠଗୋଟି ନାଁ ।

ବିଶ୍ୱବ୍ରହ୍ମାଣ୍ଡକୁ ବ୍ୟାପ୍ତ କରି ରହିଥିବାରୁ ମା' ଦୁର୍ଗା ହିଁ ନିତ୍ୟ ସ୍ୱରୂପା । ବିଭିନ୍ନତା ମଧ୍ୟରେ ଏକ ଶକ୍ତି ହିଁ ସଂଚରିଥାଏ ମା' ହୃଦୟରେ । ସେହି ଶକ୍ତି ହିଁ ଦୁଃଖ-ଶୋକ ନାଶ କରେ ଶ୍ରଦ୍ଧାଳୁର ଏକାଗ୍ରତା ଓ ନିଷ୍ଠାରେ । ଭକ୍ତିମନସ୍କ ହୋଇ ଖୋଜିବୁଲେ ମାଆର ଉପସ୍ଥିତିକୁ । ସେଥିପାଇଁ ଆଶ୍ୱିନର ଏହି ମହାର୍ଘ ମହୋତ୍ସବରେ ମାତୃଶକ୍ତିର ପରିକଳ୍ପନା କରି ମା' ଶକ୍ତିମୟୀଙ୍କର ପବିତ୍ର ଆରାଧନା ଚାଲେ ପୂଜା ମଣ୍ଡପରେ । ମା' ହିଁ ଜୀବନରେ ସବୁକିଛି । ମା' ଯେଉଁ ରୂପ ଧାରଣ କରିଥିଲେ ବି ସେ ସନ୍ତାନର ମଙ୍ଗଳ କାମନା କରି ଆଶୀର୍ବାଦ ଦେଇଥାଏ । ଆସୁରିକ ଶକ୍ତିର ବିନାଶ ପାଇଁ ମା' ଦୁର୍ଗା ଦଶପ୍ରହରଣ ଧାରଣ କରିଥିଲେ ଏବଂ ଦେବତାଙ୍କୁ ଉଦ୍ଧାର କରିଥିଲେ ।

ଆଶ୍ୱିନ ମାସ ଆସିଲା ବେଳକୁ ନଈ-ପଠା ଓ ବିଲ-ପାଟରେ କାଶତଣ୍ଡୀ ଧୋବ ଫରଫର ଚଅଁର ପବନରେ ଦୋଳାୟିତ ହୁଏ । ନୀଳରଙ୍ଗ ଅପରାଜିତା ଫୁଲର ମନମତାଣିଆ ଚେହେରା ମନକୁ ଚହଲାଇ ଦିଏ । କୁମୁଦର ଢଳଢଳ ପାଖୁଡା ଦୃଷ୍ଟି ଆକର୍ଷଣ କରେ । ମୃଦୁ-ମଧୁର ପବନ ଦେହକୁ ରୋମାଂଚିତ କରେ । ପାର୍ବଣର ଋତୁରେ ଶାରଦୀୟ ମହୋତ୍ସବ ଆରମ୍ଭ ହୁଏ । ଆଶ୍ୱିନର କୃଷ୍ଣ ମୂଳାଷ୍ଟମୀଠାରୁ ଆଶ୍ୱିନର ମହାଷ୍ଟମୀ ପର୍ଯ୍ୟନ୍ତ ଦୁର୍ଗାପୂଜା ଅନୁଷ୍ଠିତ ହୁଏ ପୁରପଲ୍ଲୀ ଓ ସହରରେ । ଭକ୍ତିପୂତ ମାର୍ଗରେ ଆବାଳ-ବୃଦ୍ଧ-ବନିତା ପୂଜାପୀଠରେ ସମାବେଶ ହୋଇ ମାଆଙ୍କୁ ମୁଣ୍ଡିଆ ମାରନ୍ତି ଓ କରୁଣା ଭିକ୍ଷା କରନ୍ତି । ମା' ହିଁ ଶକ୍ତିମୟୀ-ଦୁର୍ଗା ।

ସୃଷ୍ଟିର ଆଦିଶକ୍ତି ହେଉଛନ୍ତି ଦୁର୍ଗା । ସେ ନବସ୍ୱରୂପ ଧାରଣ କରୁଥିବାରୁ ନଅ ଦିନରେ ଉପରୋକ୍ତ ସ୍ୱରୂପରେ ଭକ୍ତମାନେ ଭକ୍ତିପୂତ ଭାବରେ ମା' ଦୁର୍ଗାଙ୍କ ଉପାସନା କରିଥାନ୍ତି । ଶ୍ରୀ ଶ୍ରୀ ସପ୍ତଶତୀ  ଚଣ୍ଡୀରେ ବର୍ଣ୍ଣନା କରାଯାଇଛି–

ପ୍ରଥମଂ ଶୈଳପୁତ୍ରୀତି ଦ୍ୱିତୀୟଂ ବ୍ରହ୍ମଚାରିଣୀ
ତୃତୀୟଂ ଚନ୍ଦ୍ରଘଂଟେତି କୁଷ୍ମାଣ୍ଡେତି ଚତୁର୍ଥଂ
ପଂଚମଂ ସ୍କନ୍ଦମାତେ ତି ଷଷ୍ଠଂ କାତ୍ୟାୟନୀ ତଥା
ସପ୍ତମଂ କାଳରାତ୍ରିତି ମହାଗୌରୀତି ଚାଷ୍ଟମଂ
ନବମଂ ସିଦ୍ଧିଦାତ୍ରୀ ଚ ନବଦୁର୍ଗାଃ ପ୍ରକୀର୍ତିତାଃ
ଉକ୍ତାନ୍ୟେତାନି ନାମାନି ବ୍ରାହ୍ମଣୈବ ମହାତ୍ମନା ।

ବିଶ୍ୱାସ ରହିଛି ଯେ, ନବରାତ୍ରୀରେ ମା' ଦୁର୍ଗାଙ୍କୁ ପୂଜା କଲେ ନଅଟି ଶୁଭ କାମନା ପ୍ରାପ୍ତି ହୋଇଥାନ୍ତି । ପୂଜା ଆରମ୍ଭ ପୂର୍ବରୁ କୁମାରୀମାନେ ଘରକୁ ପରିଷ୍କାର-ପରିଛନ୍ନ କରନ୍ତି, ଯଦ୍ୱାରା ମା' ଙ୍କୁ ଆରାଧନା ସମୟରେ ସେମାନଙ୍କୁ ଅଶେଷ ଆନନ୍ଦ ମିଳିଥାଏ । ନଅ ଜଣ କନ୍ୟାଙ୍କୁ ଯଥୋଚିତ ଭକ୍ତି ସହକାରେ ପୂଜା ଓ ଭୋଜନ କରାଯାଇଥାଏ । କଥିତ ଅଛି, ଏହି ନଅ ଦିନ ମା' ବାଳୁତ କନ୍ୟାଙ୍କ ଶରୀରରେ ଅବସ୍ଥାନ କରିଥାନ୍ତି । ଜଣେ କନ୍ୟାକୁ ପୂଜନ କଲେ ଐଶ୍ୱର୍ଯ୍ୟ, ଦୁଇ ଜଣଙ୍କୁ ପୂଜା କଲେ ମୋକ୍ଷ, ତିନି ଜଣଙ୍କୁ ପୂଜା କଲେ ଧର୍ମ-ଅର୍ଥ, ଚାରି ଜଣଙ୍କୁ ପୂଜା କଲେ ରାଜ୍ୟପଦ, ପାଂଚ ଜଣଙ୍କୁ ପୂଜା କଲେ ବିଦ୍ୟା, ଛଅ ଜଣଙ୍କୁ ପୂଜା କଲେ ଛଅ ପ୍ରକାର ସିଦ୍ଧି,

ସାତ ଜଣଙ୍କୁ ପୂଜା କଲେ ସୁଖ-ସମୃଦ୍ଧି, ଆଠ ଜଣଙ୍କୁ ପୂଜା କଲେ ସଂପଦ, ନଅ ଜଣଙ୍କୁ ପୂଜା କଲେ ପୃଥିବୀରେ ପ୍ରଭୁତ୍ୱ ପ୍ରାପ୍ତି ହୋଇଥାଏ । ନବରାତ୍ରୀରେ ନଅ ଦିନରେ ନିମ୍ନଲିଖିତ ଦେବୀମାନଙ୍କୁ ପୂଜା କରାଯାଇଥାଏ ।

୧- ମା' ଶୈଳପୁତ୍ରୀ, ୨- ମା' ବ୍ରହ୍ମଚାରିଣୀ, ୩- ମା' ଚନ୍ଦଘଣ୍ଟା, ୪- ମା' କୁଷ୍ମାଣ୍ଡ, ୫- ମା' ସ୍କନ୍ଦମାତା ୬- ମା' କାତ୍ୟାୟନୀ, ୭- ମା' କାଳରାତ୍ରୀ, ୮- ମା' ମହାଗୌରୀ ଓ ୯- ମା' ସିଦ୍ଧିଦାତ୍ରୀ ।

ନବମ ଦିନ ହିଁ ମହାନବମୀ ଏବଂ ଦଶମୀ ଦିନକୁ ଦଶହରା ବା ବିଜୟା ଦଶମୀ କୁହାଯାଏ ।

ମାଟି, ପାଣି, ନଦୀ, ଝରଣା, ପାହାଡ-ପର୍ବତ, ଗଛ-ଲତାକୁ ଆପଣେଇ ନେଇଥିବା ପାହାଡ଼ୀ ମଣିଷଟି ନିଜ ଗ୍ରାମଦେବୀଙ୍କୁ ମା' ଶକ୍ତିମୟୀ ରୂପେ ପୂଜା କରିଥାଏ । ସେ ଅନୁଭବ କରେ ବଂଚିବାର ରାହାକୁ ଏହି ଉପାସନା ମାଧ୍ୟମରେ । ଗାଁ ଦେବୀମାନଙ୍କୁ ସୁଖ-ଦୁଃଖରେ ଲୋଡ଼ି ଜୀବନକୁ ପୁଷ୍କଳ, ସ୍ୱଚ୍ଛନ୍ଦ ତଥା ରସାଣିତ କରେ । ଆନ୍ତରିକ କୃତଜ୍ଞତା ପ୍ରକାଶ କରେ । ସେ ଜାଣେ ମାତୃଶକ୍ତି ହିଁ ସର୍ବଶ୍ରେଷ୍ଠ ଶକ୍ତି । ତେଣୁ ଦଶହରାରେ ଆଦିବାସୀ ଅଧ୍ୟୁଷିତ ଅଂଚଳମାନଙ୍କରେ ଗ୍ରାମଦେବୀଙ୍କର ପୂଜା ଆରାଧନା ଶକ୍ତି ଓ ମାତୃପୂଜାର ଏକ ଚରମ ନିଦର୍ଶନ ରୂପେ ବିବେଚିତ ହୋଇଥାଏ । ପୂଜା ପଦ୍ଧତି ଭିନ୍ନ ଏବଂ ଗ୍ରାମଦେବୀ ଭିନ୍ନ ହେଲେ ମଧ୍ୟ ଦେବୀ ହିଁ ଦୁର୍ଗା-ଦୁର୍ଗତିନାଶିନୀ । ସକଳ ଶକ୍ତିର ଆଧାର । ଶ୍ରଦ୍ଧାଳୁ ଭକ୍ତଙ୍କର ଅନାବିଳ ଭକ୍ତି ନିବେଦନ ପ୍ରକୃତିକୁ ଛୁଇଁଥାଏ । ଦେବୀପୀଠରେ ମା' ଦୁର୍ଗା ପୂଜା ପାଉଥିବାବେଳେ ପଥପାର୍ଶ୍ୱରେ ଛୋଟଛୋଟ ମୃଣ୍ମୟୀ ମୂର୍ତ୍ତି ପୂଜା ପାଉଥାନ୍ତି । ବରଗଡ ଜିଲ୍ଲା ଅନ୍ତର୍ଗତ ଭଟଲି ବ୍ଲକର କେଶେଇପାଲି ଗ୍ରାମରେ ଥିବା କରଲାପାଟ, କମଗେଇ, ଲାଡୁଖାଇ ଏବଂ ଭଟଲି ବ୍ଲକର ଭଟଲି ଗାଁରେ ଥିବା ମା' ବାଉତି, ସୁରେଶ୍ୱରୀ ଆଦି ଦେବୀମାନେ କେଉଁ ଆବହମାନ କାଳରୁ ଗ୍ରାମ ଦେବୀ ରୂପେ ପୂଜା ପାଇ ଆସୁଛନ୍ତି । ବିବାହ, ବ୍ରତ ଆଦି ସାମାଜିକ ପୁଣ୍ୟକାମରେ କରଲାପାଟ ଦେବୀଙ୍କୁ ଗାଁ ଲୋକମାନେ ପୂଜା କରି ଶୁଭ ଅନୁକୂଳ କରିଥାନ୍ତି । ଶ୍ରାବଣ ମାସରେ ଅମାବାସ୍ୟା ତିଥିରେ ବିଶେଷ ପୂଜା ଅନୁଷ୍ଠିତ ହୋଇଥାଏ । କମ୍‌ଗେଇ ଦେବୀ ମା'ଙ୍କୁ ଦଶହରା ସମୟରେ ଜାକଜମକରେ ଶ୍ରଦ୍ଧାଳୁ ଭକ୍ତମାନେ ପୂଜା କରି ନିଜକୁ ପବିତ୍ର ମନେ କରିଥାନ୍ତି । କ୍ଷେତ ବାଡ଼ିରେ ଭଲ ଶସ୍ୟ ଉତ୍ପାଦନ ପାଇଁ ଲାଡୁଖାଇ ଦେବୀଙ୍କୁ ପୂଜା କରାଯାଏ । କୁଳିତା ସମ୍ପ୍ରଦାୟର ଲୋକ ଏହି ଦେବୀମାନଙ୍କୁ ନିଷ୍ଠାର ସହ ପୂଜା କରିଥାନ୍ତି । ବରଗଡ଼ର କାଳୀ ମା', ସମଲେଇ ମା', ବରଗଡ-ବରପାଲି ରାସ୍ତାରେ ଫଳସା ତଲିଏନ (ଯାହାକି ପଳାଶ ଗଛ ତଳେ ପୂଜା ପାଉଥିବା ଦେବୀ), ପଦମପୁର-ପାଇକମାଳ ରାସ୍ତାରେ ନିଶାନି ଠାକୁରାଣୀ, ପଦମପୁର-ସୋହେଲା ରାସ୍ତାରେ କରମସାନି (ଗଛମୂଳରେ ପୂଜା ପାଉଥିବା ଦେବୀ), ଧରଣୀକୋଟା ଓ ମା' ମାଉଲୀ ପୂଜା ପାଇଆସୁଛନ୍ତି । ଏହି ଦେବୀମାନେ ହିଁ ଶକ୍ତି ସ୍ୱରୂପିଣୀ, ଦୁଃଖ ବିନାଶିନୀ । ଅନେକ ସ୍ଥାନରେ ଆଦିବାସୀ ସଂପ୍ରଦାୟର ପୂଜାରୀ (ଦିଶାରୀ), ଝାଙ୍କରମାନେ ପାରଂପରିକ ପ୍ରଥା ଅନୁସାରେ ପୂଜା କାର୍ଯ୍ୟ ତୁଲାଇଥାନ୍ତି । ଏପରିକି କେତେକ ସ୍ଥାନରେ ମା' ଦୁର୍ଗା ସ୍ତମ୍ଭେଶ୍ୱରୀ ଏବଂ ପ୍ରସ୍ତରଖଣ୍ଡ ଭାବରେ ପୂଜା ପାଇବାର ନଜିର ରହିଛି । ଭକ୍ତ ଡାକିଲେ ଓଃ କରନ୍ତି ମା' । ଶକ୍ତି ପ୍ରଦାନ ପୂର୍ବକ ଦୁଃଖମୋଚନ କରିଥାନ୍ତି । ସେଥିପାଇଁ ଗ୍ରାମଦେବୀମାନେ ଗ୍ରାମୀଣ ମଣିଷର ସର୍ବଶକ୍ତିମୟୀ ମା' ।

ଧରାପୃଷ୍ଠରେ ଆଶ୍ୱିନର ପଦପାତରେ ପୁର-ପଲ୍ଲୀ-ସହର ଚଳଚଂଚଳ ହୋଇଉଠେ । ପ୍ରତ୍ୟେକ ହୋଇଯାନ୍ତି ଭକ୍ତିରେ ବିଭୋର । ନୂଆ ପରିଧାନରେ ଆଭୂଷଣଯୁକ୍ତ ହୋଇ ପାରସ୍ପରିକ ସୁଖ-ଆନନ୍ଦ ଦେବାକୁ ତତ୍ପର ଯେମିତି । ବିମୁଗ୍ଧ ପ୍ରକୃତି ସହ ତାଳ ଦେଇ ଆଧୁନିକ ସଭ୍ୟତାର ଚୌହଦୀରେ ପୁରାଣର କଥନିକାକୁ ରୂପ ଦେବାକୁ ଶିଳ୍ପୀ ଆକୁଳ ହୋଇଉଠେ । ଶାନ୍ତସ୍ନିଗ୍ଧ ପରିବେଶରେ ପୂଜାପୀଠମାନଙ୍କରେ ସୁଦୃଶ୍ୟ ତୋରଣ ଲାଗେ । ମୃଣ୍ମୟୀ ମୂର୍ତ୍ତିମାନଙ୍କର ସୁସଂଗଠିତ ଚେହେରାକୁ ଦେଖିଲେ ଆଖି ଝଲସିଯାଏ । ଦୀର୍ଘଦିନର କାର୍ଯ୍ୟସୂଚୀ ଓ ପରିକଳ୍ପନା ସାକାର ହୁଏ । ବାଦ୍ୟ, ନୃତ୍ୟ ଓ ଗୀତର ଜୁଆର ଉଠେ । ଦେବୀ ମଣ୍ଡପର ସାଜସଜ୍ଜା ଓ ପର୍ଯ୍ୟାପ୍ତ ଭକ୍ତ ସମାବେଶ ଆକର୍ଷଣୀୟ ହୋଇଉଠେ । ଦୋକାନ ବଜାର ବସେ । ମୀନବଜାର ଓ ମନୋରଞ୍ଜନ କାର୍ଯ୍ୟକ୍ରମର ପ୍ରହେଳିକାମୟ ସମ୍ଭାଷଣରେ ବିମୁଗ୍ଧ ଭକ୍ତ/ଦର୍ଶକ ପ୍ରଲୁବ୍ଧ ହୋଇଯାଆନ୍ତି ।

ପ୍ରତିଯୋଗିତା ଚାଲେ ତୋରଣର ସାଜସଜ୍ଜାକୁ ନେଇ । ଖଟିଖିଆ ଓ ମଧ୍ୟବିତ୍ତ ପରିବାରର ଦୁଃଖ ଲୁଚିଯାଏ କିଛି କ୍ଷଣ ପାଇଁ । ଘରେ ଘରେ କୁଣିଆମାନଙ୍କ ଅପ୍ରତ୍ୟାଶିତ ଭିଡ଼ ଭିତରେ ନିଜକୁ ଖାପଖୁଆଇ ଚଳିବାକୁ ହୁଏ । ସମସ୍ତେ ଦୁର୍ଗା ପୂଜାକୁ ଆପଣେଇ ନିଅନ୍ତି ପାର୍ବଣର ସମ୍ଭାଷଣରେ ।

ଭସାଣି ଆସେ । ଖୁବ୍ ଜାକଜମକରେ ବାଦ୍ୟ, ନୃତ୍ୟର ମାହୋଲ ଭିତରେ ମୃଣ୍ମୟୀ ମା' ଦୁର୍ଗା ପଟୁଆରରେ ଯାଆନ୍ତି ଜଳାଶୟକୁ । ବିସର୍ଜିତ ହେବାର ଦୁଃଖ ଥିଲେ ବି ମା' ହିଁ ଜାଣେ ସନ୍ତାନର ମନକଥା । ସେ ଧରାପୃଷ୍ଠକୁ ଆସି ସନ୍ତାନକୁ କୃପା ଦେଇଛି, ସେଇଥିରେ ତା'ର ଅଶେଷ ଆନନ୍ଦ । ଅଳ୍ପ କେତେ ସମୟ ପଟୁଆରରେ ସାମିଲ ହେବା ପରେ ମା' ବିଦାୟ ନିଏ ଗୋଟେ ବର୍ଷ ପାଇଁ ଆମକୁ ସୁଖ–ଶାନ୍ତି–ସମୃଦ୍ଧିର ରାହା ଦେଖାଇ ଓ ଭାଇଚାରାର ମହାନତାକୁ ଅଧିକ ପ୍ରାଣବନ୍ତ କରାଇ । ସହରୀ ସଭ୍ୟତାର ଏଇ ନିଆରା ଆବେଦନ ଓ ପ୍ରତିବେଦନର ଊର୍ଦ୍ଧ୍ୱରେ ଲୋକ ସଂସ୍କୃତି ଜୀବିତ ରହେ । ଲୋକଗୀତ–ନୃତ୍ୟର ମନମତାଣିଆ ସ୍ୱରରେ ମଂଚ ଦୁଲୁକି ଉଠୁଥିଲା ବେଳେ ଶୀତ–କାକରରେ ଭିଜିଭିଜି ଶ୍ରଦ୍ଧାଳୁ ଜନତା ମା' ଶକ୍ତିମୟୀଙ୍କୁ ଭାବାବେଗରେ ତଲ୍ଲୀନ କରିଦିଅନ୍ତି । ଭସାଣି ପର୍ବର ଅବକାଶ ନ ଥାଏ ସେଠି । ଭାଇଚାରାର ସମ୍ପର୍କକୁ ମଜଭୁତ କରି ପୁଣି ଆସନ୍ତା ବର୍ଷକୁ ଅପେକ୍ଷା କରିଥାନ୍ତି ।

ଯାହା ହେଉନା କାହିଁକି ଶକ୍ତିମୟୀ ମାଆଙ୍କର ଅପାର କରୁଣାରେ କବିତାଟିଏ ସ୍ୱତଃ ଲେଖି ହୋଇଯାଏ –

ମାଆର ପଣତ ପତିତର ନେତ
ଫରଫର ହୋଇ ଉଡ଼େ
ମାଆର କରୁଣା ଶିରାବଣ ଧାରା
ବିଞ୍ଝି ବିଞ୍ଝି ହୋଇପଡ଼େ ।

ଜଳ ବିଭାଜିକା କାର୍ଯ୍ୟାଳୟ
ବରଗଡ–୭୬୮୦୨୮

# ମାଆ ପାଦେ ଗୁହାରି

**ପ୍ରଭାତ କୁମାର ସାହୁ**

ମାଆ ତୁ ଅମ୍ବିକା ମାଆ ତୁ ଚଣ୍ଡିକା
ମାଗୋ କଳୁଷନାଶିନୀ
ଜଗତର ଦେବୀ ମାଆ ଲୋ ଭୈରବୀ
ତୁ ମା' ବର ପ୍ରଦାୟିନୀ ।
ପେଟ ଗଲେ ପୋଡି ହଂସା ଯାଏ ଉଡି
ଡାକଇ ଆତୁରେ ତୋତେ
ଶୁଖିଗଲେ ତଣ୍ଟି ପଡିଯାଏ ପାଟି
ଚିନ୍ତଇ ତୋତେ ମୁଁ ହୃଦେ ।
ହେ ମାଗୋ ଅପର୍ଣ୍ଣା ମୋର ଆଶ୍ରା ସିନା
ଅଟେ ତୋ ପଣତ କାନି ।
ପଡିଲେ ମୁଁ ରୋଗେ କେତେ କଷ୍ଟ ଭୋଗେ
ଡାକେ ପରା ମାଆ ମାଆ



ଆସିଲେ ଆପଦ ପଡିଲେ ବିପଦ
ତୁହି ମା' ମୋହରି ସାହା
ଏ ଅଧମ ହୀନ ଡାକକୁ ତୁ କାନ
ଦେବୁ ମା' ସିଂହ ବାହିନୀ
ତୁହି ଅବା ତାର ନତୁବା ତୁ ମୋର
ତୋ ପାଦେ ଗଲି ଶରଣ
ଆଗୋ ଯୋଗମାୟା ନକରିବୁ ମାୟା
ଆମେ ତୋହରି ସନ୍ତାନ
ଚଳିବ କି ମାତ ତୋ ବିନେ ଜଗତ
ତୁହି ଜଗତ ଜନନୀ ।

ପ୍ଲଟ୍ ନଂ– ୩୧୬, ବରମୁଣ୍ଡା
ଭୁବନେଶ୍ୱର–୭୫୧୦୦୩





# ଗଜପତି ପରମ୍ପରା ଓ ଶ୍ରୀଜଗନ୍ନାଥ

**ଡାକ୍ତର କୃଷ୍ଣକେଶବ ଷଡଙ୍ଗୀ**

ଗଜପତି ଓ ଶ୍ରୀଜଗନ୍ନାଥ ଏଇ ଦୁଇଟି ଶବ୍ଦ ଅଭିନ୍ନ ଓ ଅଙ୍ଗାଙ୍ଗୀ । କମ୍ବୁକଟକର ରାଜା ଜଗନ୍ନାଥଙ୍କ ରାଉତପଣରେ ଗଜପତି ଆଦ୍ୟ ସେବକର ସମ୍ମାନ ପାଇଛନ୍ତି । ଶ୍ରୀମନ୍ଦିରରେ ବର୍ତ୍ତମାନ ପ୍ରଚଳିତ ୧୨୦ ପ୍ରକାର ସେବା ମଧ୍ୟରୁ ଗଜପତି ସେବା ଏକା ଏକ ମହାନାୟକ ସେବା ଭାବରେ ସ୍ୱୀକୃତ ମଧ୍ୟ । ଏପରିକି ମାଦଳାପାଞ୍ଜିରେ ରାମଚନ୍ଦ୍ର ଦେବ ଦ୍ୱିତୀୟଙ୍କ ଭଳି ଅନେକ ରାଜାଙ୍କ ସ୍ଥଳେ ଗଜପତିଙ୍କୁ ଶ୍ରୀଠାକୁର ବୋଲି କୁହାଯାଇ ଦେବୋପମ ମର୍ଯ୍ୟାଦା ଦିଆଯାଇଛି, ଯଥା– ଶ୍ରୀଠାକୁରେ ଖୋରଧା ବିଜେ କଲେ ଇତ୍ୟାଦି । ଅଠର ଗଡଜାତର ଅନ୍ୟ ରାଜାମାନେ ପରମ୍ପରା ଅନୁଯାୟୀ ଗଜପତିଙ୍କ ପାନବଟା ଧରିବା, ଚାମର ଚାଳିବା ପ୍ରଭୃତି ସେବା କରି ସେହି ଆସନ ପ୍ରତି ସମ୍ମାନ ପ୍ରଦର୍ଶନ କରୁଥିଲେ । ପ୍ରତିବଦଳରେ ଗଜପତି ମଧ୍ୟ ସେହି ସେବକ ରାଜାମାନଙ୍କୁ ଶାଢୀ ବନ୍ଧାଇ ଶ୍ରୀମନ୍ଦିରରେ ପରିଛା, ଛୁରୀ ଖଣ୍ଡା ସେବା ଆଦି ଅର୍ପଣ କରୁଥିଲେ । ତେବେ ଗଜପତି ମହାରାଜା ଠାକୁର ରାଜା ଭାବରେ ପରିଚିତ ହେବା ପ୍ରକ୍ରିୟା ଅନଙ୍ଗ ଭୀମଦେବ ୩ୟଙ୍କଠାରୁ ଆରମ୍ଭ ହୋଇଥିବା କୁହାଯାଇପାରେ । କାରଣ ସେ ହିଁ ଶ୍ରୀଜଗନ୍ନାଥଙ୍କ ସାର୍ବଭୌମତ୍ୱକୁ ସ୍ୱୀକାର କରି ନିଜକୁ ଜଣେ ବିନମ୍ର ରାଉତ–ସେବକ ଭାବରେ ଘୋଷିତ କରିଛନ୍ତି । ସୂର୍ଯ୍ୟବଂଶୀ ପୁରୁଷୋତ୍ତମ ଦେବଙ୍କୁ ଗୁଣ୍ଡୁରର ମୁକୁଟପାଲି ଶିଳାଲେଖରେ ଜଗନ୍ନାଥ ବରପ୍ରସାଦ ବୋଲି କୁହାଯାଇଛି । ଏହି କ୍ରମରେ ଅଦ୍ୟାବଧି ରାଜୁଡା ନ ଥିଲେ ସୁଦ୍ଧା ଗଜପତି ଠାକୁର ରାଜା ଭାବରେ ଉତ୍କଳର ପୁରପଲ୍ଲୀରେ ସମ୍ମାନ ପାଇବା ସହ ତାଙ୍କ ଆଦେଶ ଅବମାନନାର ଅର୍ଥ ଜଗନ୍ନାଥଙ୍କ ଦୋରେହା ବା ଦ୍ରୋହୀ ହେବା ବୁଝାଯାଏ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରୀତିନୀତିକୁ ମଧ୍ୟ ରାଜକୀୟ ପରମ୍ପରାର ସମତାଳରେ ସମ୍ପାଦନ କରାଯିବାର ବ୍ୟବସ୍ଥା ଏହି ଗଜପତିମାନଙ୍କ ଦ୍ୱାରା କରାଯାଇଛି । ଉଦାହରଣ ସ୍ୱରୂପ– ରାଜା ଶୟନ କକ୍ଷକୁ ଗଲାବେଳେ ଓ ଶଯ୍ୟା ତ୍ୟାଗ କଲାବେଳେ ବାଦ୍ୟ ବାଜିବାର ପ୍ରଥା ଥିଲା ବେଳେ ଶ୍ରୀଜଗନ୍ନାଥଙ୍କ ରାତ୍ରି ପହୁଡ ଓ ପ୍ରାତଃ କାଳର ଅପହୁଡ ସମୟରେ ମଧ୍ୟ ବାଦ୍ୟ ବାଦନର ବ୍ୟବସ୍ଥା ଖଞ୍ଜା ଯାଇଛି । ସେହିପରି ରାଜା ରକ୍ତବର୍ଣ୍ଣର ଦଣ୍ଡ ଧାରଣର ବିଧି ଥିବାବେଳେ






ଶ୍ରୀଜଗନ୍ନାଥଙ୍କ ରାଜଦଣ୍ଡ ସ୍ୱରୂପରେ ଆରକ୍ତବର୍ଣ୍ଣର ଦଣ୍ଡାକୃତି ଶ୍ରୀସୁଦର୍ଶନ ବିଦ୍ୟମାନ । ପ୍ରଜାଙ୍କୁ ଭେଟିବା ସମୟରେ ରାଜା ସୁବେଶ ଓ ସହାସ୍ୟବଦନ ହେବାର ନିୟମ (ଅଳଂକୃତଶ୍ଚ ସଂପଶ୍ୟେତ୍- ମନୁସ୍ମୃତି-୭/୨୨୨) ଥିବାବେଳେ ଶ୍ରୀଜଗନ୍ନାଥଙ୍କ ବେଶ ସହିତ ସାହାଣମେଲା ଦର୍ଶନ ଏହାର ପ୍ରତିଫଳନ ବୋଲି କୁହାଯାଇପାରେ । ପୁନଶ୍ଚ ରାଜାଙ୍କ ଭଳି ଶ୍ରୀଜଗନ୍ନାଥ ମଧ୍ୟ ପାତ୍ର-ମନ୍ତ୍ରୀ ଓ ସେବକ-ସେବାୟତ-ବେଷ୍ଟିତ । ଉଦାହରଣତଃ ଶ୍ରୀଲୋକନାଥ ଭଣ୍ଡାରରକ୍ଷକ, ଶ୍ରୀଯମେଶ୍ୱର ଆୟ ବ୍ୟୟର ଅଧୀକ୍ଷକ, ଶ୍ରୀବେଡି ହନୁମାନ୍ ସୁରକ୍ଷାସେନାନୀ ଇତ୍ୟାଦି । ଶ୍ରୀନଅର ଓ ଶ୍ରୀମନ୍ଦିର- ଉଭୟ ପ୍ରାସାଦର ଦ୍ୱାରକୁ ସିଂହଦ୍ୱାର କୁହାଯାଏ ଓ ଉଭୟ ଦ୍ୱାରସ୍ଥଳରେ ସିଂହମୂର୍ତ୍ତି ମଧ୍ୟ ସ୍ଥାନିତ । ମଣିମା, ମଣୋହି ଇତ୍ୟାଦି ଅନେକ ଶବ୍ଦର ବ୍ୟବହାର ମଧ୍ୟ ଉଭୟ ଶ୍ରୀଜଗନ୍ନାଥ ଓ ଗଜପତିଙ୍କ ଉଦ୍ଦେଶ୍ୟରେ କରାଯାଇଥାଏ ଶ୍ରୀକ୍ଷେତ୍ରରେ ।

ମହାପ୍ରଭୁ ଜଗନ୍ନାଥଙ୍କୁ ବହୁ ସ୍ତୁତିରେ ସାକ୍ଷାତ୍ ସଂକଳ୍ପ-କଳ୍ପଦ୍ରୁମ ବୋଲି କୁହାଯିବା ସହିତ ଦାତାପଣେ ନୀଳାଦ୍ରି କେଶରୀଙ୍କି କେହି ସରି ନୁହେଁ ବୋଲି ବୋଲାଯାଏ । ଏହାର ସମତାନୁରୂପ ନୈଷଧ ମହାକାବ୍ୟ (ଦ୍ୱାଦଶ ସର୍ଗ)ରେ କବିରାଜରାଜି ମୁକୁଟାଳଙ୍କାର ଶ୍ରୀହର୍ଷ ଉତ୍କଳର ଅଧିପତିଙ୍କ ଭୂୟସୀ ପ୍ରଶଂସା କରିଛନ୍ତି । ଦମୟନ୍ତୀଙ୍କ ସ୍ୱୟଂବର ସଭାରେ ଉତ୍କଳ ରାଜାଙ୍କ ଉପସ୍ଥିତିକୁ ଅଧିକ ଗୁରୁତ୍ୱ ଦେଇ ଶ୍ରୀହର୍ଷ ସରସ୍ୱତୀ ମୁଖରେ ତାଙ୍କର ବୀରତ୍ୱ, ଦାନଶୀଳତା, ରୂପଲାବଣ୍ୟ ପ୍ରଭୃତିକୁ ଅତି ଉଚ୍ଚାଙ୍ଗ ବିଚାରରେ ପରିପୁଷ୍ଟ କରିଛନ୍ତି ମଧ୍ୟ । ଦାନଶୀଳତାରେ ଉତ୍କଳର ରାଜା ଉଭୟ କଳ୍ପବୃକ୍ଷ ଓ କାମଧେନୁଠାରୁ ଅଧିକ ଦାନୀ । ସେହିପରି କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ଭାଷାରେ ମହାପ୍ରଭୁଙ୍କୁ କମ୍ବୁକଟକ ବା ଶ୍ରୀକ୍ଷେତ୍ରର ରାଜା କୁହାଯିବା ସହିତ ଗଜପତିଙ୍କୁ ଶ୍ରୀକ୍ଷେତ୍ର ମଉଡମଣି ମଧ୍ୟ କୁହାଯାଏ । ଶ୍ରୀଜଗନ୍ନାଥଙ୍କ ଅଭିଷେକ ଓ ଦେବାର୍ଚ୍ଚନ ହେବା ଭଳି ଗଜପତିଙ୍କର ମଧ୍ୟ ଅଭିଷେକ ଓ ଦେବାର୍ଚ୍ଚନ ହୋଇଥାଏ । ଶ୍ରୀଜଗନ୍ନାଥଙ୍କ ବିଜେ ସମୟରେ ଛାମୁଖୁଣ୍ଟିଆ ମଣିମା ଡାକ ଦେବାର ସମତାଳରେ ଗଜପତିଙ୍କ ବିଜେ ସମୟରେ ବେହେରା ଖୁଣ୍ଟିଆ ସହଯାତ୍ରୀ ହେବା ପ୍ରଥା ରହିଛି । ସେହିପରି ନବକଳେବରରେ ଦାରୁ ଅନ୍ୱେଷଣରେ ବାହାରିବା ବେଳେ ବନଯାଗ ଯାତ୍ରୀଗଣ ଶ୍ରୀଜଗନ୍ନାଥଙ୍କଠାରୁ ଆଜ୍ଞାମାଳ ପାଇବା ସହ ଗଜପତିଙ୍କ ପକ୍ଷରୁ ଗୁଆ ଗ୍ରହଣ କରି ଯାଆନ୍ତି ଓ କୋଇଲି ବୈକୁଣ୍ଠର ଦାରୁପ୍ରତିଷ୍ଠା ଯଜ୍ଞରେ ଗଜପତି ହିଁ ପୂର୍ଣ୍ଣାହୁତି ପ୍ରଦାନ କରନ୍ତି । ଶ୍ରୀଜଗନ୍ନାଥଙ୍କ ପ୍ରତିନିଧି ଭାବରେ କେତେବେଳେ ଶ୍ରୀମଦନମୋହନ ତ କେତେବେଳେ ଶ୍ରୀସୁଦର୍ଶନଙ୍କ କାର୍ଯ୍ୟକ୍ରମ ରହିଥିବା ବେଳେ ଗଜପତିଙ୍କ ପ୍ରତିନିଧି ଭାବରେ ମୁଦ୍ରାହସ୍ତ ବା ମୁଦିରଥଙ୍କ କାର୍ଯ୍ୟ କରିବାର ପରମ୍ପରା ମଧ୍ୟ ବିଭିନ୍ନ ପର୍ବରେ ରହିଛି । ଶ୍ରୀଜୀଉଙ୍କ ସ୍ୱନକ୍ଷତ୍ରରେ ଅଧିକ ବନ୍ଦାପନା ହେବା ପରି ଗଜପତି ରାଜାଙ୍କ ସ୍ୱନକ୍ଷତ୍ରରେ ଅଧିକ ଭୋଗ ହୋଇ ଶ୍ରୀନଅରକୁ ଟାଟ ଯାଏ । ଶ୍ରୀଜଗନ୍ନାଥଙ୍କ ସ୍ନାନ ଓ ଗୁଣ୍ଡିଚାଭଳି ସ୍ୱୟଂଲୀଳାରେ ପହଣ୍ଡିବିଜେ ସମୟରେ ଚାମର-ବ୍ୟଞ୍ଜନ-ଛତ୍ର-ତ୍ରାସ ପ୍ରଭୃତି ସହିତ ବୀଣା-ମର୍ଦ୍ଦଳ-କାହାଳ-ମଧୁରୀ-ଘଣ୍ଟା-ଗୀତ-ନୃତ୍ୟାଦି ପ୍ରାୟ ୧୧ଟି ରାଜୋପଚାର ଅର୍ପଣ କରାଯିବାର ସମତାଳରେ ଗଜପତିଙ୍କ ବିଜେ ସମୟରେ ମଧ୍ୟ ଛତ୍ର-ଚାମର-ଘଣ୍ଟ-କାହାଳ(ବୀର କାହାଳି) ସହିତ ପଟୁଆର ଯିବାର ପରମ୍ପରା ରହିଛି ।

ଆହୁରି ମଧ୍ୟ ଦ୍ୱାଦଶ ଶତାବ୍ଦୀରେ ରଚିତ ଶ୍ରୀହର୍ଷଙ୍କ ନୈଷଧ ମହାକାବ୍ୟରେ ଏହି ରାଜାଙ୍କ ଏକ ବିରାଟ ଗଜବାହିନୀ ଥିବାର ଉଲ୍ଲେଖ ଥିବା ସହିତ ସେ ଗଜମାନଙ୍କୁ ଗନ୍ଧଗଜ କୁହାଯାଉଥିଲା ବୋଲି ମଧ୍ୟ ବର୍ଣ୍ଣନା ରହିଛି । ତେବେ ଇତିହାସ ଦୃଷ୍ଟିରୁ ଏହି ରାଜାଙ୍କୁ ଗଜପତି ବୋଲି ସଂବୋଧନ କରାଯିବାର ପରମ୍ପରା ଆରମ୍ଭ ହୋଇଥିଲା ଦ୍ୱିତୀୟ ଅନଙ୍ଗ ଭୀମଦେବଙ୍କ ଶାସନ ସମୟରୁ । ମାଦଳାପାଞ୍ଜି ମତରେ ଏହି ୨ୟ ଅନଙ୍ଗ ଭୀମଦେବ ବା ଭୀମ ପରିରାଏ ପ୍ରଥମେ ଚୌଦ୍ୱାର-କଟକରେ ଅବସ୍ଥାନ କରୁଥିଲେ । ପରେ ଦିନେ ମହାନଦୀ ପାର ହୋଇ ଦକ୍ଷିଣ ଦିଗରେ ବାରବାଟୀ ଗ୍ରାମରେ ବିଶ୍ୱେଶ୍ୱର ମହାଦେବଙ୍କ ସନ୍ନିଧିରେ ଏକ ଶାମଳ ପକ୍ଷୀକି ଗୋଟିଏ ବଗ ମାଡି ବସିଥିବାର ଦେଖିଲେ । ଏହା ଦେଖି ରାଜା ଶୁଭଯୋଗରେ ସେହି ବାରବାଟୀଠାରେ ନଅର ତୋଳାଇ ରାଜଧାନୀ କରି ତା'ର ନାମ ବାରାଣସୀ-କଟକ ରଖିଲେ, ଯାହାକି ଅଧୁନା ବିଡାନାସୀ-କଟକ ଭାବରେ ପରିଚିତ । ଚୌଦ୍ୱାରରୁ ଉଠିଆସି ସେହି ରାଜା ବିଡାନାସୀ-କଟକରେ ନବନିର୍ମିତ ନଅରରେ ରହିଲେ । ପରବର୍ତ୍ତୀ ସମୟରେ ଶ୍ରୀଜୀଉଙ୍କ ସ୍ୱପ୍ନାଦେଶ ପାଇ ସେ





ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ବିଜେ କରି ଶ୍ରୀଜଗନ୍ନାଥାଦିଙ୍କୁ ଦର୍ଶନ କରି ଛାମୁରେ ଶାଢୀପ୍ରସାଦ ଲାଗି ହୋଇ ଶ୍ରୀନଅରରେ ବିଜେ କରି ମୁଦଲ ବା ମୋହରଯୁକ୍ତ ଘୋଷଣା କରାଇଲେ । ଏହି ଘୋଷଣା ଥିଲା–ଶ୍ରୀବୀର ଶ୍ରୀ ଗଜପତି ଗୌଡେଶ୍ୱର ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର ଅଭିରାଏ ଭୂତ ଭୈରବ ଦୁଃସହ ଦୁଃଶାସନ ଅନୀକରଣେ ରାଉତରାଏ ଅତୁଳବଳ ପରାକ୍ରମ ସଂଗ୍ରାମ ସହସ୍ରବାହୁ ଧୂମକେତୁ ଶ୍ରୀ ଅନଙ୍ଗ ଭୀମଦେବ ମହାରାଜ । ପୁନଶ୍ଚ ଦ୍ୱାଦଶ ଶତାବ୍ଦୀର ଶ୍ରୀହର୍ଷକୃତ ମହାକାବ୍ୟ ନୈଷଧରେ ମଧ୍ୟ ଉତ୍କଳୀୟ ଗଜପତିଙ୍କ ନାମର ଯଥାର୍ଥ୍ୟ ସହିତ ପ୍ରଶସ୍ତି ବର୍ଣ୍ଣିତ ହୋଇଛି । ଏହି ମହାକାବ୍ୟର ଦ୍ୱାଦଶ ସର୍ଗରେ ଉତ୍କଳୀୟ ଗଜପତିଙ୍କ ବଦାନ୍ୟତା, ବୀର୍ଯ୍ୟ, ପରାକ୍ରମ ଓ ଯଶଃ ବର୍ଣ୍ଣନାରେ ଶ୍ରୀହର୍ଷ ହୋଇଛନ୍ତି ଶତମୁଖ ଓ ଲେଖିଛନ୍ତି ଯେ, ଏହି ରାଜାଙ୍କ ବିପୁଳ ଗଜସେନା ଥିଲେ ଓ ଗଜମାନଙ୍କୁ ଗନ୍ଧଗଜ ବୋଲି କୁହାଯାଉଥିଲା । ଯଥା– ଏତଦ୍‌ଗନ୍ଧଗଜସ୍ତ୍ରଷ୍ଣାମ୍ବସି ଭୃଶଂ କଣ୍ଠାନ୍ତମଜ୍ଜଉନ୍ନଃ (ନୈଷଧ–୧୨/୮୫) । ଏହି ଗଜମାନଙ୍କ ପତି ଭାବରେ ଗଜପତି ନାମ ସିଦ୍ଧ ହେବା ଅଧିକ ଯୁକ୍ତିଯୁକ୍ତ ମନେହୁଏ ।

ତେବେ ରାଜା ଓ ଜଗନ୍ନାଥଙ୍କ ଏତାଦୃଶ ସମ୍ପର୍କର ମୂଳାଧାର ବିବିଧ ପୁରାଣ ଦୃଷ୍ଟିରେ ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗ ବୋଲି ଜଣାଯାଏ । ପରେ ଇତିହାସ ଦୃଷ୍ଟିରୁ ରାଜା ପରୀକ୍ଷିତଙ୍କଠାରୁ କ୍ରମଶଃ ଶୋଭନ ଦେବଙ୍କ ସମୟରେ ତାଙ୍କର ୨ୟ ଅଙ୍କରେ ଡିଲିରୁ (ଆଧୁନିକ ଦିଲ୍ଲୀରୁ) ଆସିଥିବା ରକ୍ତବାହୁର ଆକ୍ରମଣରୁ ବଞ୍ଚାଇ ପରମେଶ୍ୱରଙ୍କୁ ସୁନୁପୁର (ଆଧୁନିକ ସୋନପୁର)ର ଗୋପଲୀ (ଆଧୁନିକ ଗୋପାଳୀ) ଗ୍ରାମକୁ ନେଇଯିବା କଥା ମାଦଳାପାଞ୍ଜିରୁ ଜଣାଯାଏ । ଏହା ପରେ ମୋଗଲମାନଙ୍କ ପ୍ରବଳ ପ୍ରଭାବରେ ଅତିଷ୍ଠ ସେବକମାନେ ଶ୍ରୀପରମେଶ୍ୱରଙ୍କୁ ସେଠାରେ ପାତାଳୀ କରାଇ, ସେହି ସ୍ଥାନରେ ଏକ ବୃକ୍ଷରୋପଣ କରି ରାଜ୍ୟ ତ୍ୟାଗ କରିଥିବା ରାଜଭୋଗ ଇତିହାସରେ ଉଲ୍ଲେଖ ରହିଛି । ସେଠାରେ ଶ୍ରୀଜୀଉ ପରମେଶ୍ୱର ୧୪୪ ବର୍ଷ ପର୍ଯ୍ୟନ୍ତ ପାତାଳୀ ହୋଇ ରହିଥିବା ପ୍ରକାଶ । ପରେ କେଶରୀ ବଂଶୀୟ ଯଯାତି କେଶରୀଙ୍କଦ୍ୱାରା ଶ୍ରୀଜୀଉଙ୍କୁ ଉଦ୍ଧାର କରାଯାଇ ଶଙ୍ଖନାଭି ମଣ୍ଡଳରେ ୩୮ ହାତର ପଟୋଳ ବା ପ୍ରାସାଦରେ ବିଜେ କରାଯିବା କଥା ମଧ୍ୟ ମାଦଳାପାଞ୍ଜିରେ ଲିଖିତ ଅଛି । ପ୍ରାୟ ୬୦୦ ବର୍ଷ ପର୍ଯ୍ୟନ୍ତ କେଶରୀ ବଂଶର ରାଜତ୍ୱର ଅବସାନ ହୋଇଥିଲା ଶେଷ ରାଜା ସିଦ୍ଧକର୍ଣ୍ଣ କେଶରୀ ବା ସିଦ୍ଧେଶ୍ୱର କର୍ଣ୍ଣ କେଶରୀଙ୍କ ପରାଜୟ ସ୍ୱୀକାର ପରେ । କାରଣ ଏହି ସମୟକୁ ବିଶିଷ୍ଟ ଶାବରତନ୍ତ୍ର ବିଶାରଦ ବାସୁଦେବ ବାହିନୀପତିଙ୍କ ସହିତ ତାଙ୍କର ଅପଡ ହେବାରେ ବାହିନୀପତି ଦକ୍ଷିଣ ଭାରତର ଚୁଡଗଙ୍ଗ ଦେବଙ୍କୁ ଡକାଇ ଆଣି ବସନ୍ତକେଶରୀଙ୍କୁ ହଟାଇ ରାଜା କରାଇଲେ । ଏହି ରାଜବଂଶର ଅନଙ୍ଗ ଭୀମଦେବ ୩ୟଙ୍କ ସମୟରେ ଶ୍ରୀବସ୍ତ ଖଣ୍ଡଶାଳ ଦେଉଳ ପ୍ରତିଷ୍ଠା ହୋଇଥିଲା । ଏହି ବଂଶର ଯବନିକା ପଡିଥିଲା ଅକଟା ଅବଟା ଭାନୁଦେବ ବା ୪ର୍ଥ ଭାନୁଦେବଙ୍କ ୧୫ବର୍ଷର ରାଜଭୋଗ ପରେ । ତାହା ପରେ ସୂର୍ଯ୍ୟବଂଶର କପିଳି ରାଉତ ପ୍ରଥମ ରାଜା କପିଳେନ୍ଦ୍ର ଦେବ ଭାବରେ ପରିଚିତ ହୋଇ ୩୦ ବର୍ଷ ରାଜଭୋଗ କଲେ । ଏହି ବଂଶର ଶେଷ ରାଜା ଥିଲେ ରଘୁବଂଶ ଛୋଟରାୟ ଓ ଏହାଙ୍କ ପରେ କଳାପାହାଡ ଆକ୍ରମଣ ଓ ବିଶର ମହାନ୍ତି ପ୍ରସଙ୍ଗ ଘଟିଥିଲା । ଏହି ରାଜବଂଶ ପରମ୍ପରାର ଶେଷ ବଂଶ ହେଉଛି ଭୋଇବଂଶ । ଏହି ଭୋଇବଂଶର ପ୍ରଥମ ରାଜା ହେଉଛନ୍ତି ରମାଇ ରାଉତରାୟ ବା ରାମଚନ୍ଦ୍ର ଦେବ, ଯାହାଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି ମଧ୍ୟ କୁହାଯାଉଥିଲା । ଏହି ରାଜାଙ୍କଠାରୁ ଆରମ୍ଭ ହୋଇଥିବା ଭୋଇବଂଶ କ୍ରମଶଃ ପୁରୁଷୋତ୍ତମ ଦେବ, ନରସିଂହ ଦେବ, ଗଙ୍ଗାଧର ଦେବ, ବଳଭଦ୍ର ଦେବ, ମୁକୁନ୍ଦ ଦେବ, ଦିବ୍ୟସିଂହ ଦେବ, ହରେକୃଷ୍ଣ ଦେବ ପ୍ରମୁଖଙ୍କ ଶାସନକ୍ରମର ବର୍ତ୍ତମାନର ଉତ୍ତରାଧିକାରୀ ହେଲେ ଗଜପତି ଶ୍ରୀଦିବ୍ୟସିଂହ ଦେବ । ଏହି ପ୍ରେକ୍ଷାପଟରେ ଯୁଗେ ଯୁଗେ ଠାକୁର ରାଜା ଭାବରେ ଉତ୍କଳର ପୁରପଲ୍ଲୀରେ ଗଜପତି ଚଳମାନ ବିଷ୍ଣୁ ଭାବରେ ଶାସ୍ତ୍ରସିଦ୍ଧ ପରମ୍ପରାରେ ପୂଜିତ ହୋଇଆସୁଛନ୍ତି ।

ପ୍ଲଟ୍ ନଂ– ୮୭/୧, ଲେନ୍–୩
ରୋଡ୍–୨, ଜଗନ୍ନାଥ ବିହାର
ବରମୁଣ୍ଡା, ଭୁବନେଶ୍ୱର–୩

# ବିଦ୍ୟାଦାତା ଓ ସିଦ୍ଧିଦାତା ଶ୍ରୀଗଣେଶ

**ପଣ୍ଡିତ ରାମକୃଷ୍ଣ ମିଶ୍ର**

ବକ୍ରତୁଣ୍ଡ ମହାକାୟ ସୂର୍ଯ୍ୟକୋଟୀ ସମପ୍ରଭଃ,
ନିର୍ବିଘ୍ନଂ କୁରୁ ମେ ଦେବ ସର୍ବ କାର୍ଯ୍ୟେଷୁ ସର୍ବଦା ॥
ଖର୍ବଂ ସ୍ଥୂଳତନୁଂ ଗଜେନ୍ଦ୍ର ବଦନଂ ଲମ୍ବୋଦରଂ ସୁନ୍ଦରମ୍,
ପ୍ରସ୍ୟନ୍ଦନ୍ ମଧୁଗନ୍ଧ ଲୁବ୍ଧ ମଧୁପ ବ୍ୟାଲୋଳ ଗଣ୍ଡସ୍ଥଳଂ
ଦନ୍ତାଘାତ ବିଦାରିତାରି ରୁଧିରୈଃ ସିନ୍ଦୂର ଶୋଭାକରଂ,
ବନ୍ଦେ ଶୈଳସୁତା ସୁତଂ ଗଣପତିଂ ସିଦ୍ଧିପ୍ରଦଂ କାମଦମ୍ ।

ଭାଦ୍ରବ ଶୁକ୍ଳ ଚତୁର୍ଥୀ ତିଥିରେ ମଧ୍ୟାହ୍ନ କାଳ ସୋମବାର ଓ ସ୍ୱାତୀ ନକ୍ଷତ୍ର ଯୋଗରେ ତୁଳା ରାଶିରେ ମହିମାମୟ, କୁନ୍ଦ ଧବଳ, ଷଡ଼ଭୁଜ ଓ ତ୍ରିନୟନ ଶ୍ରୀଗଣେଶ ହରପାର୍ବତୀଙ୍କ ପୁତ୍ର ରୂପେ ପ୍ରକଟ ହୋଇଥିଲେ । ଏଣୁ ଏହିଦିନ ଗଣେଶଙ୍କ ଜନ୍ମଦିନ ସର୍ବତ୍ର ଗଣେଶ ଚତୁର୍ଥୀ ଭାବରେ ପାଳନ କରାଯାଏ । ଅମର ସିଂହ କୃତ 'ଅମର କୋଷଃ ଅଭିଧାନ'ରେ ଗଣେଶଙ୍କ ଆଠ ନାମର ଉଲ୍ଲେଖ ରହିଛି ।

'ବିନାୟକୋ ବିଘ୍ନରାଜ ଦ୍ୱୈମାତୃରଗଣାଧିପାଃ ।
ଅପ୍ୟେକଦନ୍ତ ହେରମ୍ବ ଲମ୍ବୋଦର ଗଜାନନଃ ॥'

ଏହିଦିନ ଶ୍ରୀଗଣେଶଙ୍କ ପୂଜା ଓ ଧ୍ୟାନ ସହ ବିନାୟକ, ବିଘ୍ନରାଜ, ଦ୍ୱୈମାତୁର, ଗଣାଧିପ, ଏକଦନ୍ତ, ହେରମ୍ବ, ଲମ୍ବୋଦର ଓ ଗଜାନନ ଆଦି ଆଠ ନାମ ଚିନ୍ତନ କଲେ ଉତ୍ତମ ଫଳ ମିଳିଥାଏ ବୋଲି କୁହାଯାଏ । ଗଣେଶ ପୁରାଣରୁ ଗଣେଶଙ୍କ ଜନ୍ମକଥା ଜଣାଯାଏ । ପର୍ଶୁରାମଙ୍କ ଦ୍ୱାରା ପ୍ରଭୁ ଗଣେଶଙ୍କ ଗୋଟିଏ ଦାନ୍ତ ଭାଙ୍ଗିଯିବାରୁ ବିଦ୍ୟାଦାତା ଗଣେଶଙ୍କୁ ଏକଦନ୍ତ ବୋଲି ସମ୍ବୋଧନ କରାଯାଉଛି ।



ଶ୍ରୀମନ୍ଦିରରେ ଏହିଦିନ ସନ୍ଧ୍ୟା ଧୂପ ପରେ କଳ୍ପବଟ ମୂଳରେ ଥିବା 'ବଟ ଗଣେଶ' ଓ ଶ୍ରୀମନ୍ଦିର ପଶ୍ଚିମ ଦିଗରେ ଥିବା 'କାଞ୍ଚି ଗଣେଶ'ଙ୍କ ନିକଟରେ ଶୀତଳ ଭୋଗ ଓ ବନ୍ଦାପନା ହେଲା ପରେ ସରସ୍ୱତୀଙ୍କ ମନ୍ଦିରଠାରେ ଭୁବନେଶ୍ୱରୀଙ୍କ ନିକଟରେ ଶୀତଳ ଭୋଗ ଓ ବନ୍ଦାପନା ହୁଏ । ଏହାପରେ





ମୂଳିଆ ସୁଆଁସିଆ ଦେଇଥିବା କାଠ ଭଦ୍ରାସନ ଉପରେ ବେହେରଣ କରଣମାନଙ୍କ ମାଦଳା ପାଞ୍ଜି ରଖାଯାଇ ପତନି ଓ ମାଳ ଲାଗି ହୋଇ ଶୀତଳଭୋଗ ଓ ବନ୍ଦାପନା ହୋଇଥାଏ ଏବଂ ପରେ କରଣମାନଙ୍କ ଦ୍ୱାରା ୨୨ଟି ନଡ଼ିଆ ଭଙ୍ଗାଯାଏ । କାଞ୍ଚିରୁ ଆସିଥିବା ଏହି କାଞ୍ଚି ଗଣେଶଙ୍କୁ 'ଉଚ୍ଛିଷ୍ଟ ଗଣେଶ' ବା 'ଭଣ୍ଡ ଗଣେଶ' ମଧ୍ୟ କୁହାଯାଏ ।

ଥରେ ଗଣେଶଙ୍କ ଜନ୍ମଦିନରେ ମା' ପାର୍ବତୀ ୨୧ ପ୍ରକାର ବ୍ୟଞ୍ଜନ ଓ ପ୍ରଚୁର ମିଠା ଖିରି ଗଣେଶଙ୍କୁ ଖୁଆଇଲେ । ଲୋଭାତୁର ପୁତ୍ର ଗଣେଶ ଯଥେଷ୍ଟ ଖାଇ ବାହନ କ୍ଷୁଦ୍ର ମୂଷା ଉପରେ ବସି ବୁଲିବାକୁ ଗଲେ । ବୁଲିବା ସମୟରେ ମୂଷା ଗୋଟିଏ ସାପକୁ ଦେଖି ଛାନିଆରେ ଝୁଣ୍ଟି ପଡ଼ିବା ଫଳରେ ଗଣେଶ ମଧ୍ୟ ବଡ଼ ଶବ୍ଦ କରି ତଳେ ପଡ଼ିଗଲେ । ଗଣେଶ ସେ ସାପଟିକୁ ଧରି ଆଣି ଅଣ୍ଟାରେ କମରପଟି ରୂପେ ବାନ୍ଧିଲେ । ଆକାଶରେ ଚନ୍ଦ୍ର ଏହା ଦେଖି ଥଟ୍ଟା କରି ହସିଲେ । ଅପମାନିତ ଗଣେଶ ତାଙ୍କ ଦାନ୍ତରୁ ଗୋଟିଏ ଚନ୍ଦ୍ରଙ୍କୁ ଆଘାତ କରିବାକୁ ଫୋପାଡ଼ିଲେ । ଚନ୍ଦ୍ର ମେଘ ଆଢୁଆଳରେ ଲୁଚିଗଲେ । ଗଣେଶ ତାଙ୍କୁ ଅଭିଶାପ ଦେଲେ, ଏଣିକି ମୋ ଜନ୍ମତିଥିରେ ତୁମଙ୍କୁ ଚାହିଁବା ବ୍ୟକ୍ତି ଜ୍ଞାତି ପରିଜନଙ୍କ ଦ୍ୱାରା ଭୁଲ ବୁଝାମଣାରେ ଓ ମିଥ୍ୟା କଳଙ୍କ ଦୋଷରେ ଭାଗୀ ହେବେ । ଏଣୁ ଏହିଦିନ ଚନ୍ଦ୍ର ଦର୍ଶନ ନିଷେଧ ଅଛି ଏବଂ ଏହିଦିନଠାରୁ ଶ୍ରୀଗଣେଶ ଗୋଟିଏ ଦାନ୍ତ ହରାଇ ଏକଦନ୍ତ ଭାବେ ନାମିତ ହେଲେ । ଏହି ପୌରାଣିକ ଆଖ୍ୟାନଟି ପ୍ରତୀକାତ୍ମକ । କିମ୍ବଦନ୍ତୀ ଓ ପୌରାଣିକ ମତରେ ଶନିଙ୍କ କୋପ ଦୃଷ୍ଟିରେ ତାଙ୍କର ମୁଣ୍ଡ କଟିଯାଇଥିଲା । ପରେ ହାତୀ ମୁଣ୍ଡ ଲଗାଇ ଜୀବନ୍ୟାସ ଦିଆଯାଇଛି । ଅନ୍ୟ ଏକ ମତ ଅନୁସାରେ ମାତା ପାର୍ବତୀ ମାନସ ପୁତ୍ର ଗଣେଶଙ୍କୁ ଗୁମ୍ଫା ଦ୍ୱାର ଜଗାଇ ଭିତରେ ତପସ୍ୟା କରୁଥିଲେ । ଶିବ ପାର୍ବତୀଙ୍କୁ ଭେଟିବାକୁ ଆସିବା ସମୟରେ ଗଣେଶ ଦ୍ୱାର ଛାଡ଼ିନଥିଲେ । ଯୁଦ୍ଧରେ ଶିବ ଗଣେଶଙ୍କ ମୁଣ୍ଡ କାଟିଦେଲେ । ପାର୍ବତୀ ଏହା ଜାଣି ପୁତ୍ରର ପରିଚୟ ଦେଲେ ଏବଂ କାନ୍ଦିକାନ୍ଦି ପୁତ୍ରକୁ ବଞ୍ଚାଇବାକୁ ଶିବଙ୍କୁ ଅନୁରୋଧ କଲେ । ସେତେବେଳକୁ ସେଠାରେ ମୁଣ୍ଡ ନ ପାଇବାରୁ ଅନୁଚରମାନେ ଶିବଙ୍କ ଆଜ୍ଞାରେ ବହୁ ସ୍ଥାନ ବୁଲି ପଶ୍ଚିମ ଦିଗକୁ ମୁଣ୍ଡକରି ଶୋଇଥିବା ଏକ ହାତୀର ମୁଣ୍ଡକୁ କାଟି ଆଣିଲେ । ସେହି ମୁଣ୍ଡକୁ ଲଗାଇ ଶିବ ଗଣେଶଙ୍କୁ ଜୀବନ୍ୟାସ ଦେଲେ ।

ଏହା ମୂଳରେ ଦାର୍ଶନିକ ତଥ୍ୟର ଅବତାରଣା ପ୍ରଚ୍ଛନ୍ନ ରହିଛି । ପାର୍ବତୀ ନିଜେ ଆଦ୍ୟାଶକ୍ତି । ସାତ ସ୍ୱର୍ଗଲୋକ, ସାତ ମର୍ତ୍ତ୍ୟଲୋକ, ସାତ ମହାସାଗର ଆଦି ଏକୋଇଶ ଲୋକକୁ ବୁଝାଏ । ଏ ସମସ୍ତ ଏକୋଇଶ ଲୋକର ଅଧିଷ୍ଠାତ୍ରୀ ଶକ୍ତି ସ୍ୱରୂପିଣୀ ମା' ପାର୍ବତୀ । ଏ ସମସ୍ତ ଏକୋଇଶ ଲୋକ ଏକୋଇଶ ବ୍ୟଞ୍ଜନ ରୂପେ ଶ୍ରୀଗଣେଶଙ୍କ ବିଶ୍ୱବ୍ରହ୍ମାଣ୍ଡ ରୂପୀ ଉଦର ଭିତରେ ଓ ସମସ୍ତ ଏକତ୍ର ହୋଇ ସାପର ପ୍ରତୀକ ରୂପେ କୁଣ୍ଡଳିନୀ ଶକ୍ତି ନାମରେ ନାମିତ । ସେହିପରି ମୂଷାରୂପୀ ଆତ୍ମାଭିମାନକୁ ବା ଅହଙ୍କାରକୁ ମନୁଷ୍ୟ ବିବେକ ଶକ୍ତି ବଳରେ ପାଦତଳେ ଚାପି ମୋକ୍ଷ ନିମନ୍ତେ ନିୟନ୍ତ୍ରଣରେ ରଖିବାକୁ ଗଣେଶ ଶିକ୍ଷା ଦେଇଛନ୍ତି ।

ପୁରାଣ ଅନୁସାରେ ଗଣେଶ ଚତୁର୍ଥୀ ବା ହରିତାଳିକା ଚତୁର୍ଥୀରେ ଦୈବାତ୍ କେହି ଚନ୍ଦ୍ର ଦର୍ଶନ କଲେ, ଶ୍ରୀକୃଷ୍ଣଙ୍କ ଭୂଷଣ ସ୍ୟମନ୍ତକମଣି ଉପାଖ୍ୟାନ ଓ ମନ୍ତ୍ର ଶ୍ରବଣ ଓ ପଠନ ବିଧେୟ । ଉତ୍ତରାଭିମୁଖ ହୋଇ ତିନିଥର ମନ୍ତ୍ରପାଠ କରିବେ ।

**ମନ୍ତ୍ର**

ସିଂହ ପ୍ରସେନମବଧିତ୍ ସିଂହୋ ଜାମ୍ବବତା ହତଃ,
ସୁକୁମାରକୁମାରୋଦୀଃ ତବହ୍ୟେଷସ୍ୟମନ୍ତକଃ ।

**ଗଣେଶ ଓ ତୁଳସୀ ଉପାଖ୍ୟାନ**

ଗଣେଶ ସିଦ୍ଧିଦାତା ଓ ଅଗ୍ରପୂଜ୍ୟ ଦେବତା । ସେ ଆଜୀବନ ଧ୍ୟାନ ଓ ପ୍ରାର୍ଥନାରେ କଟାଇବାକୁ ଇଚ୍ଛାକରି ତପସ୍ୟା କରୁଥିଲେ । ମିଥିଳାର ଜନକବଂଶୀୟ ରାଜା ଧର୍ମଧ୍ୱଜଙ୍କ କନ୍ୟା ତୁଳସୀ ମଧ୍ୟ ଉତ୍ତମ ପତି ପ୍ରାପ୍ତି ପାଇଁ ତପସ୍ୟା କରୁଥଲେ । ସେ ଦିନେ ଗଣେଶଙ୍କ ନିକଟରେ ପହଞ୍ଚି ତାଙ୍କୁ ଗାନ୍ଧର୍ବ ରୀତିରେ ବିବାହ ପାଇଁ ଅନୁରୋଧ କଲେ । ବିବାହ ତାଙ୍କ ତପସ୍ୟାର ପ୍ରତିବନ୍ଧକ ହେବ ଏବଂ ଅନ୍ୟ ପତି ନିର୍ବାଚନ ପାଇଁ ଗଣେଶ ତୁଳସୀଙ୍କୁ କହିବାରୁ ସେ ଏହାକୁ ଅପମାନ ବୋଧ କଲେ । ତେଣୁ ସେ ଗଣେଶଙ୍କୁ ଅଭିଶାପ ଦେଲେ ଯେ, ସେ ନିଶ୍ଚୟ ବୈବାହିକ ଜୀବନଯାପନ କରିବେ । ଏଥିରେ ଗଣେଶ କ୍ରୁଧ ହୋଇ ତୁଳସୀ ଏକ ରାକ୍ଷସକୁ ବିବାହ କରିବେ ବୋଲି ଅଭିଶାପ

ଦେଲେ ଏବଂ ତା'ପରେ ତୁଳସୀ ଏକ ବୃକ୍ଷ ରୂପ ପୁନର୍ବାର ଧାରଣ କରିବେ। ତୁଳସୀ ଏଥିରେ ଅନୁତପ୍ତା ହୋଇ କ୍ଷମା ପ୍ରାର୍ଥନା କଲେ। ମାତ୍ର ତାଙ୍କ ପୂଜାରେ ତୁଳସୀ ଲାଗି ହେବନାହିଁ ବୋଲି କହିଲେ ଗଣେଶ । ଗଣେଶଙ୍କ ଅଭିଶାପରେ ତୁଳସୀ ଦୈତ୍ୟରାଜ ଶଙ୍ଖଚୂଡ ବା ଜଳନ୍ଧରଙ୍କୁ ବିବାହ କରିଥିଲେ। ଶଙ୍ଖଚୂଡର ବିନାଶ ପାଇଁ ନାରାୟଣ ଶଙ୍ଖଚୂଡ ରୂପରେ ତୁଳସୀର ସତୀତ୍ୱ ହରଣ କଲେ। ସତୀ ତୁଳସୀ ନିଜର ସତୀତ୍ୱ ନଷ୍ଟ ହୋଇଛି ଏବଂ ଶିବଙ୍କ ଦ୍ୱାରା ଶଙ୍ଖଚୂଡର ବିନାଶ ହେବ ଜାଣି ନାରାୟଣଙ୍କୁ ଶାପ ଦେଲେ – 'ତୁମେ ପାଷାଣ ହୋଇ ରହ'। ଶଙ୍ଖଚୂଡର ଅସ୍ଥିସବୁ ଲବଣ ସମୁଦ୍ରରେ ପଡି ଶଙ୍ଖ ହେଲା ଏବଂ ତାହା ଦେବାର୍ଚ୍ଚନା ଓ ଅନ୍ୟାନ୍ୟ ମାଙ୍ଗଳିକ କାର୍ଯ୍ୟରେ ବ୍ୟବହୃତ ହେଉଛି। ସତୀ ତୁଳସୀ ନାରାୟଣଙ୍କ ପାଦପଦ୍ମ ତଳେ ପତିତ ହେଲେ। ନାରାୟଣ କହିଲେ– 'ତୁମର ଶରୀର ଗଣ୍ଡକୀ ନଦୀ ହେବ। ତୁମର କେଶଗୁଡିକ ତୁଳସୀ ବୃକ୍ଷ ରୂପେ ଜନ୍ମ ହେବ। ତୁମେ ଲକ୍ଷ୍ମୀଭଳି ମୋର ପ୍ରିୟା ହେବ।' ତାହାହିଁ ହେଲା ଏବଂ ଗଣ୍ଡକୀ ନଦୀ ଅତି ପବିତ୍ର ହେଲା ଓ ତୁଳସୀ ନାରାୟଣଙ୍କ ଅତିପ୍ରିୟ ହେଲେ। ଏହା ବ୍ରହ୍ମବୈବର୍ତ୍ତ ପୁରାଣର ଆଖ୍ୟାୟିକା ଏବଂ ତୁଳସୀ ଏଥିପାଇଁ ଗଣେଶଙ୍କ ପୂଜାରେ ବ୍ୟବହୃତ ହୁଏ ନାହିଁ। ଗଣେଶ ମଧ୍ୟ ସିଦ୍ଧି ଓ ବୁଦ୍ଧି ନାମ୍ନୀ ଦୁଇଟି ପତ୍ନୀ ଗ୍ରହଣ କରିଥିଲେ। ପଦ୍ମପୁରାଣ ମତରେ କାଳନେମୀ ଅସୁରର ଝିଅ ବୃନ୍ଦା ଅସୁର ଜଳନ୍ଧରର ପତ୍ନୀ ଥିଲେ। ଜଳନ୍ଧର ଇନ୍ଦ୍ରଙ୍କୁ ପରାସ୍ତ କରି ସ୍ୱର୍ଗରେ ରାଜା ହେବାକୁ ଇଚ୍ଛା କରିବାରୁ ଇନ୍ଦ୍ର ଶିବଙ୍କ ଶରଣ ନେଲେ। ପୁଣି ଜଳନ୍ଧର ପାର୍ବତୀଙ୍କୁ ପାଇବାକୁ ଇଚ୍ଛା କରି ଶିବଙ୍କ ପାଖକୁ ଦୂତ ପଠାଇବାରୁ ଶିବ କ୍ରୋଧରେ ତାହା ସଙ୍ଗେ ଯୁଦ୍ଧ କଲେ। ସତୀ ପତ୍ନୀ ବୃନ୍ଦାଙ୍କ ଯୋଗୁଁ ଜଳନ୍ଧର ନାଶ ହେଲାନାହିଁ। ଜଳନ୍ଧର ଶିବ ରୂପେ ଯାଇ ପାର୍ବତୀଙ୍କୁ ପ୍ରାପ୍ତି ଇଚ୍ଛା କରିଥିବାରୁ ନାରାୟଣ ସେହିପରି ଜଳନ୍ଧର ରୂପେ ତା'ର ପତ୍ନୀର ସତୀତ୍ୱ ନାଶ କଲେ ଏବଂ ଜଳନ୍ଧରର ମୃତ୍ୟୁ ହେଲା। ବିଷ୍ଣୁଙ୍କର ଏହି କୁକାର୍ଯ୍ୟ ବୃନ୍ଦା ଜାଣିପାରି ତାଙ୍କୁ ଅଭିଶାପ ଦେଲେ ଯେ 'ତୁମର ପତ୍ନୀ ଏହିପରି ତୁମ୍ଭ ବିରହରେ ଯନ୍ତ୍ରଣା ଅନୁଭବ କରିବ', ଯାହାକି ପରବର୍ତ୍ତୀ ତ୍ରେତୟା ଯୁଗରେ ଶ୍ରୀରାମଙ୍କ ଅବତାରରେ ଘଟିଥିଲା। ଏଣୁ ଗଣେଶଙ୍କୁ ତୁଳସୀ ଲାଗି କରିବା ନିଷେଧ ହୋଇଛି। ବିଷ୍ଣୁ କହିଲେ – ତୁମ ଭସ୍ମରୁ ତୁଳସୀ, ଧାତ୍ରୀ, ପଳାଶ ଓ ଅଶ୍ୱତ୍ଥ ବୃକ୍ଷ ହୋଇ ଯୁଗେ ଯୁଗେ ପୂଜା ପାଇବ । ବୃନ୍ଦାଙ୍କ ସତୀତ୍ୱ ପ୍ରଭାବରୁ ବିଷ୍ଣୁ ସେ ଭସ୍ମ ବୋଲି ହୋଇ ଅଚଳ ହୋଇଗଲେ ଏବଂ ଅସହ୍ୟ ଶାରୀରିକ ଓ ମାନସିକ ଯନ୍ତ୍ରଣା ଅନୁଭବ କଲେ। ଦେବଗଣଙ୍କ ସ୍ତୁତିରେ ଯୋଗମାୟା ବୃନ୍ଦାଙ୍କ ଆତ୍ମାକୁ ଉଦ୍ଧାର କଲେ। ବୃନ୍ଦାବତୀଙ୍କ ଆତ୍ମା ତ୍ରିଗୁଣ ରୂପ ଧାରଣା କଲା। ସତ୍ତ୍ୱ ଗୁଣ ଗୌରୀଙ୍କ ଅଙ୍ଗରେ, ରଜଗୁଣ ଶାରଦାଙ୍କ(ସରସ୍ୱତୀଙ୍କ) ଅଙ୍ଗରେ ଓ ତମଗୁଣ ଲକ୍ଷ୍ମୀଙ୍କ ଅଙ୍ଗରେ ମିଳିତ ହେଲା। ବୃନ୍ଦାଙ୍କ ତ୍ରିଗୁଣରୁ ଯୋଗମାୟା ତ୍ରିବୀଜର ଉତ୍ପନ୍ନ କରି ବିଷ୍ଣୁଙ୍କ ପାଖରେ ବୁଣିଲେ। ଏଥିରୁ ତିନି ପବିତ୍ର ବୃକ୍ଷର ସୃଷ୍ଟି ହେଲା। ବିଷ୍ଣୁ ଏହାଙ୍କ ବାସରେ ସଂଜ୍ଞାପ୍ରାପ୍ତ ହୋଇ ପ୍ରସନ୍ନ ହେଲେ । ସତ୍ତ୍ୱଗୁଣରୁ ତୁଳସୀ, ରଜଗୁଣରୁ ଧାତ୍ରୀ(ଅଁଳା) ଓ ତମଗୁଣରୁ ମାଳତୀ ବୃକ୍ଷର ଉତ୍ପନ୍ନ ହୋଇ ବିଷ୍ଣୁଙ୍କ ପୂଜାରେ ଲାଗିଲା।

ଗଣେଶ ଅଗ୍ରପୂଜ୍ୟ। ପୂଜାରେ ଏହି ବୈଦିକ ମନ୍ତ୍ର ବ୍ୟବହାର କରାଯାଇଥାଏ। ଏଥିରେ ଗଣେଶଙ୍କୁ ସର୍ବାଗ୍ରେ ରଖାଯାଇଛି।

ଗଣେ ନାରାୟଣେ ରୁଦ୍ରେ ଅମ୍ବିକେ ଭାସ୍କରେ ତଥା
ଭିନ୍ନ ଭିନ୍ନ ନକର୍ତ୍ତବ୍ୟଂ ପଞ୍ଚଦେବ ନମୋସ୍ତୁତେ॥

ସ୍କନ୍ଦ ପୁରାଣରେ ବର୍ଣ୍ଣନା କରାଯାଇଛି ଯେ, ମା' ପାର୍ବତୀ ନିଜ ଶରୀରର ମଳିରୁ ଏକ ଶିଶୁ ମୂର୍ତ୍ତି ତିଆରି କରି ତାକୁ ଜୀବନ୍ୟାସ ଦେଇ ପୁତ୍ର ଭାବରେ ଗ୍ରହଣ କଲେ। ବ୍ରହ୍ମବୈବର୍ତ୍ତ ପୁରାଣରେ କୁହାଯାଇଛି ଯେ, ପାର୍ବତୀଙ୍କ ତପସ୍ୟାରେ ଗୋଲକବିହାରୀ ସ୍ୱୟଂ ପରଂବ୍ରହ୍ମ ନାରାୟଣ ଗଣପତି ରୂପେ ଆବିର୍ଭାବ ହୋଇଥିଲେ । ଏହି ବ୍ରତ ପାଳନ କରି ଅଦିତି ବାମନଙ୍କୁ, ଦେବହୂତି କପିଳଙ୍କୁ, ଅଙ୍ଗିରାଙ୍କ ପତ୍ନୀ ବୃହସ୍ପତିଙ୍କୁ ପୁତ୍ରରୂପେ ପାଇଥିଲେ। ବେଦ, ଶାସ୍ତ୍ର ଓ ପୁରାଣ ଆଦି ବ୍ୟାସଦେବଙ୍କ ମୁଖନିଃସୃତ ବାଣୀକୁ ଶ୍ରୀଗଣେଶ ନିଜେ ଲେଖି ବ୍ୟାସଦେବଙ୍କୁ ସାହାଯ୍ୟ କରିଥିଲେ ।

**ଗଣେଶ ବନ୍ଦନା**

କରୀ ମସ୍ତକେ କପୋଳେ ଶୋହେ ଚିତା,
ଖଡ଼ଗ ଡ଼ମ୍ବରୁ ଶୋହେ ବ୍ରହ୍ମବେତ୍ତା ।
ଜ୍ଞାନ ଗୁରୁ ବୋଲି ଦେବେ ଦେଲେ ବର,
ନମୋ ନମୋ ଗଣନାଥ ବିଦ୍ୟାବର ।୧।





ଘଣ୍ଟି ଘର୍ଘର ଶବଦ ରୁଣୁଝୁଣୁ,
ନଟ ତ୍ରିଭଙ୍ଗୀ ଶୋଭିତ ଦେବଗଣ ।
ଚତୁର ପଣେ ଅମୃତ ଲଡୁ କର,
ନମୋ ନମୋ ଗଣନାଥ ବିଦ୍ୟାବର ।୨।
ଛତ୍ରୀ ବୀରପଣେ ବାନା ଉଡ଼େ ନେତ,
ଜଟା କଉପୀନ ବେଶ ଚଣ୍ଡୀସୁତ ।
ଝଟକନ୍ତି ସେ କୁଣ୍ଡଳ ହୀରାସାର,
ନମୋ ନମୋ ଗଣନାଥ ବିଦ୍ୟାବର ।୩ ।
ନୃତ୍ୟ ଦେଖିଣ ଦେବତା ଭୋଳ ଗଲେ,
ଟଙ୍କଧର ତୋଷେ କରେ ଶୂଳ ଦେଲେ ।
ଠଣ ସୁନ୍ଦର ଆକୃତି ରୂପ ତୋର,
ନମୋ ନମୋ ଗଣନାଥ ବିଦ୍ୟାବର ।୪।
ଡ଼ାକି ଡ଼ମ୍ବରୁ ବଜାନ୍ତି ଗଣେଶ୍ୱର,
ଢଳି ଢଳି ନୃତ୍ୟ କର ବିଦ୍ୟାବର ।
ଅଣ ଅରୂପ ସ୍ୱରୂପ ଅଟେ ତୋର,
ନମୋ ନମୋ ଗଣନାଥ ବିଦ୍ୟାବର । ୫ ।
ତିନି ଭୁବନେ ଗଣେଶ ଅଗ୍ରେ ପୂଜା,
ଥୋର ହସ୍ତରେ ଭକ୍ଷିଲ ଦେବରାଜା ।
ଦନ୍ତ ଭଗ୍ନ ହସ୍ତୀ ଖଣ୍ଡ କରେ ତୋର,
ନମୋ ନମୋ ଗଣନାଥ ବିଦ୍ୟାବର ।୬ ।
ଧନ୍ୟ ଲିଖନ ପଠନ କେହ୍ନୁ କହେ,
ନୃତ୍ୟ ଗୀତରେ ନାରଦ ସମ ନୋହେ ।
ପାଠେ ସମ ତୋତେ ନୋହେ ବେଦବର,
ନମୋ ନମୋ ଗଣନାଥ ବିଦ୍ୟାବର ।୭ ।
ପାଶ ଅଙ୍କୁଶ ତ୍ରିଶୂଳ ଶୋହେ କର,
ବାହେ ବାହୁଟି କଙ୍କଣ ହୀରାସାର ।
ଭଲା ନାମ ଦେଲେ ମାଏ ଗଣେଶ୍ୱର,
ନମୋ ନମୋ ଗଣନାଥ ବିଦ୍ୟାବର । ୮ ।
ପନ୍ନଗ କୁଣ୍ଡଳ ମାଳଚୂଳଧାରୀ,
ଜପ ତ୍ରିଭଙ୍ଗ ଏକାଙ୍ଗେ ଠୁଳ କରି ।
ରଙ୍ଗେ ଇନ୍ଦୁରର ପୃଷ୍ଠେ ବିଜେ କର,
ନମୋ ନମୋ ଗଣନାଥ ବିଦ୍ୟାବର । ୯ ।
ଲିହି କାଠିଏ ପଢିଲ ଗଣେଶ୍ୱର,
ବେଦ ବିଦ୍ୟାରେ ଜିଣିଲେ ତିନିପୁର ।
ସୃଷ୍ଟି ପତନ ଖଣ୍ଡିଲ ଅନ୍ତକର,
ନମୋ ନମୋ ଗଣନାଥ ବିଦ୍ୟାବର ।୧୦।
ଶିରେ ସପ୍ତଶାଖା ରୁଚିର ଯେ ଦିଶେ,
ଶଶୀ ଉଇଁଲା ଜଳଦ ମେଘ କିସେ ।
ହୃଦେ ପଦକ ରୁଦ୍ରାକ୍ଷ ମାଳା ତୋର,
ନମୋ ନମୋ ଗଣନାଥ ବିଦ୍ୟାବର ।୧୧।
ଛାଲ କଉପୀନ ବ୍ୟାସ ବେଶ ହୋଇ
ଛାର ତ୍ରିଦଶ ମୋହିଲୁ ଦେବ ତୁହି ।
ଛାର ମତି ଦିବାକର ଦୁଃଖ ହର,
ନମୋ ନମୋ ଗଣନାଥ ବିଦ୍ୟାବର ।୧୨।

ଏ.ଏଲ୍–୫୩, ବୀର ସୁରେନ୍ଦ୍ର ସାଏ ନଗର
ଭୁବନେଶ୍ୱର



# ଏକ ନିଆରା ପରବ୍ : ନୂଆଁଖାଇ

ଡକ୍ଟର ଶରତ ଚନ୍ଦ୍ର ପରିଡ଼ା

ନୂଆଁଖାଇ କେତେ ନୂଆ ସପନ ଓ କେତେ ନୂଆ ଆଶା ନେଇ ବରଷକେ ଥରେ ଆସେ । ଲୋକମାନେ ହସିଖେଳି ବଡ଼ ଜାକଜମକରେ ଏହି ଦିନଟିକୁ ବିତାଇ ଦିଅନ୍ତି । ଭାରତୀୟ ଧର୍ମ, ସଂସ୍କୃତି ଓ ପରମ୍ପରା ବଡ଼ ବିଚିତ୍ର । ତା'ର ବହୁ ପର୍ବପର୍ବାଣି ମଧ୍ୟରୁ 'ଶସ୍ୟପୂଜା', 'ନୂତନ ଅନ୍ନପୂଜା' ତଥା 'ନବାନ୍ନ ଭକ୍ଷଣ' ବିଧି ବହୁ ପ୍ରାଚୀନତମ । କେଉଁ ଆବହମାନ କାଳରୁ ଏହା ପ୍ରଚଳିତ । ଏହା ଶାସ୍ତ୍ରରେ ଅନୁମୋଦିତ । ବିଶେଷତଃ ଏହା ଏକ ଆଦିବାସୀ ବହୁଳ ଅଞ୍ଚଳର ତିହାର (ପର୍ବ) । ପ୍ରାଣୀର ପ୍ରାଣଧାରଣ ନିମନ୍ତେ ଅନ୍ନ ଅନିବାର୍ଯ୍ୟ । ପ୍ରାଣୀ ଶସ୍ୟ ଉପରେ ନିର୍ଭରଶୀଳ । ଶସ୍ୟ ପ୍ରକୃତିର ବରଦାନ । ପ୍ରକୃତିର ଅଧିଷ୍ଠାତା ହେଲେ ପରଂବ୍ରହ୍ମ । ତେଣୁ ମାନବ ସଭ୍ୟତାର ସୃଜନ କାଳରୁ ସୃଷ୍ଟିକର୍ତ୍ତାଙ୍କ ପ୍ରତି ମଣିଷ ମନରେ ଗଭୀର କୃତଜ୍ଞତା ପ୍ରକାଶ ପାଇଥିଲା । ତେଣୁ ଖାଦ୍ୟ ସମ୍ଭାରର ସୃଷ୍ଟିକାରିଣୀ ମାଟି ମା'ପ୍ରତି କୃତଜ୍ଞତା ପ୍ରକାଶ କରିବାର ପର୍ବ ହେଉଛି ନୂଆଖାଇ । ଅତଏବ ନୂଆଁଖାଇ ଏକ ପର୍ବ ମାତ୍ର ନୁହେଁ, ଏକ ଅନନ୍ୟ ଭଗବତ୍ ଚେତନା । ଉତ୍କଳୀୟ ଜନମାନସରେ ବହୁ ପ୍ରାଚୀନ କାଳରୁ ନବାନ୍ନ ଭକ୍ଷଣ ପର୍ବ ଏକ ବାର୍ଷିକ ଗଣପର୍ବର ମାନ୍ୟତା ଲାଭ କରି ଆସିଛି ।

**ନୂଆଁଖାଇର ଭୌଗୋଳିକ ପରିସର:** ପୃଥିବୀର ବିଭିନ୍ନ ସ୍ଥାନରେ ନବାନ୍ନ ପୂଜା ପର୍ବ ପାଳିତ ହେଲେ ମଧ୍ୟ ଭାରତରେ ଏହାର ବିଶେଷ ମହତ୍ତ୍ୱ ରହିଛି । ବିଶେଷ କରି ମଧ୍ୟ ଓ ପୂର୍ବ ଭାରତର ଆଦିବାସୀମାନଙ୍କ ମଧ୍ୟରେ ଏହା ବିଶେଷ ଗୁରୁତ୍ୱ ବହନ କରେ । ବିଭିନ୍ନ ସ୍ଥାନରେ ଏହି ପର୍ବ ଭିନ୍ନ ଭିନ୍ନ ରୀତିରେ ପାଳିତ ହେଲେ ମଧ ଲକ୍ଷ୍ୟ ଗୋଟିଏ । ପଶ୍ଚିମ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ଏହି ଅଞ୍ଚଳରେ ବାସ କରୁଥିବା ଅଧିବାସୀମାନଙ୍କ ଜନଜୀବନର ଛାପ ବାରି ହୋଇ ପଡ଼େ । ଓଡ଼ିଶାର ପ୍ରାୟ ଜିଲ୍ଲା ଯଥା–କଳାହାଣ୍ଡି, ସମ୍ବଲପୁର, ବଲାଙ୍ଗିର, ବରଗଡ଼, ସୁନ୍ଦରଗଡ଼, ଝାରସୁଗୁଡ଼ା, ସୋନପୁର, ବୌଦ ଓ ନୂଆପଡ଼ା ଜିଲ୍ଲାଗୁଡିକ ଏହି ଗଡ଼ଜାତ ଅନ୍ତର୍ଗତ । ଓଡ଼ିଶାର ପୂର୍ବାଞ୍ଚଳରେ ଲୋକେ ସେମାନଙ୍କର ପ୍ରଥମ ଅନ୍ନଶସ୍ୟକୁ ଭଗବାନଙ୍କ ନିକଟରେ ସମର୍ପଣ ପୂର୍ବକ ଭଗବତ ପାରାୟଣ କରି ପ୍ରସାଦ ରୂପରେ ସେବନ କରିଥା'ନ୍ତି । ସେମାନେ ବ୍ୟକ୍ତି, ପରିବାର ଅଥବା ଗୋଷ୍ଠୀଗତ ଭାବରେ ଶୁଭଦିନ ନିର୍ଣ୍ଣୟ କରି ବିଭିନ୍ନ ତିଥିରେ ପାଳନ କରିଥା'ନ୍ତି । ପଶ୍ଚିମ ଓଡ଼ିଶାରେ କିନ୍ତୁ ଗୋଟିଏ ନିର୍ଦ୍ଦିଷ୍ଟ ତିଥି(ଲଗନ)ରେ ନୂଆଁଖାଇ ପାଳିତ ହୋଇଥାଏ ।

**ନୂଆଁଖାଇର ସ୍ଥାନ ବଦଳିଲେ ନାମ ବଦଳେ :** ଭାରତର ବିଭିନ୍ନ ସ୍ଥାନରେ ବିଭିନ୍ନ ସମାଜରେ ବିଭିନ୍ନ ଧର୍ମରେ ବିଭିନ୍ନ ସମୟରେ ଏହି ପର୍ବ ପାଳନ କରାଯାଏ । ନୂଆଖାଇର ଆଭିମୁଖ୍ୟ ସମାନ ହେଲେ ମଧ୍ୟ ବିଭିନ୍ନ ସ୍ଥାନରେ ଏହାର ନାଁ ପୃଥକ୍ ପୃଥକ୍ । ନୂଆଖାଇ ପର୍ବ କୌଣସି ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ବା ଜାତି ମଧ୍ୟରେ ସୀମିତ ନୁହେଁ । ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ବସବାସ କରୁଥିବା ଭିନ୍ନ ଭିନ୍ନ ଜନଜାତି ପାରମ୍ପରିକ ମର୍ଯ୍ୟାଦାରେ ଏହି ପର୍ବ ପାଳନ କରିଆସୁଛନ୍ତି । ଆଦିବାସୀମାନଙ୍କ ସହିତ ଅନ୍ୟମାନେ ମଧ୍ୟ ଏହାକୁ ବଡ଼ ଧୁମ୍‌ଧାମରେ ପାଳନ କରିଥା'ନ୍ତି । ନବାନ୍ନ ଯେ କେବଳ ସମଗ୍ର ପଶ୍ଚିମ ଓଡ଼ିଶାରେ ପାଳିତ ହୁଏ ତାହା ନୁହେଁ, ବରଂ ବସ୍ତର ଛତିଶଗଡ, ସାରଙ୍ଗଗଡ଼, ବୈସନା, ସରାଇପାଲି, ଫୁଲଝର ଓ ରାୟଗଡ଼ ପ୍ରଭୃତି ଅଞ୍ଚଳରେ

ଓଡ଼ିଆ ଲୋକଙ୍କ ମଧ୍ୟରେ ମହାସମାରୋହରେ ଏହା ପାଳନ କରାଯାଏ । ଆଦିବାସୀମାନେ ନୂଆଖାଇ ପର୍ବ ବିଭିନ୍ନ ନାମରେ ପାଳୁଥିବାର ଦେଖାଯାଏ । ଦୁଧଖଡ଼ିଆ ଏବଂ ପାହାଡ଼ି ଖଡ଼ିଆ ସମାଜରେ ଏହି ପର୍ବକୁ ଜେଠ ନୱାଖିଆ କୁହାଯାଇଥାଏ । ଓରାମମାନଙ୍କ ମଧ୍ୟରେଏହି ପର୍ବ ନୱାଖାନି ନାମରେ ପରିଚିତ । ମୁଣ୍ଡା ସମାଜରେ ଜମନୱା, ସାନ୍ତାଳି ସମାଜରେ ଜାନଥର, ବଇହାରହୋରୋ, ନୱାଇ ଓ ବରଜିଆ ସମାଜରେ ନୱା ଏବଂ ଜମନୱା ନାମରେ ପରିଚିତ ନୂଆଖାଇ ପର୍ବର ବ୍ୟାପକତାର ସୂଚନା ଦିଏ । ବସ୍ତର ଓ ଓଡ଼ିଶାର ପରଜାମାନେ ଏହି ପର୍ବକୁ ନୱାଖାନି ନାମରେ ପାଳନ କରିଥା'ନ୍ତି । ଏହା ବ୍ୟତୀତ କୋରୱାମାନେ ଏହି ପର୍ବକୁ ଧାନ ନୱାଖାନି, ବିରହର ସମାଜରେ ନୱାଜୋମ ଓ ମୁଣ୍ଡା ମସାଜରେ ଏହି ପର୍ବକୁ ନୱାଜମ କୁହାଯାଇଥାଏ । ଛୋଟନାଗପୁର ଅଞ୍ଚଳରେ ବାସବାସ କରୁଥିବା ଅସୁର ଗୋଷ୍ଠୀର ଏକ ଉପଗୋଷ୍ଠୀ ଭାବେ ପରିଚିତ ବିରଝିଆ ସମାଜରେ ନଓଆ କୁହାଯାଇଥାଏ । ତ୍ରିପୁରାର ପାହାଡ଼ି ଇଲାକାର ଆଦିବାସୀମାନେ ଏହାକୁ ମିକତଲ ବୋଲି କହିଥାନ୍ତି । ଏଠାରେ 'ମି'ର ଅର୍ଥ ହେଲା ଶସ୍ୟ ବା ଧାନ ଓ 'କତଲ'ର ଅର୍ଥ ହେଲା ନୂଆ । ଓଡ଼ିଶାର ପୂର୍ବ ଇଲାକା ଓ ବଙ୍ଗଳାରେ ଏହାକୁ ନବାନ୍ନ କୁହାଯାଇଥାଏ । ଆସାମର ଭୋଗୋଲି ବିହୁ ବା କେରଳର ଓନାମ ସହିତ ଏହାର ସାମଞ୍ଜସ୍ୟ ରହିଛି ।

**ନୂଆଁଖାଇ ଏକ ଜାତୀୟ ଗଣପର୍ବ :** ନୂଆଁଖାଇ ଓଡ଼ିଶାର ଜନଜୀବନ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଗାଁଠାରୁ ଆରମ୍ଭ କରି ପ୍ରମୁଖ ସହର ସବୁଠାରେ ତାହା ବଡ଼ ଆନନ୍ଦ, ଉଲ୍ଲାସ, ନିଷ୍ଠା ଓ ସ୍ଫୁର୍ତ୍ତିର ସହ ପାଳନ କରାଯାଇଥାଏ । ପଶ୍ଚିମ ଓଡ଼ିଶା ସଂସ୍କୃତି ଓ ପରମ୍ପରାର ନୂଆଁଖାଇ ଏକ ନିଆରା ପରିଚୟ । ଏହାର ଅନୁଭବ ଓ ଉପଲବ୍ଧି ସ୍ୱତନ୍ତ୍ର । ଏହି ପର୍ବରେ ପଶ୍ଚିମ ଓଡ଼ିଶା ଝୁମି ଉଠେ । ପରିବାରର ସଦସ୍ୟ ଆମେରିକାରେ ଥା'ନ୍ତୁ ବା ଦିଲ୍ଲୀରେ ଥା'ନ୍ତୁ, ବଡ଼ ସରାଗରେ ଦୂରଦୂରାନ୍ତରୁ ନିଜ ଭିଟାମାଟିକୁ ଫେରନ୍ତି । ନୂଆଁଖାଇରେ ନିଜକୁ ସାମିଲ କରିଥା'ନ୍ତି । ପରିବାରର ସଦସ୍ୟଙ୍କ ସଂଖ୍ୟା ଶହେ ହେଲେ ଏକାଠି ହୋଇ ନୂଆଁଖାଇରେ ଭାଗ ନିଅନ୍ତି । ତେଣୁ ନୂଆଁଖାଇ ହେଉଛି ମିଳନ ପର୍ବର ଏକ ମଧୁର ମୁହୂର୍ତ୍ତ । ଭାଇ ଭାଇ, ସ୍ୱାମୀ ସ୍ତ୍ରୀ, ବନ୍ଧୁବାନ୍ଧବ, ଦେଶୀ ପ୍ରତିବେଶୀ, ମୂଲିଆ ମାଲିକ, ରୋଗୀ, ଭୋଗୀ ଧନୀଗରିବ ନିର୍ବିଶେଷରେ କିଛି ଭେଦ ନରଖି ଆବାଳବୃଦ୍ଧବନିତା ଏହିପର୍ବ ପାଳନରେ ନିଜକୁ ହଜାଇ ଦେଇଥା'ନ୍ତି । ଏମାନଙ୍କ ମଧ୍ୟରେ ଯଦି କିଛି ମନୋମାଳିନ୍ୟ ଅବୁଝାମଣା ଥାଏ ତେବେ ତାହା ନୂଆଁଖାଇ ପୂର୍ବରୁ ସମାଧାନ ହୋଇଯାଇଥାଏ । ଆଦିବାସୀ, ହରିଜନ, ବ୍ରାହ୍ମଣ,ଉଚ୍ଚ ନୀଚ ପ୍ରଭୃତି ଜାତି ସମ୍ପ୍ରଦାୟକୁ ଭୁଲି ସମସ୍ତେ ମନ ଓ ହୃଦୟର ମିଳନ ପାଇଁ ଚାତକ ପରି ଅପେକ୍ଷା କରି ରହିଥା'ନ୍ତି । ନୂଆଁଖାଇ ସମ୍ପ୍ରତି ଓଡ଼ିଶାରେ ଧୁମ୍‌ଧାମ୍‌ରେ ପାଳନ କରାଯାଇଥାଏ । ନୂଆଖାଇ ପର୍ବ ଭାରତବର୍ଷରେ ସାଂସ୍କୃତିକ ସମନ୍ୱୟର ଏକ କ୍ଷେତ୍ର ପ୍ରସ୍ତୁତ କରେ ବୋଲି କୁହାଯାଇପାରେ । ନୂଆଁଖାଇ ଆଜି ଏକ ଜାତୀୟ ଗଣପର୍ବ ରୂପରେ ପାଳିତ ହୋଇ ଆସୁଛି । ପୂର୍ବ ଓଡ଼ିଶାର ରଜପର୍ବ ପରି ଏହା ବ୍ୟକ୍ତିଗତ, ପାରିବାରିକ ତଥା ସାମାଜିକ ଜୀବନରେ ନୂତନ ଭାବ ଉଦ୍ରେକ କରେ । ଏହା ନୂତନ ଚିନ୍ତା ଓ ନୂତନ ଚେତନାରେ ମନପ୍ରାଣକୁ ଊର୍ଦ୍ଧ୍ୱ କରେ । ଆଉ ହୃଦୟରେ ଭରିଦିଏ ନୂତନ ରଙ୍ଗ । ତନୁମନ ଶିହରିତ ହୋଇଉଠେ ।

**ଜନ୍ମଜାତକରେ ନୂଆଁଖାଇ ଏକ କୃଷିଭିତ୍ତିକ ପର୍ବ :** କୃଷକ ଓ କୃଷି ସମ୍ପ୍ରଦାୟ ଲୋକମାନଙ୍କ ପାଇଁ ନୂଆଖାଇର ଯଥେଷ୍ଟ ତାତ୍ପର୍ଯ୍ୟ ରହିଛି । ଏହିଦିନ କୃଷକବନ୍ଧୁ କୃଷିକ୍ଷେତ୍ରକୁ ଖିର ଓ ନୂଆ ଅରୁଆ ଚାଉଳ ସହିତ ଧୂପଦୀପ ସମର୍ପଣ ପୂର୍ବକ ଅଧିକ ଅମଳ କାମନାରେ ପୂଜାର୍ଚ୍ଚନା କରିଥା'ନ୍ତି । ନୂଆଖାଇ ପ୍ରଥମ ଶସ୍ୟ ଅମଳର ପର୍ବ । କାଳିଦାସଙ୍କ ବର୍ଣ୍ଣନାରେ ଶକୁନ୍ତଳା ଲଗେଇଥିବା ଫୁଲଗଛରେ ଯେଉଁଦିନ ପ୍ରଥମ ଫୁଲ ଫୁଟେ ଶକୁନ୍ତଳା ସେହି ଦିନଟିକୁ ସେ ଗୋଟିଏ ଉତ୍ସବ ରୂପେ ପାଳନ କରିଥାନ୍ତି । ପ୍ରଥମ ଶସ୍ୟ ଉତ୍ପାଦନରେ ଏହି ଭାବନା ହିଁ ଚାଷୀମାନଙ୍କ ମନରେ ଜାତ ହୋଇଥାଏ । ଖରିଫ ଋତୁର ପ୍ରଥମ ନୂଆଧାନକୁ ସ୍ୱାଗତ କରିବା ପାଇଁ ଏହି ପର୍ବ ଆୟୋଜିତ । ଅନ୍ୟ ଭାଷାରେ କହିବାକୁ ହେଲେ ଅମଳ ହୋଇଥିବା ଧାନ ଉପଲକ୍ଷେ ଏହା ଚାଷୀମାନଙ୍କ ଆନନ୍ଦ ମୁଖରିତ ଶୋଭାଯାତ୍ରା ।

ଏହି ପର୍ବର ଶୁଭାରମ୍ଭ କେବେଠୁଁ ଆରମ୍ଭ ହେଲା ତାହା ନିର୍ଦ୍ଦିଷ୍ଟ ଭାବରେ କହିହେବ ନାହିଁ । ଗବେଷକମାନେ କହନ୍ତି ଏହା ପ୍ରାକ୍ ବୈଦିକ କାଳରୁ ପବିତ୍ର ଭାରତବର୍ଷରେ ପ୍ରଚଳିତ ।





ସେ ଯୁଗର ଋଷିମାନେ ଯଜ୍ଞ କରୁଥିଲେ । କୃଷିଭିତ୍ତିକ ସମାଜରେ ପାଞ୍ଚଟି ମୁଖ୍ୟ କୃଷିକାର୍ଯ୍ୟକୁ ପାଞ୍ଚଟି ଯଜ୍ଞ ସହିତ ତୁଳନା କରାଯାଇଛି । ପ୍ରଥମଟି ହେଉଛି ସୀତଯଜ୍ଞ । ଏହାର ଅର୍ଥ ଜମି ଚାଷ ବା ହଳଦ୍ୱାରା କର୍ଷଣ କରିବା କାର୍ଯ୍ୟ । ଦ୍ୱିତୀୟଟି ହେଉଛି ପ୍ରବପନ ଯଜ୍ଞ । ଏହାର ଅର୍ଥ ବିହନ ବା ମଞ୍ଜିବୁଣିବା କାର୍ଯ୍ୟ । ତୃତୀୟଟି ହେଉଛି ପ୍ରଲବନ ଯଜ୍ଞ । ଏହାର ଅର୍ଥ ପ୍ରଥମ ଶସ୍ୟ କାଟିବା କାର୍ଯ୍ୟ । ଚତୁର୍ଥଟି ହେଉଛି ଖଳାଯଜ୍ଞ । ଏହାର ଅର୍ଥ ହେଉଛି ଶସ୍ୟ ଅମଳ କାର୍ଯ୍ୟ । ପଞ୍ଚମଟି ହେଉଛି ପର୍ଯ୍ୟାୟଣ ଯଜ୍ଞ । ଏହାର ଅର୍ଥ ଶସ୍ୟ ସଂରକ୍ଷଣ କାର୍ଯ୍ୟ । ଏହି ଦୃଷ୍ଟିରୁ ତୃତୀୟ କୃଷିକାର୍ଯ୍ୟ ପ୍ରଲମ୍ବନ ବା ପ୍ରଥମ ଶସ୍ୟ କାଟିବାରୁ ନୂଆଖାଇର ସୃଷ୍ଟି । ଅନ୍ନବ୍ରହ୍ମଙ୍କୁ ପରଂବ୍ରହ୍ମଙ୍କ ଉଦ୍ଦେଶ୍ୟରେ ସମର୍ପଣର ଅନ୍ୟ ନାମ ଅନ୍ନଯଜ୍ଞ । ବୈଦିକ ମାନ୍ୟତାରେ ନବଜାତ ଶସ୍ୟଦ୍ୱାରା ସମ୍ପାଦିତ ଯଜ୍ଞର ନାମ ଆଗ୍ରୟଣେଷ୍ଟି । ଉଲ୍ଲେଖଯୋଗ୍ୟ ଯେ ଏହି ଆଗ୍ରୟଣେଷ୍ଟି ବା ନବାନ୍ନ ଭକ୍ଷଣ ଯଜ୍ଞ ବର୍ଷା, ଶରତ ଓ ବସନ୍ତ ଋତୁରେ ତିନି ଥର ପାଳନ କରିବାର ବିଧି ରହିଛି । ବର୍ଷାଋତୁରେ ଶ୍ୟାମକ ବା ଶୁଆଁ ଓ କୋଳିଆ ବା ଷାଠିଆ ଧାନରୁ ପ୍ରସ୍ତୁତ ଯେଉଁ ନବାନ୍ନ ଭକ୍ଷଣ ଯଜ୍ଞ ହୁଏ ତାହାକୁ ଶ୍ୟାମକାଗ୍ରୟଣେଷ୍ଟି ଶରତ ଋତୁରେ ଶାରଦଧାନ ଓ ବିରିରୁ ପ୍ରସ୍ତୁତ ଅନ୍ନରେ ସମ୍ପାଦିତ ଦ୍ୱିତୀୟ ନବାନ୍ନଭକ୍ଷଣକୁ ବ୍ରୀହ୍ୟାଗ୍ରୟଣେଷ୍ଟି ଏବଂ ବସନ୍ତ ଋତୁରେ ଯବ ଓ ଗହମର ଛତୁଆରେ ସମ୍ପାଦିତ ତୃତୀୟ ନବାନ୍ନଭକ୍ଷଣକୁ ଯବାଗ୍ରୟଣେଷ୍ଟି ନାମରେ ନାମିତ କରାଯାଇଛି । ଏହି ତିନୋଟି ଯଜ୍ଞ ମଧ୍ୟରୁ ଶ୍ୟାମକାଗ୍ରୟଣେଷ୍ଟି ସର୍ବପ୍ରାଚୀନ ତଥା ସାର୍ବଜନୀନ । ବର୍ଷା ଋତୁରେ ଶୁଆଁ ଜାତୀୟ ଶସ୍ୟ ଓ ଷାଠିଆ ଧାନ ପ୍ରଚୁର ପରିମାଣରେ ଅମଳ ହୋଇଥାଏ । ଆମର ପୂର୍ବସୂରୀମାନେ ଏହି ପ୍ରଥମ ଉତ୍ପାଦିତ ଶସ୍ୟରେ ପ୍ରସ୍ତୁତ ଅନ୍ନ ଓ ପିଠାପଣା ଦେବତା ଓ ପିତୃପୁରୁଷଙ୍କୁ ଅର୍ପଣ କରିବା ପରେ ନିଜେ ସେବନ କରିବାର ବିଧି ହିଁ ନୂଆଁଖାଇ ନାମରେ ଖ୍ୟାତ ।

ନୂଆଁଖାଇର ପ୍ରଥମ ଦିନ ଇତିହାସରେ ଧରା ନ ଦେଲେ ମଧ୍ୟ ତେତେକ ଏହା ଦ୍ୱାଦଶ ଶତାବ୍ଦୀର ବୋଲି କୁହନ୍ତି । ପ୍ରଥମ ଚୌହାନ ରାଜା ରାମଇ ଦେଓ ପାଟଣାରେ ରାଜ୍ୟ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ ଆରମ୍ଭ କରିଥିଲେ । ଏହା ବର୍ତ୍ତମାନ ବଲାଙ୍ଗୀର ଜିଲ୍ଲାର ଏକ ଅଂଶ । ତାଙ୍କର ଉଦ୍ୟମ ଥିଲା ଏକ ସ୍ୱାଧୀନ ରାଜ୍ୟ ଗଠନ କରିବାକୁ । ଲୋକେ ସେତେବେଳେ କମ୍ ଖାଦ୍ୟ ସଂଗ୍ରହ କରୁଥିଲେ ଓ ତା' ଉପରେ ନିର୍ଭର କରୁଥିଲେ । ଏହାଦ୍ୱାରା ରାଜ୍ୟକୁ ଏକ ବଳକା ରାଜ୍ୟ ରୂପେ ଗଢିହେବ ନାହିଁ ବୋଲି ସେ ଅନୁଭବ କଲେ । ଦେଶର ଅର୍ଥନୈତିକ ସମୃଦ୍ଧି ଓ ସ୍ଥିତି ପାଇଁ କୃଷି ହେଉଛି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ତେଣୁ କୃଷି ଉପରେ ସମସ୍ତଙ୍କର ଧ୍ୟାନକୁ କେନ୍ଦ୍ରୀଭୂତ କରିବା ଉଦ୍ଦେଶ୍ୟରେ ସେ ଅଧିକରୁ ଅଧିକ ଶସ୍ୟ ଉତ୍ପନ୍ନ କରିବା ଉପରେ ସର୍ବାଧିକ ଗୁରୁତ୍ୱ ପ୍ରଦାନ କଲେ । ସେ ସମ୍ବଲପୁରରେ ଏହି କଥା ଓ ପ୍ରଥାର ଶୁଭାରମ୍ଭ କରିଥିଲେ । ସେ ମର୍ମେ ମର୍ମେ ଅନୁଭବ କରିଥିଲେ ଯେ ଜୀବନର ଶୈଳୀରେ ଉନ୍ନତି ଆଣିବାକୁ ହେଲେ କୃଷିଶୈଳୀର ପରିବର୍ତ୍ତନ ଲୋଡ଼ା । ଅତଏବ ନୂଆଁଖାଇ ପ୍ରାଥମିକ ଅବସ୍ଥାରେ ଘରେ ଘରେ ପ୍ରଚଳିତ ଥିଲା । ପରେ ରାଜାରାଜୁଡ଼ା ଓ ଜମିଦାରମାନଙ୍କ ନିର୍ଦ୍ଦେଶ ଓ ପୃଷ୍ଠପୋଷକତାରେ ଏହା ଏକ ସାମାଜିକ ଓ ସାଂସ୍କୃତିକ ବିଶାଳ ପର୍ବର ରୂପ ଧାରଣ କରିଥିଲା ବୋଲି ପରମ୍ପରା ଅଛି ।

**ବ୍ରହ୍ମଙ୍କ ନିକଟରେ ପ୍ରଥମ ଅନ୍ନ ନିବେଦନ କରି ସେବନ କରିବା ହିଁ ନୂଆଁଖାଇ :** କୃଷିର ମୁଖ୍ୟ ଉତ୍ପାଦନ ହେଉଛି ଅନ୍ନ । ଜୀବନରେ ଅନ୍ନର ଗୁରୁତ୍ୱ ଅବର୍ଣ୍ଣନୀୟ । ତୈତ୍ତିରୀୟୋପନିଷଦ୍‌ରେ କୁହାଯାଇଛି, 'ଅନ୍ନଂ ବ୍ରହ୍ମେତି ବ୍ୟଜାନାତ୍, ଅନ୍ନାଦେବ ଖଳ୍ୱମାନି ଭୂତାନି ଜାୟନ୍ତେ, ଅନ୍ନେନ ଜାତାନି ଜୀବନ୍ତି, ଅନ୍ନଂ ପ୍ରୟନ୍ତ୍ୟଭିସଂବିଶନ୍ତୀତି ।' ଅର୍ଥାତ୍ ଅନ୍ନର ଅନ୍ୟ ନାମ ହେଉଛି ବ୍ରହ୍ମ । ପ୍ରତ୍ୟେକେ ଏଇ ଅନ୍ନରୁ ଜାତ ହୁଅନ୍ତି । ଅନ୍ନ ଯୋଗୁଁ ଜୀବନ ଧାରଣ କରନ୍ତି । ମୃତ୍ୟୁ ପରେ ଅନ୍ୟମାନଙ୍କ ପାଇଁ ଅନ୍ନ ହୋଇଯାନ୍ତି । ତେଣୁ ଜୀବନର ପ୍ରତ୍ୟେକ ପର୍ଯ୍ୟାୟରେ ଅନ୍ନର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଉକ୍ତ ଉପନିଷଦ୍‌ରେ ଅନ୍ୟତ୍ର ଭଗବାନ୍ ନିଜେ କହିଛନ୍ତି : ମୁଁ ହିଁ ଅନ୍ନ । ସେହି ଅନ୍ନର ମୁଁ ହିଁ ଉପଭୋକ୍ତା । ଯିଏ ନିଜର ଅନ୍ନ ଗ୍ରହଣ କରିଥାଏ, ମୁଁ ମଧ୍ୟ ସେହି ଅନ୍ନ ଗ୍ରହଣ କରିଥାଏ । ତେଣୁ ଖୁବ୍ ପ୍ରାଚୀନ କାଳରୁ ଅନ୍ନକୁ ହିଁ ଭଗବାନଙ୍କର ଦାନ ଓ ତାଙ୍କର ସ୍ୱରୂପ ବୋଲି କଳ୍ପନା କରାଯାଇଛି । ଏହା ଜୀବନ ଧାରଣର ମାଧ୍ୟମ, ଆନନ୍ଦର ଉତ୍ସ ଏବଂ ଆତ୍ମାର ଅଙ୍ଗ । ଅନ୍ନ ନ ଥିଲେ ପ୍ରାଣ ନାହିଁ । ତେଣୁ କୁହାଯାଇଛି, 'ଅନ୍ନ ବିହୁନେ ହଂସହାନି । ଯୋଗ ସାଧିବ କାହା ଘେନି ।' ଶରୀର ଏକ ଅନ୍ନମୟ କୋଷ ।।





ଅନ୍ନରୁ ମନର ସୃଷ୍ଟି । ଶରୀରରେ ବ୍ରହ୍ମ ଆତ୍ମା ରୂପରେ ବିଦ୍ୟମାନ । ଅନ୍ନ ଭାରତୀୟ ସଂସ୍କୃତିରେ କେବଳ ଖାଦ୍ୟପଦାର୍ଥ ନୁହେଁ । ଏହାକୁ ଉର୍ଦ୍ଧ୍ୱାୟିତ କରି ବ୍ରହ୍ମମୟ କରି ଦିଆଯାଇଛି । ସଂସାରର ନିଷ୍ଠୁର କର୍ମ ଜଞ୍ଜାଳରୁ କିଛି କ୍ଷଣ ବାହାରି ଆସି ମଣିଷ ଖୋଜେ ଭଗବତ୍ ଶକ୍ତି । ସେଥିରେ ସେ ପାଏ ପରମ ଶାନ୍ତି । ଏଇଥି ପାଇଁ ଆମର ମୁନିଋଷିମାନେ ଅନେକ ପର୍ବପର୍ବାଣି ସୃଷ୍ଟି କରି ଦେଇଯାଇଛନ୍ତି । ନବ ଅନ୍ନ ମଣିଷ ଓ ଈଶ୍ୱରଙ୍କ ମଧ୍ୟରେ ଏକ ସେତୁ ସ୍ଥାପନ କରି ତାକୁ କୃତଜ୍ଞତାରେ ବିଭୋର କରିଥାଏ । ଈଶ୍ୱରଙ୍କ ଆଶୀର୍ବାଦ ଲାଭ କରି ଆଗାମୀ କୃଷିକାର୍ଯ୍ୟ ପାଇଁ ଅଧିକ ଉତ୍ସୁକ ହୋଇଥାଏ । ଭଗବାନଙ୍କୁ ଯେଉଁ ଖାଦ୍ୟ ସମର୍ପଣ ନ କରି ଖିଆଯାଏ, ତାହା ଅସୁର ଭୋଜନ । ଥରେ ଏହି ଅନ୍ନର ଯିଏ ସ୍ରଷ୍ଟା ତାଙ୍କୁ ସ୍ମରଣ କରି ତାଙ୍କ ଅନ୍ନ ତାଙ୍କୁ ସମର୍ପଣ କରିଦେଲେ ତାହା ପ୍ରସାଦ ପାଲଟି ଯାଏ । ସେଭଳି ଶୁଦ୍ଧ ଅନ୍ନ ସେବନ କଲେ ମଣିଷ ଶୁଦ୍ଧ, ସାତ୍ତ୍ୱିକ ଓ ଶକ୍ତିଶାଳୀ ହୋଇଥାଏ ।

**କେଉଁ ଲଗନରେ ନୂଆଁଖାଇ :** ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଶସ୍ୟ ଉତ୍ପାଦନ କାଳରେ ଶୁଭଦିନ ନିର୍ଣ୍ଣୟ କରାଯାଇ ନୂଆଖାଇ ପାଳନ କରାଯାଉଛି । ପଶ୍ଚିମାଞ୍ଚଳରେ କିନ୍ତୁ ଏହା ଭାଦ୍ରବ ମାସ ଶୁକ୍ଳ ପକ୍ଷ ପଞ୍ଚମୀ(ଋଷିପଞ୍ଚମୀ) ତିଥିରେ ପାଳନ କରାଯାଉଛି । ପ୍ରଥମେ ଏହି ତିଥି ଧାର୍ଯ୍ୟ ହୋଇ ନ ଥିଲା । ସ୍ୱତନ୍ତ୍ର ରୀତି ଓ ବିଶ୍ୱାସ ଅନୁଯାୟୀ ଭାଦ୍ରବ ମାସର ଶୁକ୍ଳ ପକ୍ଷର ବିଭିନ୍ନ ତିଥିରେ ଏହା ପାଳନ କରାଯାଉଥିଲା । କାରଣ ପଶ୍ଚିମ ଓଡ଼ିଶା ଏକ ମାଳ ଅଞ୍ଚଳ । ଏଠାରେ ଧାନଚାଷ ଶୀଘ୍ର ଆରମ୍ଭ ହୋଇଥାଏ । ଛୋଟ ଧାନ ପ୍ରାୟ ଦୁଇମାସ ଅର୍ଥାତ୍ ଷାଠିଏ ଦିନରେ ପାଚି ପାକଳ ହୋଇଯାଏ । ଏହି ଋତୁରେ ଖରିଫ ଶସ୍ୟ ପାଚୁ ଥିଲା । ଶସ୍ୟ ପୂରା ପାକଳ ନହେଲେ ମଧ୍ୟ ଭାଦ୍ରବ ମାସରେ ପାଳନ କରିବାର ବହୁତ କାରଣ ଥିଲା । ଶସ୍ୟ ପାକଳ ହୋଇ ଖାଇବା ଯୋଗ୍ୟ ହୋଇଗଲେ କେହି ପକ୍ଷୀ ଖୁମ୍ପି ଦେଇଥା'ନ୍ତି ବା ପଶୁ ଖାଇ ଯାଇଥା'ନ୍ତି । ଶସ୍ୟ ଏହିପରି ଅଇଁଠା ହୋଇ ଯିବାର ସମ୍ଭାବନା ଥିବାରୁ ପ୍ରଥମେ ଭୂଦେବୀ ମାଟି ମା'କୁ ଅର୍ପଣ କରାଯାଏ । ଅନ୍ୟ ଏକ ଯୁକ୍ତି ହୋଇପାରେ ଯେ ଭାରତରେ ମାଟିର ଉର୍ବରତା ସବୁ ସ୍ଥାନରେ ସମାନ ନୁହେଁ । ଦେଶକୁ ସେହି ଦୃଷ୍ଟିରୁ ଅନୁପ, ଜାଙ୍ଗଲ ଓ ସାଧାରଣ ଭାବରେ ଋଗ୍‌ବେଦରେ ବର୍ଣ୍ଣନା କରାଯାଇଛି । ସେହିପରି ମାଟିକୁ 'ଉର୍ବରା', 'ଅପ୍ରସ୍ୱତି'(କମ୍ ଉର୍ବରା) ଓ 'ଅର୍ଥନା' (ଅନୁର୍ବର) ଭାଗରେ ବିଭକ୍ତ କରାଯାଇଛି । ପାଣିପବନର ପ୍ରଭାବ ଓ ଉର୍ବରତାର ତାରତମ୍ୟ ହେତୁ ଧାନର ଉତ୍ପାଦନ କାଳରେ ପାର୍ଥକ୍ୟ ଲକ୍ଷ୍ୟ କରାଯାଏ । ଏହି ଅଞ୍ଚଳରେ ମାଟିର ବିଭିନ୍ନ ଗୁଣ ହେତୁ ଛୋଟ ଧାନ'ମାଲ୍‌ଧାନ' ଷାଠିଏ ଦିନରେ ଅମଳଯୋଗ୍ୟ ହୋଇଯାଏ ।

ତେଣୁ କେଉଁ ଦିନ ଏହି ଶୁଭ ତିଥି ପଡ଼େ, ତାହା ନିର୍ଣ୍ଣୟ କରିବା ପାଇଁ ଗାଁର ମୁଖିଆ ଓ ପୁରୋହିତମାନେ ବସି ପଞ୍ଜିକା ଅନୁସାରେ ଲଗନ ସ୍ଥିର କରୁଥିଲେ । ଆଦିବାସୀମାନଙ୍କ ମଧ୍ୟରେ ହିନ୍ଦୁମାନେ ବସତି ସ୍ଥାପନ କଲା ପରେ ଜ୍ୟୋତିଷ ଶାସ୍ତ୍ରର ମତ ନିଆଗଲା । ପୁରୋହିତମାନେ ସମ୍ବଲପୁର ବ୍ରହ୍ମପୁର ଜଗନ୍ନାଥ ମନ୍ଦିରରେ ଏକାଠି ବସୁଥିଲେ । ଗୋଟିଏ ଦିବସରେ ନବାନ୍ନ ମୁହୂର୍ତ୍ତ ବାହାର କରିବା ଲାଗି ଭିନ୍ନ ଭିନ୍ନ ପଦ୍ଧତି ଅନୁସରଣ କରାଯାଇଛି । କେତେକ ସ୍ଥାନରେ ଇଷ୍ଟଦେବ ବା ଦେବୀଙ୍କ ନାଁରେ ଏବଂ ଆଉ କେତେକ ସ୍ଥାନରେ ପୂର୍ବତନ ଶାସକ ରାଜା ବା ଜମିଦାର(ଉମୁରା)ଙ୍କ ଜାତକ ସିଦ୍ଧି ତିଥିରୁ ଏହି ଶୁଭ ମୁହୂର୍ତ୍ତ ନିର୍ଣ୍ଣୟ କରାଯାଏ । ବର୍ତ୍ତମାନ କେବଳ ଇଷ୍ଟଦେବୀଙ୍କ ନାଁରେ ତାହା ସ୍ଥିର କରାଯାଉଛି । ତିଥି ଓ ଶୁଭ ମୁହୂର୍ତ୍ତ ବଲାଙ୍ଗିରର ପାଟଣେଶ୍ୱରୀ, ସୁବର୍ଣ୍ଣପୁରର ସୁରେଶ୍ୱରୀ ଓ କଳାହାଣ୍ଡିର ମାଣିକେଶ୍ୱରୀଙ୍କ ନାମରେ କାଳଗଣନା କରାଯାଉଥିଲା । ସୁନ୍ଦରଗଡ଼ ରାଜା ପ୍ରଥମେ ଶେଖରବର୍ଷିଣୀ ମନ୍ଦିରରେ ନବାନ୍ନ ଅର୍ପଣ କରୁଥିଲେ । ତା' ପରେ ଅନ୍ୟ ଜିଲ୍ଲାମାନଙ୍କର ଆରାଧ୍ୟ ଦେବୀଙ୍କ ନିକଟରେ ନିର୍ଦ୍ଧାରିତ ଲଗନ ବା ଲଗ୍ନରେ ତାହା ଅର୍ପଣ କରାଯାଉଥିଲା ।

**ନବାନ୍ନ ପାଳନ ବିଧି :** ନବାନ୍ନ ଦର୍ଶନ ବା ପାଳନ ପର୍ବ ପାଇଁ ପନ୍ଦର ଦିନ ଆଗରୁ ପ୍ରସ୍ତୁତି ଓ ସଜବାଜ ଆରମ୍ଭ ହୋଇଯାଏ । ଏହି ପାଳନ ରୀତିକୁ ନବରଙ୍ଗ ବା ନଅଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଥାଏ । ସେଗୁଡ଼ିକ ହେଉଛି ବେହେରନ । ଏହାର ଉଦ୍ଦେଶ୍ୟ ତିଥି ନିର୍ଦ୍ଧାରଣ ପାଇଁ କାଳଗଣନା ସଭାର ଘୋଷଣା । କାହାଳିଆ କହାଳି ବଜାଇ ଗାଁର ଏକ ନିର୍ଦ୍ଦିଷ୍ଟ ପବିତ୍ର ସ୍ଥାନରେ ବସିବା ପାଇଁ ବରିଷ୍ଠ ଲୋକଙ୍କୁ ଡ଼ାକରା ଦେଇଥାଏ । ଲଗ୍ନଦେବା ପାଇଁ ଡ଼ାକାହକା ହେବା ଓ ନିମନ୍ତ୍ରଣ

ଦେବା । ପୁରୋହିତ ଦେଖି ତିଥି, ଲଗ୍ନ ଓ ମୁହୂର୍ତ୍ତ ସ୍ଥିର କରନ୍ତି । ସ୍ୱଚ୍ଛତା ହେଉଛି ନବାନ୍ନ ଅର୍ପଣ ପାଇଁ ମନ୍ଦିର, ଘରଦୁଆର, ଦାଣ୍ଡବାଡ଼ି, କୋଠାଘର ସଫା ସୁତୁରା କରିବା । ଘିରାବିକା ହେଉଛି ଅନ୍ୟ ଏକ ପର୍ଯ୍ୟାୟ । ଏହି ପର୍ବ ପାଇଁ ଆବଶ୍ୟକ ହେଉଥିବା ପଦାର୍ଥ ସବୁ କିଣାବିକା କରିବା । ନୂଆଧାନ ଖୁଜା ହେଉଛି ନବାନ୍ନ ଯୋଗ୍ୟ ନୂଆଧାନ ଅନୁସନ୍ଧାନ କରିବା । ବଳିପକା ହେଉଛି ଆରାଧ୍ୟ ଦେବୀଙ୍କୁ ପ୍ରଥମେ ଅନ୍ନପ୍ରସାଦ ଅର୍ପଣ କରିବା । ନୂଆଖାଇ ହେଲା ପ୍ରସାଦ ରୂପରେ ନୂଆ ଅନ୍ନ ଖାଇ ଆନନ୍ଦରେ ଗୀତ ଗାଇବା ଓ ନାଚିବା । ଜୁହାରଭେଟ ହେଉଛି ଗୁରୁଜନଙ୍କୁ ନମସ୍କାର କରିବା ।

ଘରେ ଓ ସମ୍ପ୍ରଦାୟରେ ଏହି ପର୍ବ ପାଳିତ ହୁଏ । ସମଗ୍ର ଅଞ୍ଚଳଟିକୁ ଗୋବରରେ ଲିପିପୋଛି ପରିଷ୍କାର ରଖାଯାଏ । ଘର ପରିଷ୍କାର ପରେ ବଟା ଚାଉଳରେ ମୁରୁଜ ପକାଯାଏ । ଘର ବାରଣ୍ଡାଠାରୁ ବାହାର ଅଗଣା ପର୍ଯ୍ୟନ୍ତ ବହୁ ଆକର୍ଷଣୀୟ ଝୋଟିସବୁ ଝିଅମାନେ ଆଙ୍କି ଥା'ନ୍ତି । ପଶ୍ଚିମ ଓଡ଼ିଶାର କଳାସଂସ୍କୃତି ଓ ପରମ୍ପରାର ଛାପ ଏଥିରୁ ବାରି ହୋଇ ପଡ଼େ । ନୂଆଁଖାଇ ଅବସରରେ ଲୋକେ ଚାଷଜମିରେ ବ୍ୟବହୃତ ଲଙ୍ଗଳ, ଶଗଡ଼ଗାଡ଼ି, ଦାଆ, କୁରାଢ଼ି, ଭୁଗୁଲି, ଟୁପୁଲି, ଛେନୋ, ଚାଗିଲି, ଢିଙ୍କି ପ୍ରଭୃତି ଘରକରଣା ଉପକରଣ ସବୁକୁ ସଫାସୁତୁରା କରିଥା'ନ୍ତି । ଏହି ଦିବସର ପାହାନ୍ତିଆରୁ ଘରର ବୋହୂମାନେ ଗାଧୁଆପାଧୁଆ ଆଦି ନିତ୍ୟକର୍ମ ସାରି ଦିଅନ୍ତି । ନିଜର ଆର୍ଥିକ ସ୍ଥିତି ଅନୁଯାୟୀ ପ୍ରତ୍ୟେକ ପରିବାରରେ ନୂତନ ଶସ୍ୟରେ ଅନ୍ନ, ଖିରୀ, ଆରିଷା, ସୁମିଷ୍ଟ ଓ ସ୍ୱାଦିଷ୍ଟ ପିଠାପଣା, ନାନା ରକମ୍ ବ୍ୟଞ୍ଜନ ଆଦି ଛଅ ତିଅଣ ନଅ ଭଜା ଅନ୍ୟ ପୂଜା ସାମଗ୍ରୀ ତିଆରି ହୁଏ । ପରିବାର ପ୍ରତ୍ୟେକ ସଦସ୍ୟ ପ୍ରତ୍ୟୁଷରୁ ସ୍ନାନ ସାରି ନବବସ୍ତ୍ର ପରିଧାନ କରିଥା'ନ୍ତି । ହିନ୍ଦୁ ପରମ୍ପରାକ୍ରମେ ପରିବାରର ବୟୋଜ୍ୟେଷ୍ଠ ମୁଖ୍ୟ ପାରମ୍ପରିକ ରୀତିରେ ନିଜ ଅଞ୍ଚଳରେ ବା ଗ୍ରାମରେ ଆରାଧ୍ୟଦେବୀଙ୍କ ସମ୍ମୁଖରେ ପ୍ରଥମେ ନବାନ୍ନ ଅର୍ପଣ କରିଥା'ନ୍ତି । ତା'ପରେ ଗୃହର ଇଷ୍ଟଦେବ ବା ଦେବୀ ତଥା ଲକ୍ଷ୍ମୀ(ଧନରଦେବୀ) ଓ ପିତୃପୁରୁଷଙ୍କୁ ନୂତନ ଶସ୍ୟ ନିର୍ମିତ ନୈବେଦ୍ୟ ଅର୍ପଣ କରନ୍ତି । ପରିବାରର ସଦସ୍ୟମାନେ ଇଷ୍ଟଦେବଦେବୀଙ୍କୁ ପ୍ରଣାମ କରନ୍ତି । ଏହା ପରେ ନୂଆଁ ଖାଇବାର ପ୍ରକ୍ରିୟା ଆରମ୍ଭ ହୁଏ । ଘରର ସମସ୍ତ ସଦସ୍ୟ ମୁଖ୍ୟଙ୍କ ହାତରୁ ନବାନ୍ନ ରୂପକ ପ୍ରସାଦ ନୂଆବସ୍ତ୍ର ପିନ୍ଧି ଏକାଠି ବସି ସେବନ କରନ୍ତି । ଭାଇ ଭାଇ ମଧ୍ୟରେ ପରସ୍ପର ମନୋମାଳିନ୍ୟ ଥିଲେ ବି ସାନଭାଇ ବଡ଼ଭାଇ ଘରକୁ ଯାଇଥାଏ ଏହି ପ୍ରସାଦ ସେବନ କରିବା ପାଇଁ । ଭିନ୍ନେ ହୋଇ ଯାଇଥିବା ଭାଇମାନେ ମଧ୍ୟ ଗୋଟିଏ ଛାତତଳେ ବସି ନୂଆଁଖାଇର ଏକତା ମନ୍ତ୍ରରେ ଆପେ ଆପେ ଅଭିଭୂତ ହୋଇଥା'ନ୍ତି । ଦୂରରେ ଥିବା ପରିବାରର ସଦସ୍ୟମାନେ ବଡ଼ ଆଗ୍ରହରେ ଏହି ଦିନକୁ ଅପେକ୍ଷା କରିଥା'ନ୍ତି । ଜ୍ଞାତିକୁଟୁମ୍ବଙ୍କ ସଙ୍ଗରେ ନୂଆ ଖାଇବା ଓ ପରସ୍ପରକୁ ଭେଟିବାର ଯେଉଁ ଆନନ୍ଦ ଓ ମଜା, ତାହା ସେମାନେ ପୂର୍ଣ୍ଣପ୍ରାଣରେ ଉଠାଇଥା'ନ୍ତି । ପରିବାରର ସଦସ୍ୟଙ୍କ ସଂଖ୍ୟା ଶତାଧିକ ହେଲେ ମଧ୍ୟ ପଙ୍‌କ୍ତି ଭୋଜନରେ ସମସ୍ତେ ସାମିଲ୍ ହୁଅନ୍ତି । ପ୍ରସାଦ ସେବନ ପରେ ନବାନ୍ନ ଭକ୍ଷଣ ଦିନ କନିଷ୍ଠମାନେ ବୟୋଜ୍ୟେଷ୍ଠ ଗୁରୁଗୁରୁଜନଙ୍କ ପାଦତଳେ ଭୂମିଷ୍ଠ ପ୍ରଣିପାତ କରି ସମ୍ମାନ ଜଣାନ୍ତି । ଆଶୀର୍ବାଦ ଭିକ୍ଷା କରନ୍ତି । ଏହା ନୂଆଁଖାଇର ଅନ୍ୟ ଏକ ବୈଶିଷ୍ଟ୍ୟ । ଏହାକୁ ନୂଆଁଖାଇ ଜୁହାର୍ କୁହାଯାଏ । 'ନୂଆଁଖାଇ ଜୁହାର୍' ବର୍ତ୍ତମାନ ଏହି ଦିବସର ସାମାଜିକ ପରମ୍ପରା । ନୂଆଖାଇ ଅବସରରେ ବନ୍ଧୁବାନ୍ଧବ, ଜ୍ଞାତିକୁଟୁମ୍ବ ତଥା ପ୍ରିୟ ପରିଜନଙ୍କୁ ନିମନ୍ତ୍ରଣ କରାଯାଇ ଭୂରି ଭୋଜନରେ ଆପ୍ୟାୟିତ କରାଯାଇଥାଏ । ମହନୀୟତା ହେଉଛି ନୂଆଖାଇ ପୂର୍ବର ମନୋମାଳିନ୍ୟକୁ ପଛରେ ପକାଇ ନୂଆ ନୂଆ ଆଶା ଓ ଆତ୍ମୀୟତାରେ ସମସ୍ତଙ୍କୁ ପରୋକ୍ଷରେ ଦୀକ୍ଷିତ କରାଇଥାଏ । ଏହି ପର୍ବ ପାଳନରେ ସମସ୍ତେ ସମାନ । ସତେଯେପରି ସବୁ ଦ୍ୱେଷକୁ ପଦାନତ ନିଜର ଦାୟିତ୍ୱରେ ସଭିଏଁ ଚେତନାସିକ୍ତ ହୋଇ ପାରିବାରିକ ସମ୍ବନ୍ଧର ଦୃଢ ଭିତ୍ତିଭୂମି ନିର୍ମାଣ କରନ୍ତି । ଏହା ଏକ ପାରିବାରିକ ଚଳଣି ତାହା ନୁହେଁ, ବରଂ ଭାରତୀୟ ସଭ୍ୟତା ଓ ସଂସ୍କୃତିର ଏହା ଏକ ପ୍ରଭାବପୂର୍ଣ୍ଣ ପ୍ରବାହ । ଏହିଭଳି ମହନୀୟ ସଂସ୍କୃତିର ଅତି ସୁନ୍ଦର ବ୍ୟାଖ୍ୟା କରି ଅଥର୍ବ ବେଦରେ କୁହାଯାଇଛି : ଭାଇ ଭାଇକୁ ଦ୍ୱେଷ ନକରୁ, ଭଉଣୀ ଭଉଣୀକୁ ଘୃଣା ନକରୁ, ସମସ୍ତେ ନିର୍ମଳ ଚିତ୍ତ,ଏକବ୍ରତ ହୋଇ ଭଦ୍ରବାଣୀ ଉଚ୍ଚାରଣ କର । ସବୁ ମଣିଷ ମନରେ ସଦ୍‌ଜ୍ଞାନ ଜାତ ହେଉ । ଅନ୍ନ ଓ ଜଳର ସାମଗ୍ରୀ ସମାନ ହେଉ ।

**ନୂଆଁଖାଇ ବିଧାନରେ ଦେବଦର୍ଶନ :** ନବାନ୍ନ ଭକ୍ଷଣ ପରେ ଦେବଦର୍ଶନ ଆରମ୍ଭ ହୋଇଥାଏ । ଲୋକେ ବ୍ୟକ୍ତିଗତ ଭାବରେ ହେଉ ବା କୀର୍ତ୍ତନ ସହ ଦଳଗତ ଭାବେ ହେଉ ଦେବ ତଥା ଦେବୀ ମନ୍ଦିରଗୁଡ଼ିକୁ ଦର୍ଶନ ପାଇଁ ଯାଇଥା'ନ୍ତି । ରଙ୍ଗବେରଙ୍ଗର ସାଜସଜ୍ଜା ଓ ଗହଳରେ ନାନା ପ୍ରକାର ବାଦ୍ୟର ତାଳେ ନାଚି ନାଚି ହଜାର ହଜାର ଭକ୍ତମାନେ ଶୋଭାଯାତ୍ରାରେ ଦେବୀଙ୍କ ମନ୍ଦିରକୁ ଯା'ନ୍ତି । ରଙ୍ଗାରଙ୍ଗ ନୂଆଁଖାଇରେ ସମସ୍ତ ମଠ, ମନ୍ଦିର ଓ ପୀଠ ପ୍ରଭୃତିକୁ ଆକର୍ଷଣୀୟ ଢଙ୍ଗରେ ସଜ୍ଜା ଯାଇଥାଏ । ପୂଜକମାନେ ନୂଆଖାଇ ଉପଲକ୍ଷେ ଦେବଦେବୀଙ୍କର ବିଶେଷ ପୂଜାର୍ଚ୍ଚନା, ମାଜଣା ଓ ଅଭିଷେକ ପ୍ରଭୃତି କରିଥା'ନ୍ତି । ଘଣ୍ଟଘଣ୍ଟା ଓ ଶଙ୍ଖ ଧ୍ୱନିରେ ଅଞ୍ଚଳଟି କମ୍ପି ଉଠୁଥାଏ । ମଠ ଓ ମନ୍ଦିର ସମୂହରେ ନୂତନ ଶସ୍ୟ ପ୍ରସ୍ତୁତ ନୈବେଦ୍ୟ ଭୋଗ କରାଯାଏ । ସ୍ଥାନେ ସ୍ଥାନେ ପ୍ରସାଦ ବିତରଣ ଓ ଦୁଃଖୀରଙ୍କୁ ମନ୍ଦିରରେ ଭୂରି ଭୋଜନର ବ୍ୟବସ୍ଥା କରାଯାଇଥାଏ । ସନ୍ଧ୍ୟାରେ ମନ୍ଦିରମାନଙ୍କରେ ଭକ୍ତି ସଙ୍ଗୀତ ସମାରୋହ, ଦାସକାଠିଆ ଓ ପାଲା ପ୍ରଭୃତି ସାଂସ୍କୃତିକ କାର୍ଯ୍ୟକ୍ରମମାନ ପରିବେଷଣ ହୋଇଥାଏ । ସ୍ଥଳ ବିଶେଷରେ ବିଷ୍ଣୁ ସହସ୍ର ନାମ, ଭଗବତ୍ ଗୀତା, ଅନ୍ନପୂର୍ଣ୍ଣା ସ୍ତୋତ୍ର, କନକଧାରା ସ୍ତୋତ୍ର ଓ ହନୁମାନ ଚାଳିଶା ପାଠ କରାଯାଏ । ମୋଟ ଉପରେ କହିଲେ ସମଗ୍ର ପଶ୍ଚିମ ଓଡ଼ିଶା ନୂଆଁଖାଇରେ ଉତ୍ସବମୁଖର ହୋଇଉଠେ । ଆସନ୍ତା ବର୍ଷ ଏହିପରି ବିତୁ ବୋଲି ପ୍ରକୃତିରୂପିଣୀ ମାତୃଶକ୍ତିର ପ୍ରତୀକ ମା' ସମଲେଇ ପାଖରେ କୋଟି ଜୁହାର୍ କରି ତାଙ୍କ ଆଶିଷ ଭିକ୍ଷା କରିଥା'ନ୍ତି । ପ୍ରକୃତି ବିଶେଷ କରି ପୃଥିବୀ ମା'ର ଉଦାରତା ପାଇଁ ତା'ଙ୍କ ନିକଟରେ ହାର୍ଦ୍ଦିକ କୃତଜ୍ଞତା ପ୍ରକାଶ କରି ଚାଷୀ ଧନ୍ୟବାଦ ଅର୍ପଣ କରେ । ପ୍ରକୃତିର ଉଦାରତା ପର୍ବରୂପ ନେଇଥାଏ ଏଠି । ତୈତ୍ତିରୀୟ ଉପନିଷଦ୍‌ରେ କୁହାଯାଇଛି: ଅନ୍ନକୁ ନିନ୍ଦା କର ନାହିଁ । ଅନ୍ନକୁ ମନା କର ନାହିଁ । ଅନ୍ନକୁ ନଷ୍ଟ କର ନାହିଁ । ଅନ୍ନ ବହୁ ପରିମାଣରେ ଉତ୍ପନ୍ନ କର । ସେହିପରି ଋଗ୍‌ବେଦ(୧୦/୩୪/୧୩)ରେ କୁହାଯାଇଛି: କୃଷିମ୍ ଇତ୍ କୃଷସ୍ୱ–ନିଜ ଜମି ଚାଷ କର ଏହା ତୁମର ବ୍ରତ ହେଉ । ଏହା ଫଳରେ ତୁମେ 'କୁଶଳାନ୍ନ ପ୍ରମଦିତବ୍ୟମ୍'–ସାମାଜିକ ଅର୍ଥନୀତି ଅଭିବୃଦ୍ଧିରେ କିଛି କାର୍ଯ୍ୟ କରିପାରିବ । ଏହି ସାଂସ୍କୃତିକ ଚେତନାରେ ପ୍ରାଣବାନ୍ ହୋଇ ଚାଷୀ ପୁଣି ଆଗାମୀ ବର୍ଷ ପାଇଁ ସଂକଳ୍ପ ନିଏ । ବହୁ ଅନ୍ନ ଉପୁଜାଇ ନିଜର, ସମାଜର ତଥା ଦେଶର ସମୃଦ୍ଧିରେ ଅଭିବୃଦ୍ଧି କରିବ । ସୁତରାଂ ନୂଆଖାଇ ଚାଷୀର ସଂକଳ୍ପର ଦିବସ କହିଲେ ଅତ୍ୟୁକ୍ତି ହେବ ନାହିଁ । ଦେବଦର୍ଶନରେ ଯେ କେବଳ ଅନ୍ନ ଓ ସମୃଦ୍ଧି ପାଇଁ ଭଗବାନଙ୍କଠାରେ କୃତଜ୍ଞତା ପ୍ରକାଶ କରାଯାଏ ତାହା ନୁହେଁ ବରଂ ଏହାର ମାଧ୍ୟମରେ ବ୍ୟକ୍ତି ଭାବବିହ୍ୱଳ ହୋଇ ଉପାସକ ପ୍ରାର୍ଥନା କରେ ଆମକୁ ପୁଷ୍ଟିଯୁକ୍ତ ଖାଦ୍ୟରେ ସମୃଦ୍ଧିଶାଳୀ କର ।' ଆବହନ୍ତି ବିତନ୍ୱାନା କୁର୍ବାଣା ଚିରମାତ୍ମନଃ । ବାସାଂସି ମମ ଗାବଶ୍ଚ ଅନ୍ନପାନେ ଚ ସର୍ବଦା ।'ଅର୍ଥାତ୍ ଆମକୁ ସେଇ ଧନ ଦିଅ, ଯାହା କି ଆମ ପାଖରେ ସର୍ବଦା ବୃଦ୍ଧି ହେଉଥିବ ଓ ଆମର ଗାଈ ଇତ୍ୟାଦି ଗୃହପାଳିତ ପଶୁ, ଲୁଗା, ଅନ୍ନ ପାନୀୟ ଜଳ ସର୍ବଦା ମିଳୁଥିବ । କେହି ଅନ୍ନକଷ୍ଟ ନ ଭୋଗୁ । ସମସ୍ତେ ସୁଖରେ ରୁହନ୍ତୁ । ପ୍ରତି ଲୋକର ଉନ୍ନତି ହେଉ । ଏହିପରି ଦେବଦେବୀଙ୍କ ନିକଟରେ ସାର୍ବଜନୀନ କଲ୍ୟାଣ କାମନା କରାଯାଇଥାଏ ।

**ନୂଆଁଖାଇ ଭେଟ୍‌ଘାଟ୍ :** କେବଳ ଯେ ପାରିବାରିକ କ୍ଷେତ୍ରରେ ଏହା ସୌହାର୍ଦ୍ଦ୍ୟର ସଂହତି ସ୍ଥାପନ କରେ ତାହା ନୁହେଁ, ସାମାଜିକ କ୍ଷେତ୍ରରେ ମଧ୍ୟ ଏହାର ଉପାଦେୟତା ରହିଛି । ଏହାପରେ ଆରମ୍ଭ ହୋଇଯାଏ ନୂଆଖାଇ ଭେଟ୍‌ଘାଟ୍ । ସଞ୍ଜବେଳକୁ ଲୋକେ ଉପହାର ନେଇ ପରସ୍ପରକୁ ଭେଟନ୍ତି । ବନ୍ଧୁ, ଶୁଭେଚ୍ଛୁ ଓ ସମ୍ପର୍କୀୟମାନେ ପରସ୍ପରକୁ ଭେଟି ନୂଆଖାଇର ଶୁଭକାମନା ଓ ଶୁଭେଚ୍ଛା ଜଣାଇଥା'ନ୍ତି । ବଡ଼ମାନେ ସାନମାନଙ୍କୁ ଆଶୀର୍ବାଦ ଦିଅନ୍ତି । ସୁଖ ଓ ସମୃଦ୍ଧି କାମନା କରନ୍ତି । ରାଜା ମହାରାଜାମାନଙ୍କ ସ୍ଥାନରେ ଆଜିକାଲି ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନମାନ ସଞ୍ଜରେ ନାନା ପ୍ରକାର ସାଂସ୍କୃତିକ କାର୍ଯ୍ୟକ୍ରମସବୁ ଆୟୋଜନ କରୁଛନ୍ତି । କଳାକାରମାନେ ବର୍ଷକଯାକ ଯାହା ଶିଖିଥା'ନ୍ତି, ତାହା ସର୍ବ ସମ୍ମୁଖରେ ପରିବେଷଣ କରିଥା'ନ୍ତି । କଳା ପ୍ରତିଭାର ବିକାଶ ଘଟେ । ସହରାଞ୍ଚଳ ଓ ଗ୍ରାମାଞ୍ଚଳ ସର୍ବତ୍ର ଆମୋଦପ୍ରମୋଦ ବନ୍ଧୁ ମିଳନ ସ୍ୱାଦିଷ୍ଟଭୋଜନ, ଖେଳ କସରତ, ମନୋରଞ୍ଜନ କାର୍ଯ୍ୟକ୍ରମ ତଥା ସାଂସ୍କୃତିକ ଉତ୍ସବ ପାଳନରେ ସଭିଏଁ ଆତ୍ମବିଭୋର ହୋଇଉଠନ୍ତି । ଏହାକୁ 'ନୂଆଁଖାଇ ଭେଟ୍‌ଘାଟ୍' କୁହାଯାଏ । ବହୁ ଜାଗାରେ ଲୋକଗୀତ ଓ ଲୋକନୃତ୍ୟର ଆସର ଆୟୋଜିତ ହୋଇଥାଏ । ପାରମ୍ପରିକ ସମ୍ବଲପୁରୀ ନୃତ୍ୟ ଯଥା–ରସରକେଲି, ଡ଼ାଲଖାଇ, ରଙ୍ଗବତୀ,





ମାଇଲା ଜଡ, ଛୁଟୁକୁଛୁଟା, ସଜନୀ, ନାଛନିଆ ଓ ବାଜନିଆ ପ୍ରଭୃତି ନୃତ୍ୟ ପରିବେଷିତ ହୋଇ ପଶ୍ଚିମ ଓଡ଼ିଶାକୁ ଦୁଲୁକେଇ ଦେଇଥାଏ । ସେଥିରେ ଲୋକମାନେ ମଜ୍ଜିଯା'ନ୍ତି । ନୂଆଖାଇ ପର୍ବ ଦେଶର ବିଭନ୍ନ ଅଞ୍ଚଳରେ ପାଳିତ ହେଲେ ମଧ୍ୟ ଆଦିବାସୀମାନେ ଏହାକୁ ଗୋଷ୍ଠୀଗତ ଭାବେ ମହାଉଲ୍ଲାସରେ ପାଳନ କରିଥା'ନ୍ତି । ସମ୍ପ୍ରତି ଅନେକ ସ୍ଥାନରେ ନୂଆଖାଇ ଉପଲକ୍ଷେ ସ୍ୱତନ୍ତ୍ର କବିତା ପାଠୋତ୍ସବ ଅନୁଷ୍ଠିତ ହେଲାଣି । ନୂଆଖାଇ ମାଧ୍ୟମରେ ପୂର୍ବରୁ ଥିବା ସଂକୀର୍ଣ୍ଣ ଗୋଷ୍ଠୀଗତ ତଥା ସ୍ୱାର୍ଥଜନିତ ଦୋଷ ବହୁଳାଂଶରେ ଶିଥିଳ ହୋଇଯାଇଥାଏ । ଭୁଲ ବୁଝାମଣା ଦୂର କରିବା ପାଇଁ ପ୍ରଚେଷ୍ଟା କରାଯାଇଥାଏ । ଏହିପରି ନୂଆଖାଇର ଧାର୍ମିକ ଗୁରୁତ୍ୱ ଅପେକ୍ଷା ତା'ର ସାମାଜିକ ସୌହାର୍ଦ୍ଦ୍ୟ ଅଧିକ ରହିଛି । ସମାଜରେ ମଣିଷ ଭାବେ ମଣିଷ ହୋଇ ରହିବା ପାଇଁ ଯେଉଁ ନୀତି ଓ ଆଦର୍ଶର ଆବଶ୍ୟକତା ରହିଛି, ନବାନ୍ନ ଭକ୍ଷଣ ପର୍ବ କିଛି ପରିମାଣରେ ତାହା ପୂରଣ କରେ । ଅନ୍ୟ ଦୃଷ୍ଟିରୁ ବିଚାର କଲେ ନବାନ୍ନ ହେଉଛି ସ୍ଥିତାବସ୍ଥାରୁ ଉଚ୍ଚ ଆଦର୍ଶରେ ଅନୁପ୍ରାଣିତ ହେବା ପାଇଁ ଏକ ସଂକଳ୍ପର ଦିବସ ।

**ଉପସଂହାର:** ନୂଆଖାଇ ପର୍ବ କେବଳ ନୂଆଧାନ ସହିତ ସମ୍ପର୍କିତ ନୁହେଁ, ନୂଆ ଆମ୍ବ, ଶିମ୍ବ, କଖାରୁ ଯାହା କିଛି ନୂଆ ଫସଲ ଆସେ ତାହା ପ୍ରଥମେ ନିଜର ଇଷ୍ଟ ଦେବଦେବୀଙ୍କ ପାଖେ ପୂଜା ହୋଇ ଅର୍ପଣ କରାଗଲା ପରେ ସାଧାରଣରେ ସେବନ କରିବାର ବିଧି ଆଦିବାସୀ ସମାଜରେ ଏବେ ବି ପ୍ରଚଳିତ ଅଛି । ତେଣୁ ସେମାନେ ନିଜର ସମସ୍ତ ସୁଖ, ଦୁଃଖ, ଆଶା, ନୈରାଶ୍ୟ ସେହି ଶକ୍ତିର କରୁଣା ମନେ କରି ମୁଣ୍ଡେଇ ନିଅନ୍ତି । ସେମାନେ ପ୍ରଥମେ ନିଜର ଇଷ୍ଟଦେବୀ, ଗାଁର ଦେବୀଙ୍କୁ ନୂଆ ଶସ୍ୟ ଅର୍ପଣ କଲା ପରେ ଯାଇ ନିଜେ ବ୍ୟବହାର କରିଥା'ନ୍ତି । ସେମାନଙ୍କର ପୂର୍ଣ୍ଣ ବିଶ୍ୱାସ ଯେ ଯଦି ନୂଆଖାଇ ପର୍ବ ପାଳନ ନକରି ନୂଆ ଶସ୍ୟ ସେବନ କରାଯାଏ ତେବେ ପରିବାର ଓ ଗାଁରେ ନାନା ରୋଗ, ଦୁଃଖ ଓ ଫସଲହାନି ଘଟେ । ନୂଆଖାଇ ପର୍ବରେ ଶତ୍ରୁ ମିତ୍ର ସମସ୍ତେ ଏକାଠି ହୋଇ ନୂଆ ଖାଇବାର ପରମ୍ପରା ଏକ ଅପୂର୍ବ ସାମାଜିକ ବନ୍ଧନକୁ ମଜବୁତ୍ କରିଥାଏ । ଯିଏ ଯେଉଁଠି ଥାଆନ୍ତୁନା କାହିଁକି ଏହିଦିନ ସମସ୍ତେ ନିଶ୍ଚୟ ଘରକୁ ଆସି, ଏକାଠି ହୋଇ ନୂଆ ଅନ୍ନ ସେବନ କରି ମହାଆନନ୍ଦରେ ଆନନ୍ଦିତ ହୋଇ ପରମ୍ପରାକୁ ବଜାୟ ରଖିଥା'ନ୍ତି । ଜାତି, ଧର୍ମ ଓ ସମ୍ପ୍ରଦାୟ ନିର୍ବିଶେଷରେ ସଭିଏଁ ନୂଆଖାଇର ଶୁଭାଗମନକୁ ବଡ଼ ଆଗ୍ରହର ସହିତ ଅପେକ୍ଷା କରି ରହିଥା'ନ୍ତି । ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ସକଳ ସଂକୀର୍ଣ୍ଣତାରୁ ଊର୍ଦ୍ଧ୍ୱରେ ରହି ଓଡ଼ିଶାବାସୀ ଏହି ଧାର୍ମିକ ମହୋତ୍ସବକୁ ପାଳନ କରିଥା'ନ୍ତି । ପାରମ୍ପରିକ ପୂଜାର୍ଚ୍ଚନା, ସାର୍ବଜନୀନ ସାଂସ୍କୃତିକ ଚେତନା, ପାରସ୍ପରିକ ଉଦାରତା, ଶ୍ରଦ୍ଧା, ସଂପ୍ରୀତି ଓ ସୌଜନ୍ୟ ଏହି ପର୍ବକୁ ମଧୁମୟ କରିଥାଏ । ଲୋକଧର୍ମର ପ୍ରବହମାନ ସ୍ରୋତ ଏହି ପର୍ବରେ ସାମାଜିକ ଜୀବନର ବୈଚିତ୍ର୍ୟ ପ୍ରତିଫଳିତ ହୋଇଥାଏ । ଏହା ଏକତା ଓ ସଂହତିର ଗଣପର୍ବ । ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଶାର ଏହି ଗଣପର୍ବ ତା'ର ଜନଜୀବନକୁ ପ୍ରଭାବିତ କରି ଆସିଛି । ବ୍ୟକ୍ତିଗତ, ପାରିବାରିକ, ସାମାଜିକ ଜୀବନ ମଧ୍ୟରେ ଅପୂର୍ବ ସମନ୍ୱୟ ଆଣି ଆବାଳବୃଦ୍ଧବନିତାଙ୍କୁ ଏହା ଏକତା ସୂତ୍ରରେ ବାନ୍ଧି ପାରଛି । ଶାନ୍ତି, ମୈତ୍ରୀ, ସାମ୍ୟ ଓ ସଦ୍‌ଭାବ ହିଁ ଏହି ପର୍ବକୁ ସରସ, ସୁନ୍ଦର ଓ ଆକର୍ଷଣୀୟ କରି ଏକ ଗଣ ମହୋତ୍ସବରେ ପରିଣତ କରି ପାରିଛି ।

ଘର ନଂ– ସି/ ୨୨/୧, ନାଲ୍‌କୋ
ଦାମନଯୋଡ଼ି, କୋରାପୁଟ–୭୬୩୦୦୮






# ଆମ ସାହିତ୍ୟ, ଆମ ସମ୍ବାଦପତ୍ର

ପ୍ରଦୀପ୍ତ ମହାପାତ୍ର

**''ଯେଉଁ ଘର ଯେତେ ଅଧିକ ସାଜସଜ୍ଜାରେ ପରିପୂର୍ଣ୍ଣ, ସେ ଘର ସେତେ ଅଧିକ ସୁନ୍ଦର । ସବୁବେଳେ ସଜଡ଼ା ହେଉଥିବା ଘର ସବୁକାଳେ ସୁନ୍ଦର । ଯେଉଁ ଭାଷାରେ ଏହାର ସମୃଦ୍ଧି ନିମନ୍ତେ କାର୍ଯ୍ୟ କରୁଥିବା ବ୍ୟକ୍ତି ବିଶେଷମାନଙ୍କର ଦସ୍ତାବିଜ୍ ଯେତେ ଶୃଙ୍ଖଳିତ, ସେ ଭାଷା ସେତେ ସମୃଦ୍ଧ । ଯେଉଁ ସାହିତ୍ୟ ତା' ସାହିତ୍ୟିକମାନଙ୍କୁ ସବୁବେଳେ ପୁରୋଭାଗରେ ରଖିଥାଏ, ସେ ସାହିତ୍ୟ ସେତେ ଅଭିବୃଦ୍ଧିସମ୍ପନ୍ନ, ସେତିକି ଅଗ୍ରଗାମୀ ।''**

ଏକ ବହୁ ଚର୍ଚ୍ଚିତ ଉଦ୍ଧୃତିରୁ ଏଥରର ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗଟି ଆରମ୍ଭ କରୁଛି । 'ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା, ବନିତା, ଲତା' । ଉଦ୍ଧୃତିଟି ଅବଶ୍ୟ ପୁରୁଷ ସୁଲଭ, ଏକଦା ଆମ ସମାଜରେ ପୁରୁଷମାନଙ୍କୁ ଅତ୍ୟଧିକ ଗୁରୁତ୍ୱ ଆରୋପ କରି କୁହାଯାଇଥିବା କଥାଟିଏ । ଅର୍ଥ ସୁସ୍ପଷ୍ଟ, କବିତା, ବନିତା ଅବା ଲତାଟିଏ ସ୍ୱକୀୟ ପରିବର୍ଦ୍ଧନ ଏବଂ ପରିସ୍ଫୁଟନ ପାଇଁ ଆଶ୍ରୟ ଖୋଜନ୍ତି, ବିନା ଆଶ୍ରାରେ ତିଷ୍ଠି ରହିପାରନ୍ତି ନାହିଁ । ଅତୀତରେ, ଏକ ନିର୍ଦ୍ଦିଷ୍ଟ ସମୟରେ ଆମ ସମାଜରେ ମହିଳାମାନଙ୍କର ସ୍ଥିତିକୁ ଲକ୍ଷ୍ୟ କରି ବନିତାମାନେ ଯେ ସ୍ଥଳ ବିଶେଷରେ ଆଶ୍ରୟାକାଙ୍କ୍ଷୀ ଏକଥା କୁହାଯାଇଥିଲା । ବର୍ତ୍ତମାନ ସମୟରେ, ଆମ ସମାଜରେ ମହିଳାମାନେ ଯେ ପୂର୍ବଭଳି ଏକ ପୁରୁଷ ପ୍ରଧାନ ସାମାଜିକ ସ୍ଥିତିରେ ନିର୍ଭରଶୀଳ ଅବସ୍ଥାରେ ରହିଛନ୍ତି, ଏକଥା ଏବେ ଆଉ ପ୍ରାସଙ୍ଗିକ ନ ହୋଇପାରେ । ଏହା ବିଧିବଦ୍ଧ ତର୍ଜମାର ଅପେକ୍ଷା ରଖେ ।

ବାକି ରହିଲା ଲତା ଏବଂ କବିତାର ସ୍ଥିତି, ଯାହା ଅଦ୍ୟାବଧି ଯଥା ପୂର୍ବଂ, ତଥା ପରଂ । ଲତାମାନେ ଯେମିତି ନିର୍ଭର କରୁଥିଲେ ଆଶ୍ରୟଟିଏ ଉପରେ ନିଜ ସ୍ଥିତି, ବୃଦ୍ଧି ଏବଂ ସମୃଦ୍ଧି ପାଇଁ, ତାହା ଏବେ ପୂର୍ବବତ୍ କରିଚାଲିଛନ୍ତି ଏବଂ ଭବିଷ୍ୟତରେ ବି କୌଣସି ବିନାଶ୍ରୟୀ ବିକଳ୍ପ ସେମାନଙ୍କ ପାଇଁ ନାହିଁ । ଏବେ କବିତା କଥା ଆଲୋଚନା ଯୋଗ୍ୟ । ଏଠି କବିତା କେବଳ କବିତା ନୁହେଁ, ଆମ ସାମଗ୍ରିକ ସାହିତ୍ୟର ସର୍ବନାମ । ଏହା ଏକାଧାରରେ ଗଳ୍ପ, ପ୍ରବଂଧ, କବିତା, କାହାଣୀ, କଥା ସବୁରି ପ୍ରତିନିଧିତ୍ୱ କରୁଥିବା ପ୍ରତୀକଧର୍ମୀ ନାଁ ଟିଏ । କବିତା ବୋଲି ଏଥିପାଇଁ ଅଭିହିତ କରାଯାଇଥିଲା ଯେ ଯେଉଁ ସମୟରେ ଏ ଶ୍ଳୋକ ରଚନା କରାଯାଇଥିଲା, ସେସମୟରେ କବିତା ହିଁ କେବଳ ଥିଲା ସାହିତ୍ୟିକ ପରିପ୍ରକାଶର ଏକ ପ୍ରମୁଖ ମାଧ୍ୟମ, ହୃଦୟକୁ ଖୁବ୍ ନିକଟରୁ ଆନ୍ଦୋଳିତ କରିପାରୁଥିବା ଶବ୍ଦମାନଙ୍କର ଛନ୍ଦଯୁକ୍ତ ସଂଯୋଜନା । ଶବ୍ଦ ସହିତ ଶବ୍ଦ ଯୋଡି ହୋଇ ଅପୂର୍ବ ରଙ୍ଗରେ ଛନ୍ଦି ହୋଇଯାଉଥିଲେ, ଗାଇ ଦେଲେ ଶ୍ରୋତା ବିମୁଗ୍ଧ ହୋଇଯାଉଥିଲେ, ଲେଖି ହେଉ ବା ନ ହେଉ ଶ୍ରୁତିରେ ଶ୍ରୁତିରେ ଯୁଗ ଯୁଗ ଧରି ଜନମାନସରେ ସଂଚରି ଯାଉଥିଲେ । ସେଇଥିପାଇଁ କବିତା ହିଁ ଥିଲା ଭାବ ପରିପ୍ରକାଶର ସର୍ବଶ୍ରେଷ୍ଠ ମାଧ୍ୟମ । ନିଜେ ସଦାସର୍ବଦା ନିରାଶ୍ରୟୀ, ଆଶ୍ରୟାକାଙ୍କ୍ଷୀ ମାତ୍ର ଆଶ୍ରୟ ପାଇଥିବା ଲତାଟିଏ ଭଳି ହୃଦୟରୁ ହୃଦୟକୁ ସଂଚରି

ଯିବାରେ ବେଶ୍ ପାରଙ୍ଗମ । ଲତା ଭଳି କବିତା ସମ୍ପର୍କରେ ଉଦ୍ଧୃତିଟି ଯାହା ସେତେବେଳେ ପରିପ୍ରକାଶ କରିଥିଲା, ତାହା ଆଜି ମଧ୍ୟ ବେଶ୍ ପ୍ରଣିଧାନଯୋଗ୍ୟ, ଆଗାମୀ ସମୟରେ ତାହା ବୋଧହୁଏ ଅନ୍ୟଥା ହେବାର ନାହିଁ ।

ସେତେବେଳେ ମୋଟାମୋଟି ଭାବରେ ସୃଜନକୁ ବୁଝାଉଥିବା କବିତା ଆଜି ଆମ ସାହିତ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ବିଶେଷ । ଗଳ୍ପ, ପ୍ରବନ୍ଧ, ଭ୍ରମଣ କାହାଣୀ, ନିବନ୍ଧ ଏବଂ ସ୍ତମ୍ଭ ରଚନା ଆଜି କବିତା ଭଳି ନିଜ ଗୁଣରେ ଗୁଣୀ, ବହୁଧା ଆମ ସାହିତ୍ୟାକାଶକୁ ସମୃଦ୍ଧ ଏବଂ ରୁଚିମନ୍ତ କରି ଗଢିତୋଳିଛନ୍ତି । ହେଲେ ସାହିତ୍ୟର ଏଇ ସମସ୍ତ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ସେଦିନର କବିତା ଭଳି ଆଜି ମଧ୍ୟ ନିର୍ଭରଶୀଳ, ଆଶ୍ରୟାକାଙ୍କ୍ଷୀ । ପରିଚିତ ଆବଶ୍ୟକ, ପୃଷ୍ଠପୋଷକତା ଦରକାର । ଆଦର ଲୋଡା । ସୃଷ୍ଟ ସାହିତ୍ୟର ପରିପ୍ରକାଶ ପାଇଁ ଆଶ୍ରୟ ଦରକାର, ନୂଆ ଶିଶୁଟିଏ ଭୂମିଷ୍ଠ ହେଲାପରେ ମା' କୋଳ ଖୋଜୁଥିବା ଭଳି ସଦ୍ୟ ଅନୁଭୂତିସିକ୍ତ ଏଇ ଶବ୍ଦ ସମ୍ଭାର ପାଇଁ ଦରଦୀ ପାଠକୀୟ ସ୍ୱୀକୃତି ଦରକାର, ତାକୁ କାଗଜ ପୃଷ୍ଠାରେ ବିଦଗ୍ଧ ପାଠକର ଅନୁଭବୀ ଆଖିର ପରଖ ପାଇଁ ବାଢି ଦିଆଯିବା ଦରକାର । ଏଇ ଆପଣାପଣିଆ, ଏଇ ଆଦର ପାଇଁ ସାହିତ୍ୟ ଯୁଗେ ଯୁଗେ ବିଦଗ୍ଧ ପାଠକମାନଙ୍କ ପାଖରେ ବଂଧା ।

ସମ୍ବାଦପତ୍ର ହିଁ ଆମ ପ୍ରାରମ୍ଭିକ ସାହିତ୍ୟିକ ଚେତନାର ପରିପ୍ରକାଶ ପାଇଁ ପ୍ରାଥମିକ ମାଧ୍ୟମ ହୋଇଥିବ ବୋଲି ମୁଁ ଦୃଢ ଭାବରେ ବିଶ୍ୱାସ କରେ । ଓଡ଼ିଶା ଏକ ଭାଷାଭିତ୍ତିକ ରାଜ୍ୟ । 'ଆମେ ଓଡ଼ିଆ, ଓଡ଼ିଆଙ୍କ ପାଇଁ ଓଡ଼ିଶା', ଏହିଭଳି ଏକ ବୈପ୍ଳବିକ ଚିନ୍ତାଧାରାରୁ ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଛି, ଯାହା ଅବଶ୍ୟ ଅନ୍ୟତ୍ର ବିରଳ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପୂର୍ବରୁ ଲାଗିରହିଥିବା ପ୍ରଶାସନିକ ବିଶୃଙ୍ଖଳା ଏବଂ ରାଜନୈତିକ ଅସ୍ଥିରତା ମଧ୍ୟରେ ଆମ କବିମାନେ ମଧ୍ୟ ନିଜର ସାରସ୍ୱତ ସାଧନା ଅବ୍ୟାହତ ରଖିଥିଲେ, ଅବକ୍ଷୟିଷ୍ଣୁ ଉତ୍କଳୀୟ ଅସ୍ମିତାକୁ ବଂଚାଇ ରଖିବା ପାଇଁ ଅହରହ ଉଦ୍ୟମ କରିଚାଲିଥିଲେ । ସମ୍ବାଦପତ୍ର 'ଉତ୍କଳ ଦୀପିକା' ହିଁ ଭାଷାଭିତ୍ତିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନର ଭିତ୍ତି ପ୍ରଥମେ ସ୍ଥାପନ କରିଥିଲା । ଆମ ଭାବଧାରା ଏବଂ ଆମ ଚିନ୍ତା, ଚେତନାରେ ସମନ୍ୱୟ ରକ୍ଷା କରିବା ସହିତ ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନରେ ଏହି ସାପ୍ତାହିକୀର ଭୂମିକା ଅନବଦ୍ୟ, ଅନନ୍ୟ ତଥା ଅନସ୍ୱୀକାର୍ଯ୍ୟ । ଭାଷା ଆନ୍ଦୋଳନ ମାଧ୍ୟମରେ ଭାଷାର ଉନ୍ନତି, ଭାଷା ପ୍ରତି ପାଠକୀୟ ଆଦର ସୃଷ୍ଟି କରି ଅବଲୁପ୍ତପ୍ରାୟ ଓଡ଼ିଆ ଅସ୍ମିତାର ପୁନଃ ପ୍ରତିଷ୍ଠା ଦିଗରେ ଏହି ସାପ୍ତାହିକୀଟି ଥିଲା ଆମ ଭାଷା ଓ ସଂସ୍କୃତିର ବାହକ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ବ୍ରହ୍ମପୁରରୁ ପ୍ରକାଶିତ ପ୍ରଥମ ପୂର୍ଣ୍ଣାଙ୍ଗ ଦୈନିକ ସମ୍ବାଦପତ୍ର 'ଦୈନିକ ଆଶା' ଭାଷାଭିତ୍ତିକ ଉତ୍କଳର ଏକତ୍ରୀକରଣ ମନ୍ତ୍ରରେ ଓଡ଼ିଶାବାସୀଙ୍କୁ ଉଦ୍‌ବୁଦ୍ଧ କରିବା ସହିତ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତାକୁ ଆହୁରି ଶାଣିତ କରି ଜନମାନସରେ ପରିବେଷଣ କଲା । ଏଥିସହିତ ଏହି ସମ୍ବାଦପତ୍ର ଓଡ଼ିଶାରେ ପ୍ରଥମ ଥର ପାଇଁ ପେଶାଦାରୀ ସାମ୍ବାଦିକତା, ଖବରକାଗଜ ମୁଦ୍ରଣ ତଥା ପ୍ରକାଶନ ସମ୍ବନ୍ଧୀୟ ଗୁରୁତ୍ୱପୂର୍ଣ୍ଣ ତାଲିମ ଦେଇ ସାମ୍ବାଦିକତାରେ ସମ୍ପୂର୍ଣ୍ଣ ପେଶାଦାରୀ ଆଭିମୁଖ୍ୟ ସମ୍ପର୍କରେ ଉତ୍ସାହୀ ଯୁବକମାନଙ୍କୁ ପ୍ରୋତ୍ସାହିତ କରିବା ସହିତ ପ୍ରଗାଢ ଉତ୍କଳୀୟ ଭାବନା ଏବଂ ପେଶାଦାରୀ ସାମ୍ବାଦିକତାର ଏକ ନୂତନ ଭାବଧାରା ସୃଷ୍ଟି କଲା । ଓଡ଼ିଆ ଭାଷା ପାଇଁ ସଂଗ୍ରାମ ପ୍ରଖର ହେଲା, ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନ କରାଯିବାର ଦାବି ଆହୁରି ଶାଣିତ ହେଲା, ଓଡ଼ିଶାରେ ଆଗାମୀ କାଲିର ଖବର କାଗଜର ରୂପରେଖ, କଳେବର ଏବଂ ପରିପାଟୀ 'ଦୈନିକ ଆଶାର' ଏହି ଅନବଦ୍ୟ ଉଦ୍ୟମ ହିଁ ନିର୍ଣ୍ଣୟ କଲା ।

ଓଡ଼ିଶାର ଦୁର୍ଦ୍ଦଶା ତଥା ଦୁଃସ୍ଥିତିର ସଠିକ୍ ଉପସ୍ଥାପନ ସହିତ ଭାରତୀୟ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ଘରେ ଘରେ ପହଞ୍ଚାଇବାର ସଂକଳ୍ପ ନେଇ ପରବର୍ତ୍ତୀ ସମୟରେ 'ସମାଜ' ଏବଂ 'ପ୍ରଜାତନ୍ତ୍ର' ଭଳି ସମ୍ବାଦପତ୍ର ପ୍ରକାଶିତ ହେଲା । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାରେ ସମ୍ବାଦପତ୍ରର ଉଭୟ ସମାନ୍ତରାଳ ଏବଂ ଶୀର୍ଷୀୟ ବୃଦ୍ଧି ଘଟିଲା । ଏ ନିରବଚ୍ଛିନ୍ନ ଜୟଯାତ୍ରା 'ମାତୃଭୂମି' ସହିତ ଆରମ୍ଭ ହେଲା । ଆଜିର 'ଧରିତ୍ରୀ', 'ପ୍ରଗତିବାଦୀ', 'ସମ୍ବାଦ', 'ସମୟ' ଏବଂ 'ପ୍ରମେୟ' ଭଳି ପ୍ରମୁଖ ସମ୍ବାଦପତ୍ର ଆଜି ଉତ୍କଳୀୟ ଜନମାନସକୁ ଆଚ୍ଛନ୍ନ ତଥା ପ୍ରଭାବିତ କରି ରଖିଛନ୍ତି । ସମଗ୍ର ଭାରତବର୍ଷରେ ଏକ ଭାଷାଭିତ୍ତିକ ରାଜ୍ୟ ଭାବରେ ସ୍ୱତନ୍ତ୍ର ଭାବରେ ଗଠିତ ହେବାରେ

ଯେମିତି ଓଡ଼ିଶା ପ୍ରଥମ, ଆମ ସମ୍ବାଦପତ୍ର ସମୂହ ସେହିଭଳି ଆମ ଭାଷାର ମହନୀୟତାକୁ ସଂଘର୍ଷରୁ ସଫଳତାର ଶୀର୍ଷରେ ପହଞ୍ଚାଇବାରେ ଅସାମାନ୍ୟ । ଆଜି ଯଦି ଆମେ ଆମ ଭାଷା, ସାହିତ୍ୟ, ସଂସ୍କୃତି ଏବଂ ପରମ୍ପରାକୁ ନେଇ ଗର୍ବ କରୁଛେ, ଏହାର ପ୍ରମୁଖ ଶ୍ରେୟ ଆମ ଭାଷା ପାଇଁ, ଆମ ପରିଚୟ ପାଇଁ ଆମ ସହିତ ଦୀର୍ଘ କାଳଧରି ସଂଗ୍ରାମ କରି ଆସିଥିବା ଆମ ସମ୍ବାଦପତ୍ରମାନଙ୍କୁ ହିଁ ଯିବ । ଆମ ଭାଷା ଆନ୍ଦୋଳନର ଭାବଧାରାକୁ କଳା ଧଳା ଅକ୍ଷରରେ ନିଜ ପିଠିରେ ସଜେଇ ଓଡ଼ିଶାର କୋଣ ଅନୁକୋଣକୁ ପହଞ୍ଚେଇବାରେ ଏମାନେ ହିଁ ଏକଦା ସାରଥି ସାଜିଥିଲେ, ଆଉ ଆଜି ମଧ୍ୟ ଆମ ସାହିତ୍ୟ, ସଂସ୍କୃତି ତଥା ଐତିହ୍ୟକୁ ପିଢ଼ି ପରେ ପିଢ଼ି ଆଗେଇ ନେବାରେ ବ୍ରତୀ ।

ଆମ ସମ୍ବାଦପତ୍ରମାନଙ୍କର ସମାଜ ନିର୍ମାଣରେ ରହିଥିବା ଏହିଭଳି ଏକ ମହତ୍ୱପୂର୍ଣ୍ଣ ପୃଷ୍ଠଭୂମିରେ ଆମ ସାହିତ୍ୟ ପ୍ରତି ରହିଥିବା ସେମାନଙ୍କର ନୈତିକ ଉତ୍ତରଦାୟିତ୍ୱ ସମ୍ପର୍କରେ ଆଲୋଚନା କରିବା । ବ୍ୟକ୍ତିଗତ ଜୀବନରୁ ଦୁଇଟି ଛୋଟ ଛୋଟ ଉଦାହରଣ ଦେଇ ମୋ ଉପସ୍ଥାପନାର ଯଥାର୍ଥତା ପ୍ରମାଣ କରିବା ପାଇଁ ଉଦ୍ୟମ କରିବି । ମୁଁ ସ୍କୁଲ ଶିକ୍ଷା ଶେଷ କରିବା ପର୍ଯ୍ୟନ୍ତ ଆମ ଭାଷାର 'ଅଭିଧାନ' ଖଣ୍ଡିଏ ଦେଖିବା ସୁଯୋଗ ପାଇନଥିଲି କିମ୍ବା ତା' ଆଧାରରେ କୌଣସି ଶବ୍ଦର ବନାନଗତ ଶୁଦ୍ଧତା ଯାଞ୍ଚ କରିବାର ଅବକାଶ ପାଇନଥିଲି । ଆମ ନିଜର ସୀମିତ ଜ୍ଞାନ, ପାଠ୍ୟପୁସ୍ତକରେ ଶବ୍ଦମାନଙ୍କର ବ୍ୟବହାର ଏବଂ ଆମ ଶିକ୍ଷକମାନଙ୍କ ଦକ୍ଷତା ଉପରେ ଆମର ଭାଷା ସମ୍ପର୍କିତ ଜ୍ଞାନ ପୂର୍ଣ୍ଣ ନିର୍ଭରଶୀଳ ଥିଲା । ଏସବୁ ବାହାରେ ଯେ ଆମ ଭାଷାର ଏକ ଅସୀମିତ ପୃଥିବୀ ରହିଛି, ସେ ସମ୍ପର୍କରେ ଆମର କୌଣସି ଅବଧାରଣା ନ ଥିଲା ।

ଆମ ପାଠ୍ୟପୁସ୍ତକର ପୃଥିବୀ ବାହାରେ କ୍ୱଚିତ କେତେବେଳେ ଆମେ ଥରେ ଅଧେ ଦୈନିକ 'ସମାଜ' ଦେଖିବାର ସୁଯୋଗ ପାଉଥିଲୁ । ସେସମୟରେ ଆମ ଅଞ୍ଚଳରେ କେହି ଏହି ସମ୍ବାଦପତ୍ରର ହକର୍ ନଥିଲେ କିମ୍ବା 'ସମାଜ'ର ପ୍ରାତଃ ସଂସ୍କରଣ ପ୍ରକାଶିତ ହେଉନଥିଲା । ଡାକଘର ମାଧ୍ୟମରେ ନିୟମିତ ଗ୍ରାହକମାନଙ୍କ ନିକଟକୁ ଗୋଟିଏ ଦିନ ତଳର ପୁରୁଣା 'ସମାଜ' ତା' ପରଦିନ ଅପରାହ୍ନରେ ଆସି ପହଞ୍ଚୁଥିଲା । ବେଳେବେଳେ ଡାକଘରୁ ଗ୍ରାହକଙ୍କ ନିକଟକୁ ଏଇ ଖବରକାଗଜର ବାହକ ହୋଇ ଗଲାବେଳେ ଆମେ ଆଗ୍ରହାତିଶଯ୍ୟରେ ସେଇଟିକୁ ଗୋଡଠୁଁ ମୁଣ୍ଡଯାଏଁ ଏକା ନିଶ୍ୱାସକେ ପଢିଯାଉଥିଲୁ ଏବଂ ପୁଣି ଯଥାରୀତି ଭାଙ୍ଗିଭୁଙ୍ଗି ଗ୍ରାହକଙ୍କ ନିକଟରେ ପହଞ୍ଚାଇ ଦେଉଥିଲୁ । ସେଥିରେ ପ୍ରକାଶିତ ହେଉଥିବା ଖବରର ମୂଲ୍ୟ ଆମ ପାଇଁ ବିଶେଷ କିଛି ନ ଥିଲା, ମାତ୍ର ଆମ ପାଠ୍ୟପୁସ୍ତକ ବାହାରେ ଆମ ପାଇଁ ତାହା ଜଣାଅଜଣା ଶବ୍ଦମାନଙ୍କର ଏକ ଅପରିଚିତ ପୃଥିବୀ ଥିଲା । କିଛି ନୂଆ ଶବ୍ଦମାନଙ୍କର ବନାନଗତ ଅଶୁଦ୍ଧି ସେତେବେଳେ ଆମେ ଏଇ ଖବରକାଗଜ ସହାୟତାରେ ସୁଧାରି ନେଉଥିଲୁ । ଆମ ଭିତରେ ଏ ବଦ୍ଧମୂଳ ଧାରଣା ସୃଷ୍ଟି ହେଇଥିଲା ଯେ ଦୈନିକ 'ସମାଜ'ରେ ପ୍ରକାଶିତ ଶବ୍ଦମାନଙ୍କର ବନାନ ହିଁ ସଠିକ୍, ସେଥିରେ ଛପା ଯାଉଥିବା ପ୍ରତ୍ୟେକଟି ଶବ୍ଦ ନିର୍ଭୁଲ । ଏହା ଥିଲା ଏକଦା ଆମ ଉପରେ ଏକ ଦୈନିକ ସମ୍ବାଦପତ୍ରର ପ୍ରଭାବ, ପ୍ରକାରାନ୍ତରେ ଭାଷାକୁ ସଠିକ୍ ଭାବରେ ଆମ ପାଠକମାନଙ୍କ ନିକଟରେ ପହଞ୍ଚାଇବାର ଉତ୍ତରଦାୟିତ୍ୱ । ଆଜି ମଧ୍ୟ ମୋର ସେହି ବିଶ୍ୱାସ 'ସମାଜ' ଭଳି ଆମ ଭାଷାକୁ ମର୍ଯ୍ୟାଦା ଦେଉଥିବା ବେଶ୍ କିଛି ସମ୍ବାଦପତ୍ରମାନଙ୍କ ଉପରେ ଅତୁଟ ରହିଛି ।

ଅନ୍ୟ ଘଟଣାଟି ଆହୁରି ଆନନ୍ଦଦାୟକ, ସ୍ମୃତି ବିଜଡିତ । କିଛି ବର୍ଷତଳେ 'ସମାଜ'ର ସାହିତ୍ୟ ପୃଷ୍ଠାରେ ମୋର ଏକ କବିତା 'ପ୍ରଥମ ବର୍ଷା' ପ୍ରକାଶିତ ହେଲା । ଏକାଧିକ ବନ୍ଧୁ, ଶୁଭେଚ୍ଛୁ ଏବଂ ବିଦଗ୍ଧ ପାଠକମାନଙ୍କ ନିକଟରେ ଏଇଟି ଅନାୟାସରେ ପହଞ୍ଚିଗଲା, ମୁଁ ଖବରକାଗଜର ପୃଷ୍ଠା ଓଲଟେଇ ସାହିତ୍ୟ ପୃଷ୍ଠାର କୋଉ କ'ଣରେ ଛପିଥିବା ମୋ କବିତାଟିକୁ ଦେଖିବା ପୂର୍ବରୁ କଲିକତାରୁ ଫୋନ୍ ଆସିଗଲା, ବିଶାଖାପାଟଣାରୁ ଫୋନ୍ ଆସିଲା, ମତେ ଜାଣିଥିବା ଯିଏ ଯେତେ ନିଜ ଲୋକ ଯେଉଁଠି ଅଛନ୍ତି ଫୋନ୍ କରି ମତେ ବ୍ୟସ୍ତ କରିପକେଇଲେ । ଏଭଳି ସୁଦୂରପ୍ରସାରୀ କ୍ଷମତା କେବଳ ସମ୍ବାଦପତ୍ରର ହିଁ ଅଛି ।

ସାହିତ୍ୟ ପତ୍ରିକା ଏବଂ ସମ୍ବାଦପତ୍ର ଭିତରେ ଏହା ହିଁ ହେଉଛି ଅସଲ ପାର୍ଥକ୍ୟ । ସାହିତ୍ୟ ପତ୍ରିକା ପାଇଁ ଏକ ସ୍ୱତନ୍ତ୍ର ବର୍ଗର ପାଠକ ଅଛନ୍ତି, ଯେଉଁମାନେ ସାହିତ୍ୟରେ ରୁଚି ରଖନ୍ତି ଏବଂ ସାହିତ୍ୟ ପତ୍ରିକା କିଣନ୍ତି । ଏହିଭଳି ପାଠକମାନଙ୍କ ସଂଖ୍ୟା

ଆମ ରାଜ୍ୟରୁ ପ୍ରକାଶ ପାଉଥିବା ସାହିତ୍ୟ ପତ୍ରିକା ଏବଂ ସେଗୁଡିକର ସଂଖ୍ୟା ତଥା ପ୍ରସାରଣ ଭଳି ସୀମିତ । ସେଇଥିପାଇଁ ବୋଧହୁଏ ବହୁଧା ବିଭିନ୍ନ ସାହିତ୍ୟ ପତ୍ରିକାରେ ପ୍ରକାଶିତ ସଂଖ୍ୟାଧିକ ସଫଳ କବି, ଗାଳ୍ପିକ ଏବଂ ନିବନ୍ଧକାର ସାଧାରଣ ଜନମାନସରେ ଅପରିଚିତ, ଅପହଞ୍ଚ ହେଇ ରହିଥାଆନ୍ତି । ନିଜସ୍ୱ କୃତି ପାଇଁ କେବେ ସମ୍ବର୍ଦ୍ଧିତ ହେଲେ ବା ସମ୍ମାନିତ ହେଲେ ସମ୍ବାଦପତ୍ରର ପୃଷ୍ଠା ମାଧ୍ୟମରେ ହିଁ ସେମାନେ ସାଧାରଣ ଜନତାଙ୍କ ଦରବାରରେ ପରିଚିତି ପାଇଁ ଉପସ୍ଥାପିତ ହୁଅନ୍ତି ।

ସମ୍ବାଦପତ୍ର କଥା ଅଲଗା । ଏଠି ସାମାଜିକ ସମସ୍ୟା, ଘଟଣା ଏବଂ ଅଘଟଣ ସହିତ ସପ୍ତାହରେ ଥରେ ସାହିତ୍ୟ ସାଧାରଣ ପାଠକ ପାଇଁ ପରିବେଷଣ କରାଯାଏ । ସାହିତ୍ୟ ଆମ ଚାରିକଡେ ଘଟୁଥିବା ପରିବର୍ତ୍ତନର ଭାବାତ୍ମକ ପରିପ୍ରକାଶ, ଖବରକାଗଜର ଘଟଣା, ଦୁର୍ଘଟଣାର ଅଭାବନୀୟ ଫର୍ଦ୍ଦ ଓଲଟଉଥିବା ସାଧାରଣ ମଣିଷଟିଏ ଅନାୟାସରେ ଏହି ସାହିତ୍ୟିକ ଚେତନାର ଗର୍ଭକୁ ପଶିଯାଇ ତା' ମନଲାଖି କବିତା ବା ଗଳ୍ପଟିଏ ପଢି ଯୁଗପତ୍ ଆନନ୍ଦ ଲାଭ କରେ, କବି ବା ଗାଳ୍ପିକ ସହିତ ତୁରନ୍ତ ମୋବାଇଲ ଫୋନ୍‌ରେ ବାର୍ତ୍ତାଳାପ କରି ତା' ଅନୁଭବ ବ୍ୟକ୍ତ କରେ, ସାଧାରଣ ମଣିଷଟିଏର ଜୀବନ ସଂଘର୍ଷ କାହାଣୀଠୁ ଦୂରରେ ନିଜକୁ ରଖି ଜଣେ ସାହିତ୍ୟାନୁରାଗୀ ଭାବରେ ପରିଚିତ ହେବାକୁ ଭଲପାଏ । ଖବରକାଗଜର ସାହିତ୍ୟ ପୃଷ୍ଠା ମଣ୍ଡନ କରିଥିବା କବି ବା ଗାଳ୍ପିକ ସେହିଭଳି ତୁରନ୍ତ ନିଜ ଲେଖା ପାଇଁ ପ୍ରଶସ୍ତି ପାଇଯାଏ, ପ୍ରଶଂସାରେ ଫାଟି ପଡେ ଏବଂ ସାଧାରଣ ପାଠକର କବି ବା ଲେଖକ ଭାବରେ ନିଜକୁ ପରିଚିତ କରାଇବାରେ ଅପାର ଆନନ୍ଦ ଲାଭ କରେ । ଏ ଅସାଧାରଣ ଦକ୍ଷତା ସମ୍ବାଦପତ୍ରର ରହିଛି, ସାହିତ୍ୟ ପତ୍ରିକାରେ ନାହିଁ । ସମ୍ବାଦପତ୍ରରେ ପ୍ରତି ସପ୍ତାହରେ ସଂଖ୍ୟାଧିକ କବି, ଲେଖକ, ପ୍ରାବନ୍ଧିକ, ସ୍ତମ୍ଭକାର ନିଜସ୍ୱ ଚିନ୍ତା ଚେତନାର ଆଖ୍ୟାନ ଅଗଣିତ ପାଠକମାନଙ୍କ ଆଗରେ ବାଢନ୍ତି, ତାରକା ଖଚିତ ଆକାଶ ଭଳି ଖବରକାଗଜ ପୃଷ୍ଠାର କାନ୍‌ଭାସ୍ କାହିଁ କେତେ ଗଳ୍ପ କବିତାର ସ୍କେଚରେ ଚଳଚଞ୍ଚଳ ହେଇଉଠେ, ନିୟମିତ ବ୍ୟବଧାନରେ ଏଇଭଳି ଲେଖକ, ପାଠକ, ସାହିତ୍ୟକୃତି ଏବଂ ପାଠକୀୟ ଆଦୃତିରେ କୋଳାହଳମୟ ସାହିତ୍ୟ ପୃଥିବୀର ଝଲକ ଦିଶିଯାଏ, ଯାହାର ପଟ୍ଟାନ୍ତର ନାହିଁ ।

ହେଲେ ପ୍ରାଚୁର୍ଯ୍ୟ ଭିତରେ ଯେମିତି ନିଜସ୍ୱ ସତ୍ତା ହଜିଯିବାର ଭୟ ସଦାସର୍ବଦା ରହିଥାଏ, ଆମ ସମ୍ବାଦପତ୍ରରେ ସାହିତ୍ୟ ପୃଷ୍ଠା ମଣ୍ଡନ କରୁଥିବା ସଂଖ୍ୟାଧିକ କବି, ଗାଳ୍ପିକମାନଙ୍କର ଅବିଳମ୍ବେ ବିଲୁପ୍ତ ହୋଇଯିବାର ଆଶଙ୍କା ସବୁବେଳେ ରହିଥାଏ । ଖବରକାଗଜରେ ମୋ କବିତା ପ୍ରକାଶିତ ହେଲା, ମୁଁ ଖୁସି ହେଲି, ମତେ ଜାଣିଥିବା ଲୋକଙ୍କଠୁ ଆଦର ମିଳିଲା, ମୋର କିଛି ପ୍ରଶଂସକ ସାମୟିକ ଭାବରେ ସୃଷ୍ଟି ହେଲେ, ସାହିତ୍ୟାକାଶରେ ଦୂର ଦିଗନ୍ତର ତାରା ଭଳି ମୁଁ ମୋ ସ୍ଥିତି ଜାହିର କଲି, ଭଲକଥା । ହେଲେ ମତେ ଆତ୍ମପ୍ରକାଶିତ ହେବାର ସୁଯୋଗ ଦେଇଥିବା ସମ୍ବାଦପତ୍ର ଆର ସପ୍ତାହରେ ମୋ ଭଳି ଆଉ ଜଣକୁ ଆପଣେଇଲା, ମୁଁ ବିସ୍ମୃତିର ଗର୍ଭକୁ ଠେଲି ହେଇଗଲି ମୋରି ଭଳି ପ୍ରତି ସପ୍ତାହରେ ଖବରକାଗଜର ସାହିତ୍ୟ ପୃଷ୍ଠା ମଣ୍ଡନ କରୁଥିବା ସଂଖ୍ୟାଧିକ ସାହିତ୍ୟ ସ୍ରଷ୍ଟାଙ୍କ ଭଳି । ଆମ ସମ୍ବାଦପତ୍ରମାନେ ତାଙ୍କ ସାହିତ୍ୟ ପୃଷ୍ଠାରେ ସ୍ଥାନିତ ଗଳ୍ପ, କବିତାସମୂହକୁ ବୋଧହୁଏ ସମ୍ବାଦପତ୍ରରେ ପ୍ରକାଶିତ ଘଟଣା, ଦୁର୍ଘଟଣା ଭଳି ଏକ ଅଭାବନୀୟ ଘଟଣାକ୍ରମ ବୋଲି ଧରି ନିଅନ୍ତି ଏବଂ ପୁରୁଣା ଖବର ଭଳି ସେଗୁଡିକୁ ଅନାୟାସରେ ଏଡେଇ ଯାଆନ୍ତି ।

କୌଣସି ସମ୍ବାଦପତ୍ର ବର୍ଷ ଶେଷରେ ତାଙ୍କ ସମ୍ବାଦପତ୍ରରେ ପ୍ରକାଶିତ ଲେଖାଗୁଡିକର ଏକ ସଂକଳନ ପ୍ରକାଶ କରିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି ନାହିଁ, ଯାହା ଆମ ଭାଷା ଏବଂ ସାହିତ୍ୟକୁ ଅବଶ୍ୟ ଅପାର ସମୃଦ୍ଧି ଆଣି ଦିଅନ୍ତା । ବର୍ଷ ଶେଷରେ ଗଳ୍ପ, କବିତା, ପ୍ରବନ୍ଧ ତଥା ସ୍ତମ୍ଭଗୁଡିକର ଅଲଗା ଅଲଗା ସଂକଳନ, ସେଥି ସହିତ ଲେଖକଙ୍କର ସଂକ୍ଷିପ୍ତ ପରିଚୟ, ଯୋଗାଯୋଗ ଠିକଣା ଏବଂ ବାର୍ତ୍ତାଳାପ ପାଇଁ ଟେଲିଫୋନ୍ ନମ୍ବର ଏବଂ ସର୍ବୋପରି ଫଟୋଟିଏ ରହିପାରିଲେ ଆମ ସାହିତ୍ୟର ମହତ୍ୱପୂର୍ଣ୍ଣ ଅଭିବୃଦ୍ଧି ହାସଲ ହୋଇପାରନ୍ତା । ଖବରକାଗଜ ପାଇଁ ଲେଖୁଥିବା ଲେଖକମାନେ ଆଉ ଏଣେତେଣେ ପୁରୁଣା ଖବରକାଗଜ ଭଳି ଫୋପଡା ନ ହୋଇ ଏହିଭଳି ଗୁରୁତ୍ୱପୂର୍ଣ୍ଣ ସଂକଳନରେ ସ୍ଥାନଟିଏ ପାଇପାରନ୍ତେ । ସାହିତ୍ୟିକମାନଙ୍କ ଭିତରେ ଭାବ ବିନିମୟ ହୁଅନ୍ତା । ପ୍ରକାରାନ୍ତରେ ଆମ ଭାଷା ଏବଂ ଆମ ସାହିତ୍ୟର ମର୍ଯ୍ୟାଦା ବୃଦ୍ଧି ହୁଅନ୍ତା, ଆମ ସାହିତ୍ୟ ପ୍ରତି ଆମ ସମସ୍ତଙ୍କର ପ୍ରତିବଦ୍ଧତା

ପ୍ରମାଣିତ ହୁଅନ୍ତା । ଆଜି ଓଡ଼ିଶାରୁ ପ୍ରକାଶ ପାଉଥିବା ସବୁ ସମ୍ବାଦପତ୍ର ଏକଥା କରିବା ପାଇଁ ସମର୍ଥ, ଚାହିଁଲେ ଅନାୟାସରେ ଏହା କରିପାରନ୍ତେ । ଆମ ଭାଷା ଏବଂ ସାହିତ୍ୟ ଆଜି ଏଭଳି ଏକ ମହତ୍ ଉଦ୍ୟମର ଅପେକ୍ଷା ରଖିଛି ।

ଓଡ଼ିଶାର ସଂଖ୍ୟାଧିକ ସମ୍ବାଦପତ୍ର ପ୍ରକାଶନ ସଂସ୍ଥା ସପ୍ତାହ ଶେଷରେ ସ୍ୱତନ୍ତ୍ର ପତ୍ରିକା, ସାପ୍ତାହିକୀ ଏବଂ ସ୍ଥଳ ବିଶେଷରେ ସାହିତ୍ୟ ପତ୍ରିକା ମଧ୍ୟ ପ୍ରକାଶ କରନ୍ତି । ସ୍ୱତନ୍ତ୍ର ସପ୍ତାହାନ୍ତ ପତ୍ରିକା ଏବଂ ସାପ୍ତାହିକୀରେ ସାହିତ୍ୟ ପୃଷ୍ଠା ଅବଶ୍ୟ ରହିଥାଏ, ଯାହା ଆମ ସାହିତ୍ୟରେ ପରୀକ୍ଷାନିରୀକ୍ଷା ଆକାରରେ ପ୍ରକାଶିତ ହେଉଥିବା ମିନି କବିତା, ଅଣୁ ଗଳ୍ପ ପ୍ରଭୃତି ବହୁ ସଂଖ୍ୟାରେ ପ୍ରକାଶ କରନ୍ତି ।

'ଧରିତ୍ରୀ' ଭଳି ସମ୍ବାଦପତ୍ର ପ୍ରକାଶନ ସଂସ୍ଥାରୁ 'ସାହିତ୍ୟାୟନ' ଶୀର୍ଷକ ଏକ ପାକ୍ଷିକ ସାହିତ୍ୟ ପତ୍ରିକା ପ୍ରକାଶନ ଏ ଦିଗରେ ଅନ୍ୟତମ ମହତ୍ ଉଦ୍ୟମ । ମାସିକ ସାହିତ୍ୟ ପତ୍ରିକା ପ୍ରକାଶନ କ୍ଷେତ୍ରରେ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଦ୍ୱାରା ପ୍ରକାଶିତ ସାହିତ୍ୟ ପତ୍ରିକା 'ଝଙ୍କାର' ଏକ ସୁନାମଧନ୍ୟ ପ୍ରକାଶନର ମାନ୍ୟତା ବହନ କରିଥିବା ବେଳେ ସମ୍ବାଦପତ୍ର 'ସମ୍ବାଦ' ପ୍ରକାଶନ ସଂସ୍ଥାର 'କଥା' ଠାରୁ 'ସର୍ବସାଧାରଣ' ଖବର କାଗଜର 'ଶିଶିର' ପର୍ଯ୍ୟନ୍ତ ସାହିତ୍ୟର ଏ ଜୟଯାତ୍ରା ଆଜି ଅବ୍ୟାହତ । ଆମ ଭାଷା ତଥା ସାହିତ୍ୟକୁ ସମୃଦ୍ଧ କରିବାରେ ଏଇ ପ୍ରକାଶନ ସମୂହର ଅବଦାନ ଅମୂଲ୍ୟ । ଏହିଭଳି ପ୍ରକାଶନ ସମୂହ ନିୟମିତ ସାହିତ୍ୟ ପତ୍ରିକାଠାରୁ ଭିନ୍ନ । ଏକ ସମ୍ବାଦପତ୍ର ପ୍ରକାଶନ ସଂସ୍ଥାରୁ ପ୍ରକାଶିତ ହେଉଥିବାରୁ ଏବଂ ସ୍ଥଳ ବିଶେଷରେ ସମ୍ବାଦପତ୍ର ସହିତ ଏକ ବିଶ୍ୱସନୀୟ ବିତରଣ ବ୍ୟବସ୍ଥା ଜରିଆରେ ପାଠକମାନଙ୍କ ନିକଟରେ ପହଞ୍ଚୁଥିବାରୁ ଏହାର ପାଠକୀୟ ଗ୍ରହଣୀୟତା ଅଧିକ । ଆମର ଏଠିକାର ପ୍ରାୟ ସମସ୍ତ ପତ୍ରପତ୍ରିକା ବସ୍ତୁତଃ ବିଜ୍ଞାପନ ଉପରେ ନିର୍ଭରଶୀଳ ହୋଇଥିଲା ବେଳେ ଖବରକାଗଜ ପ୍ରକାଶନ ସଂସ୍ଥା ସହିତ ସଂଶ୍ଲିଷ୍ଟ ହୋଇଥିବାରୁ ଏଗୁଡିକୁ ବିଜ୍ଞାପନ ପାଇଁ ସଂଘର୍ଷ କରିବାକୁ ପଡେ ନାହିଁ । ଅଧିକାଂଶ ସ୍ଥଳରେ ଏଗୁଡିକ ନ୍ୟୁଜପ୍ରିଣ୍ଟରେ ଛପାଯାଉଥିବାରୁ ଖବରକାଗଜ ଖଣ୍ଡେ ଭଳି ଏଗୁଡିକ ପାଇଁ ପାଠକକୁ ଅଧିକ ମୂଲ୍ୟ ଦେବାକୁ ପଡେ ନାହିଁ । ଏସବୁ ଦୃଷ୍ଟିରୁ ଏଭଳି ପ୍ରକାଶନ ଆମ ସାହିତ୍ୟ ପାଇଁ ଶୁଭଙ୍କର, ପାଠକ ପାଇଁ ସହଜଲଭ୍ୟ ଏବଂ ଲେଖକ ପାଇଁ ବହୁଳ ପରିଚିତି ତଥା ପାଠକୀୟ ସ୍ୱୀକୃତିର ଏକ ପ୍ରକୃଷ୍ଟ ମାଧ୍ୟମ । ହେଲେ ଏ କ୍ଷେତ୍ରରେ ମଧ୍ୟ ସେହି ଆଶଙ୍କା ଆମ ସାମଗ୍ରିକ ସାହିତ୍ୟ ପୃଥିବୀକୁ କବଳିତ କରିରଖିଥାଏ । ଏଠି ବି ଲେଖା ସମୟାନ୍ତରରେ ଅଦୃଶ୍ୟ ହୋଇଯାଏ, ପତ୍ରିକା ପୃଷ୍ଠାରୁ ଲେଖକ ନିରୁଦ୍ଦିଷ୍ଟ ହୋଇଯାଆନ୍ତି, ବଣ ମଲ୍ଲୀ ଭଳି ନିଜସ୍ୱ ଗୁଣରେ ମହନୀୟ ହୋଇ ଏଗୁଡିକ ସାହିତ୍ୟ ପୃଷ୍ଠା ମଣ୍ଡନ କରନ୍ତି ଏବଂ ଅକାଳରେ ଝଡି ପଡନ୍ତି ।

ପ୍ରକାଶନ ଶିଳ୍ପରେ ବୈପ୍ଳବିକ ପରିବର୍ତ୍ତନ, ମୁଦ୍ରଣ କୌଶଳରେ ଦ୍ରୁତ ଅଭିବୃଦ୍ଧି ଏବଂ ସୋସିଆଲ୍ ମିଡିଆର ବ୍ୟବହାର ଆମ ଭାଷା, ଆମ ସାହିତ୍ୟକୁ ଏବେ ବେଶ୍ ଚଳଚଞ୍ଚଳ କରିଛି । ଏବେ ସବୁଠି ଲେଖା ଆଉ ଲେଖକଙ୍କର ଅସମ୍ଭବ ଭିଡ । ଆପଣ ଖବରକାଗଜ ଓଲଟାନ୍ତୁ, ସାପ୍ତାହିକୀ ଦେଖନ୍ତୁ, ପତ୍ରିକା ଖୋଲନ୍ତୁ ସବୁଠି ଆମ ଲେଖକଙ୍କ ଗହଳି, ସବୁ ପୃଷ୍ଠାରେ ତାଙ୍କ ମାନସ ମନ୍ଥନର ସ୍ୱାକ୍ଷର । ସୋସିଆଲ ମିଡିଆର ପୃଷ୍ଠା ଖୋଲନ୍ତୁ, ଦେଖିବେ ସଂଖ୍ୟାଧିକ ଯୁବ କବି, ଲେଖକ ନିଜ ଭାଷା, ଭାବକୁ ଅନବରତ ଓ୍ୱେବ୍-ଡିଜାଇନିଂ ସହିତ ପାଠକଙ୍କ ଆଗରେ ଉପସ୍ଥାପନ କରୁଛନ୍ତି । କେତେକ ଇଂଟରନେଟ୍ ସାହିତ୍ୟ ପତ୍ରିକା ସବୁଦିନ ଗଦା ଗଦା କବିତା, ଗଳ୍ପ, ଭାବୋଦ୍ଦୀପକ ଉକ୍ତି, ଆଲେଖ୍ୟ ଏବଂ ମତାମତ ପାଠମାନଙ୍କ ଆଗରେ ରଖୁଛନ୍ତି । କିଛି ପୁରୁଖା କବି ଲେଖକ ମଧ୍ୟ ଏହି ଆକାଶୀ ଉଭବରେ ଆମ ଯୁବବର୍ଗର ଲେଖକଙ୍କ ସହିତ ସାମିଲ ହେଇଛନ୍ତି, ସେମାନଙ୍କ ସହିତ ଭାବ ବିନିମୟ କରୁଛନ୍ତି, ଲେଖୁଛନ୍ତି, ସେୟାର (ବଣ୍ଟାବଣ୍ଟି) କରୁଛନ୍ତି, ସାହିତ୍ୟ ସାଧନାରେ ଅନବରତ ଲାଗିଛନ୍ତି । ମତେ ତ ଲାଗୁଛି ଆମ ସାହିତ୍ୟରେ ଏବେ ଏକ ଅସାମାନ୍ୟ ବିପ୍ଳବ ଚାଲିଛି, ଭାଷାର ଅଭିବୃଦ୍ଧି ପାଇଁ ଏକ ନିରବଚ୍ଛିନ୍ନ ଉଦ୍ୟମ ଚାଲିଛି । ସବୁଠି ଆମ ଭାଷାର ମହନୀୟତା, ପରାକାଷ୍ଠା ବଜାୟ ରଖିବା ପାଇଁ ପ୍ରଚେଷ୍ଟା ଜାରି ରହିଛି । ମାତ୍ର ଏସବୁ ପ୍ରାଚୁର୍ଯ୍ୟ ଭିତରେ ଆମକୁ ଆମର ସେହି ବହୁ ଚର୍ଚ୍ଚିତ ଯୁଗଯୁଗର ସଂକଟ ପୂର୍ବବତ୍ ମାଡିବସି ରହିଛି ।

ଆମର ସବୁଠୁ ବଡ ସଂକଟ ହେଲା ଆମ ସଭିଙ୍କର ସୀମିତ ସାହିତ୍ୟ ଜ୍ଞାନ । ସେଥିପାଇଁ ଆମେ ଯେତିକି

ପରିମାଣରେ ଦାୟୀ, ସେତିକି ଦାୟୀ ଆମ ଭାଷା ସାହିତ୍ୟକୁ ଆଗକୁ ଆଗକୁ ଘେନିଯିବା ପାଇଁ ଅହରହ ଉଦ୍ୟମ କରୁଥିବା ଆମ ସମ୍ବାଦପତ୍ର ଏବଂ ଆମ ଅଗଣିତ ପତ୍ରପତ୍ରିକା ସମୂହ । ମହାକାବ୍ୟ ମହାଭାରତ ପଢ଼ିଲା ଭଳି ଆମ ସମସ୍ତଙ୍କ ଅବସ୍ଥା । ମୁଁ ମହାଭାରତକୁ ତାହାର ମହାକାବ୍ୟିକ ମୂଲ୍ୟବୋଧ ପାଇଁ ପଢ଼ିପାରୁଥାଏ, ମୋ ଧର୍ମୀୟ ଚେତନାକୁ ପରିପୁଷ୍ଟ କରିବା ପାଇଁ ପଢୁଥାଏ କିମ୍ବା ତାହାର କଥାବସ୍ତୁରେ ଆଗ୍ରହୀ ହୋଇ ପଢୁଥାଏ, ମହାଭାରତର ଚରିତ୍ରମାନଙ୍କ ସମ୍ପର୍କରେ ଆଲୋଚନା ହେଲାବେଳେ ମୁଁ କଷ୍ଟେ ମଷ୍ଟେ ପାଣ୍ଡବ ପାଞ୍ଚ ଭାଇ ଏବଂ ପ୍ରମୁଖ କୌରବ ଦୁଃଶାସନ, ଦୁର୍ଯ୍ୟୋଧନ ପ୍ରଭୃତିଙ୍କ ନାମ ସ୍ମରଣ କରିଦେଇପାରେ । ହେଲେ ଶହେ ଭାଇଙ୍କ ନାମ ଉଚ୍ଚାରଣ କରିବା କଥା କହିଲେ ମୁଁ କଷ୍ଟେ ମଷ୍ଟେ ବହୁଳ ଭାବରେ ବ୍ୟବହୃତ ନାଁରୁ କେତୋଟି କହିଦେଇ ଚୁପ୍ ରହିଯିବି । ମହାଭାରତରେ ଅନ୍ୟ ଭାଇମାନଙ୍କର ନାମ ଏବଂ ଚାରିତ୍ରିକ ବର୍ଣ୍ଣନା ଯେ ନାହିଁ ତାହା ନୁହେଁ, ମୋ ମୂଢ଼ତା ମହାଭାରତର ଯେତେସବୁ ଚରିତ୍ର ଆଉ ମୋ ଭିତରେ ଏକ ଦୃଢ଼ ପ୍ରାଚୀର ସଦୃଶ୍ୟ ଦଣ୍ଡାୟମାନ ହୋଇ ରହିଛି, ଏଣୁ ମୁଁ 'ଯେତେ ପଢ଼ିଲେ ଭାଗବତ' ଭଳି ମହାଭାରତର କୌରବମାନଙ୍କ ନାମ ଉଚ୍ଚାରଣ କରିବା ପାଇଁ ଅସମର୍ଥ ।

ଆମ ଚାରିକଡେ ଗଦା ଗଦା ସମ୍ବାଦପତ୍ର, ସାହିତ୍ୟ ପତ୍ରିକା ଏବଂ ସମାଲୋଚନା ପୁସ୍ତିକା । ଆମ ସାହିତ୍ୟ ଏବଂ ଭାଷାକୁ ନେଇ ଅନବରତ ଗବେଷଣା ଚାଲିଛି । ମାତ୍ର ଆମ ରାଜ୍ୟରେ କେତେଜଣ କବି, ଲେଖକ, ପ୍ରାବନ୍ଧିକ, ସ୍ତମ୍ଭକାର, ଗବେଷକ, କଥାକାର ଅଛନ୍ତି ସେକଥା କେହି କହିପାରିବେ ନାହିଁ । ମତେ ପଚାରିଲେ ମୁଁ ପ୍ରତି ବର୍ଗରୁ ପାଞ୍ଚ ସାତ ଜଣକ ନାଁ କହି ନୀରବି ଯିବି, ଆଉ କେହି ଦଶ, କୋଡିଏ ପର୍ଯ୍ୟନ୍ତ ଯାଇ ପାରନ୍ତି, ତା'ପରେ ଛତୁ ଫୁଟିବା ପ୍ରସଙ୍ଗ ଆରମ୍ଭ ହେଇଯିବ । ଯୁକ୍ତି ହେଉଚି, ଏବେ ତ ଗଦା ଗଦା ପତ୍ରିକା, ଖବରକାଗଜ ପ୍ରକାଶିତ ହେଉଛି । ଛତୁ ଫୁଟିଲା ଭଳି କବି, ଗାଳ୍ପିକ, ପ୍ରାବନ୍ଧିକ ସବୁଠି ଲେଖି ଚାଲିଛନ୍ତି । ତା' ହିସାବ କିଏ ରଖୁଚି ? ଆମେ ମୌଳିକ ସୃଜନରେ ଧ୍ୟାନ ଦେବୁ ନା କିଏ କେଉଁଠି ଲେଖିଲା, ନ ଲେଖିଲା ସେ ବିଷୟରେ ଚକ୍ଷୁ କୁଟୁଥିବୁ ? ଏହା ହିଁ ହେଉଛି ବିଡମ୍ବନା । ଗୋଟିଏ ପଟେ ଆମେ ନିରବଚ୍ଛିନ୍ନ ଭାବରେ ସାହିତ୍ୟ ସୃଷ୍ଟି କରି ଆମ ଭାଷାକୁ ସମୃଦ୍ଧ କରୁଛୁ, ଆମ ସାହିତ୍ୟକୁ ସମୁଜ୍ଜ୍ୱଳ ସ୍ତରକୁ ଉନ୍ନୀତ କରୁଛୁ । ଅନ୍ୟ ପକ୍ଷରେ ଭାଷା ଏବଂ ଭାବର ଏହି ଧୁରୀଣ ବିନ୍ଧାଣିମାନଙ୍କୁ ଚିହ୍ନଟ କରିବାର, ଏକତ୍ରିତ କରି ଆଗାମୀ ପିଢ଼ି ପାଇଁ ସାଇତି ରଖିବାର କଷଟି ପଥର ଆମ ପାଖରେ ନାହିଁ । ଆମ ଭାଷାର କୋଣାର୍କ ଆମେ ଗଢ଼ିବା ପାଇଁ ଆନ୍ତରିକ ଭାବରେ ଉଦ୍ୟମ କରୁନାହୁଁ । ଆମ ସାହିତ୍ୟକୁ ସମୃଦ୍ଧ କରୁଥିବା ଏଇ ଅନନ୍ୟ ମାନସମାନେ ସବୁକାଳେ ବାରଶହ ବଢେଇଙ୍କ ଭଳି, ନାଁ ନାହିଁ, ଗାଁ ନାହିଁ କି ଠିକଣା ବି ନାହିଁ । କ'ଣ କରୁଛ ? ଆମ ଭାଷାର କୋଣାର୍କ ଗଢୁଛୁ । ଆମ ଭିତରୁ କାହାକୁ ଜଣକୁ କେବେ କିଏ 'ଧର୍ମପଦ' ବୋଲି ହୁଏତ ଚିହ୍ନଟ କରିପାରେ, ନ ହେଲେ ଏ ବାରଶହ ବଢେଇଙ୍କର କିଛି ପରିଚୟ ନାହିଁ ।

ଯେଉଁ ଘର ଯେତେ ଅଧିକ ସାଜସଜ୍ଜାରେ ପରିପୂର୍ଣ୍ଣ, ସେ ଘର ସେତେ ଅଧିକ ସୁନ୍ଦର । ସବୁବେଳେ ସଜଡା ହେଉଥିବା ଘର ସବୁକାଳେ ସୁନ୍ଦର । ଯେଉଁ ଭାଷାରେ ଏହାର ସମୃଦ୍ଧି ନିମନ୍ତେ କାର୍ଯ୍ୟ କରୁଥିବା ବ୍ୟକ୍ତି ବିଶେଷମାନଙ୍କର ଦସ୍ତାବିଜ୍ ଯେତେ ଶୃଙ୍ଖଳିତ, ସେ ଭାଷା ସେତେ ସମୃଦ୍ଧ । ଯେଉଁ ସାହିତ୍ୟ ତା' ସାହିତ୍ୟିକମାନଙ୍କୁ ସବୁବେଳେ ପୁରୋଭାଗରେ ରଖିଥାଏ, ସେ ସାହିତ୍ୟ ସେତେ ଅଭିବୃଦ୍ଧିସମ୍ପନ୍ନ, ସେତିକି ଅଗ୍ରଗାମୀ ।

ସାହିତ୍ୟିକମାନଙ୍କୁ ନେଇ ଏତାଦୃଶ ଉଦ୍ୟମ ଏଯାବତ୍ ଆମ ରାଜ୍ୟରେ ଆରମ୍ଭ ହେଲା ନାହିଁ । ସମ୍ବାଦପତ୍ରମାନେ ଇଚ୍ଛା କଲେ ଏକ ବିଜ୍ଞାପନ ମାଧ୍ୟମରେ ଏକଥା କରିପାରନ୍ତେ । ଯିଏ ଖଣ୍ଡିଏ କବିତା ରଚନା କରିଥାନ୍ତୁ, ବା ଯିଏ 'ଶ୍ରୀରାଧା' ଭଳି ଆମ ସାହିତ୍ୟର ମହାର୍ଘ୍ୟ ରଚନା କରିଥାନ୍ତୁ, ଆମେ ଜାଣିବା ଦିନଠୁ ଆମ ସାହିତ୍ୟର ଇତିହାସର ଗର୍ଭ ଖୋଦନ କରି ଆଜିଯାଏ ଆମ ସାହିତ୍ୟକୁ ସବୁବର୍ଗରେ ସମୃଦ୍ଧ କରିଥିବା ସାହିତ୍ୟିକମାନଙ୍କର ଏକ ସମୟାନୁକ୍ରମୀ ନାମ ପ୍ରଦର୍ଶିକା ପ୍ରସ୍ତୁତ କରାଯାଉ, ଯେଉଁଥିରେ ସାହିତ୍ୟିକମାନଙ୍କର ପରିଚୟ ରହୁ, ତାଙ୍କ କୃତି ସମୂହର ସଂକ୍ଷିପ୍ତ ବିବରଣୀ ରହୁ । ଏହାକୁ ପୁସ୍ତକ ଆକାରରେ ରଖାଗଲେ, ସମୟାନ୍ତରରେ ଏହାର ଅଧୁନାତନ କରାଯାଉ । ଏକ ଉତ୍ସର୍ଗୀକୃତ ୱେବସାଇଟ୍‌ରେ ଏହି ତଥ୍ୟ ସ୍ଥାନିତ କରି ଆମ ସାହିତ୍ୟିକମାନଙ୍କୁ ନିଜ ସମ୍ପର୍କରେ ତଥ୍ୟ ଅପ୍‌ଲୋଡ୍ କରିବାର ସୁଯୋଗ ଦେଲେ ମଧ୍ୟ ଏହା ସବୁବେଳେ ସମୟାନୁକ୍ରମୀ ହୋଇ ରହିପାରିବ ।




ଏ ଭଳି ଉଦ୍ୟମ ଯେ କେହି ଚାହିଁଲେ ଆରମ୍ଭ କରିପାରିବେ, ସମ୍ବାଦପତ୍ରମାନେ ସମସ୍ତଙ୍କ ନିକଟରେ ପହଞ୍ଚି ପାରିବାର ସାମର୍ଥ୍ୟ ରଖୁଥିବାରୁ ପ୍ରତ୍ୟେକ ସାହିତ୍ୟିକଙ୍କ ନିକଟରୁ ଏ ସମ୍ବନ୍ଧୀୟ ତଥ୍ୟ ସଂଗ୍ରହ କରିବାରେ ଏକ ଉତ୍କୃଷ୍ଟ ମାଧ୍ୟମ ହୋଇପାରିବେ । ଆମ ରାଜ୍ୟର ପ୍ରତି କୋଣ ଅନୁକୋଣରେ କେହି ନା କେହି ଜଣେ ଆମ ଭାଷା, ଆମ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ ସଦାସର୍ବଦା ଉଦ୍ୟମରତ । ଦୁଃଖ ଖାଲି ଯାହା ତାଙ୍କୁ ବା ତାଙ୍କ ସାହିତ୍ୟକୃତିକୁ ଜାଣିବାର ପ୍ରକୃଷ୍ଟ ସୁଯୋଗ ଏବଂ ଉପଯୁକ୍ତ ମାଧ୍ୟମ ଆମ ନିକଟରେ ଅଭାବ ।

ଏ ତଥ୍ୟ ସଂକଳିତ ହେଲେ ଓଡ଼ିଆ ଭାଷା ଏବଂ ସାହିତ୍ୟର ଅନେକ ଅଜଣା ପୃଷ୍ଠା ଆମ ସମ୍ମୁଖରେ ଉନ୍ମୋଚିତ ହେବ । ଯେମିତି ଆମ ରାଜ୍ୟରେ କେତେ ଜଣ କବି ଅଛନ୍ତି ଓ ଆଜିଯାଏଁ କେତେ କବିତା ରଚନା କରାଯାଇଛି ? ରାଜ୍ୟ ଭିତରେ, ଦେଶ ଭିତରେ ଏବଂ ପ୍ରବାସରେ କେତେ କବି ଆମ ଭାଷାରେ କେତେ କବିତା ଆଜିଯାଏଁ ରଚନା କରିଛନ୍ତି ? ସେମିତି ସାହିତ୍ୟର ସବୁ ବିଭାଗ ପାଇଁ । ଏ ତଥ୍ୟ ଜାଣିଲେ ହୁଏତ ଆମ ଛାତି ଗର୍ବରେ ଫୁଲି ଉଠିବ, ଆମେ ଆମର ଅଗଣିତ ସାହିତ୍ୟିକ ଏବଂ ତାଙ୍କ ଅସାମାନ୍ୟ ସାହିତ୍ୟ ସମ୍ଭାରରେ ହୁଏତ ସର୍ବଶ୍ରେଷ୍ଠ ବୋଲି ବିବେଚିତ ନ ହେବା, ସେ କଥା କିଏ କହିପାରିବ !

ଆଜି ବି ବିଭିନ୍ନ ସମ୍ବାଦପତ୍ରର ସାହିତ୍ୟ ବିଭାଗରେ ବହୁବାର ପ୍ରକାଶିତ କବି, ଗାଳ୍ପିକ ନିଜ ଲେଖାର ପେପର କଟିଂ ଧରି ଏଠୁ ସେଠିକି ଧାଉଁଛନ୍ତି, ଏଇଥିପାଇଁ ଯେ ତାଙ୍କ ଜୀବଦ୍ଦଶାରେ ତାଙ୍କ ନିଜ ଲେଖାର ଏକ ସଂକଳନ ପାଞ୍ଚ ପଚିଶ କପି ହେଇ କେମିତି ବାହାରି ପଡୁ । ଦୁନିଆ ନ ଜାଣୁ, ଆଉ କେହି ନ ଖୋଜୁ ନ ଲୋଡୁ ପଛେ, ନିଜ ଆତ୍ମସନ୍ତୋଷ ଆଉ ପରିବାର ଲୋକଙ୍କ ପାଇଁ ନିଜର ସାରସ୍ୱତ ପରିଚୟଟିଏ ଛାଡିଯିବା ପାଇଁ । ଏବେ ପ୍ରକାଶନ ସଂସ୍ଥାମାନଙ୍କର ସଂଖ୍ୟା କମ୍ ନାହିଁ ଆମ ରାଜ୍ୟରେ, ଲେଖକମାନଙ୍କର ଭିଡ ବି କମ୍ ନାହିଁ ପ୍ରକାଶକମାନଙ୍କ ପାଖରେ । ଏଥିରେ ଅତିଷ୍ଠ ହୋଇ କିଛି ସାହିତ୍ୟିକ ନିଜେ ନିଜର ବହି ଛାପି ପକାଉଛନ୍ତି, ନିଜେ ନିଜ ପାଇଁ ଆଉ ଚିହ୍ନା ପରିଚିତ ଲୋକଙ୍କ ପାଇଁ, ପ୍ରକାଶକର ଭୂମିକା ବି ତୁଲେଇ ନେଉଛନ୍ତି । ମୁଁ ଏକଦା ଭେଟିଥିଲି ଜଣେ ଅଶୀତିପର ଲେଖକଙ୍କୁ ନିଜ ଲେଖା ପ୍ରକାଶ କରିବା ପାଇଁ ସଂଘର୍ଷ କରୁଥିବା ଅବସ୍ଥାରେ । କହିଲେ, କେହି ପ୍ରକାଶକ କବିତା ବା ଗଳ୍ପ ସଂକଳନ ବାହାର କରିବା ପାଇଁ ଏତେ ଆଗ୍ରହ ପ୍ରକାଶ କରୁନାହାନ୍ତି । କହୁଛନ୍ତି ଯଦି ଉପନ୍ୟାସ ଅଛି ଆଣନ୍ତୁ, ଛପେଇବା । ମୁଁ ଜଣେ ସରକାରୀ ଚାକିରିରୁ ଅବସର ନେଇଥିବା ଲୋକ, କମ୍ ଦରମା ପାଉଥିଲି ଚାକିରି କାଳରେ, ଏବେ ପେନସନ୍ ମିଳୁଛି କମ୍ । ଏପଟେ ବଞ୍ଚିବାର ହାରାହାରି ଅବଧି ବଢି ଯାଇଛି ବୋଲି ମରି ହେଉନି, ହେଲେ ପେନ୍‌ସନ୍ ପଇସାସବୁ ଔଷଧ କିଣାରେ ଯାଉଚି । ପୁଅମାନେ ଚାକିରି ବାକିରି କରି ଭଲରେ ଅଛନ୍ତି, ହେଲେ ମୋ ବହି ଛପେଇବା ଚିନ୍ତାଧାରାକୁ ନିରର୍ଥକ ବୋଲି ମନେ କରୁଛନ୍ତି । ସାହିତ୍ୟ ଏକାଡେମୀର ଦ୍ୱାରସ୍ଥ ହେଇଥିଲି, ମୁଁ ଦୁଃସ୍ଥ ପର୍ଯ୍ୟାୟଭୁକ୍ତ ଲେଖକ ନୁହେଁ ବୋଲି ମୋ ବହି ମଧ୍ୟ ସେଠି ଛପା ହେବାର ସମ୍ଭାବନା ଆଦୌ ନାହିଁ । ମତେ ଯାହା ଲାଗିଲାଣି, ମଶାଣିରେ ଏସବୁ ଲାଗିବ ମୋର ପୋଡା ହେବା କାମରେ ! ଆମ ସମ୍ବାଦପତ୍ର ପ୍ରକାଶକ, ପତ୍ରପତ୍ରିକା ଏବଂ ପୁସ୍ତକ ପ୍ରକାଶକ କାହା ପାଖରେ ଯଥାର୍ଥ ଉତ୍ତର ଅଛି ଏଭଳି ଅସହାୟତାର ? ଆତ୍ମପ୍ରକାଶ କରିବା ପାଇଁ ଆତୁରତାର ସହିତ ଚାହିଁ ବସିଥିବା ଏଇ ସଂଯୋଜିତ ଶବ୍ଦ ସମ୍ଭାରର ? ଥିଲେ, ଆମ ଭାଷା ପାଇଁ, ସାହିତ୍ୟ ପାଇଁ ଅଣ୍ଟା ଭିଡି ଆଗଭର ହୁଅନ୍ତୁ, ଆମ ସାହିତ୍ୟର ମାନ ରକ୍ଷା କରନ୍ତୁ ।

ଅଚ୍ୟୁତାନନ୍ଦ ପତି ଏବଂ ତାଙ୍କ ପୁରସ୍କୃତ ପୁସ୍ତକ 'ଟା' କପ୍‌ରୁ ଚୈତନ୍ୟ' ସମ୍ପର୍କରେ ଦି'ଧାଡି ଲେଖିବାର ସାହସ ଜୁଟେଇଥିବା ଏଇ ଲେଖକ ଏକଥା ଉପସ୍ଥାପନ କରିବା ପୂର୍ବରୁ ଆମ ଭାଷାର ସୁଧୀ ପାଠକ ସମାଜଠାରୁ ପ୍ରଥମେ କ୍ଷମା ମାଗି ନେଉଛି, ଏ କଥା ସ୍ୱୀକାର କରି ଯେ ଏଇ ଯଶସ୍ୱୀ ଲେଖକ କିମ୍ବା ତାଙ୍କ ପୁସ୍ତକ ସମ୍ପର୍କରେ ତା'ର ଏତେ ଟିକିଏ ବି ଜ୍ଞାନ ତାଙ୍କ ପୁରସ୍କାର ଜିତିବା ପୂର୍ବରୁ ନ ଥିଲା । ଏମିତିରେ ବି କତିପୟ ହାତ ଗଣତି ଲେଖକ ଏବଂ ତାଙ୍କଦ୍ୱାରା ଲିଖିତ କିଛି ପୁସ୍ତକ ବ୍ୟତୀତ ଏ ଅଧମକୁ ଆମ ସାହିତ୍ୟିକ ପରମ୍ପରାକୁ ସମୃଦ୍ଧ କରିଥିବା ବହୁ ସାହିତ୍ୟିକଙ୍କ ସମ୍ପର୍କରେ ଆଦୌ ଜ୍ଞାନ ନାହିଁ । ଏଥିପାଇଁ ଆମେ ବା ଆମ ସାମଗ୍ରିକ ସାହିତ୍ୟ ବ୍ୟବସ୍ଥା ଦାୟୀ, ତାହା ଆଲୋଚନା ସାପେକ୍ଷ ।

ପୁରସ୍କାର ଗ୍ରହଣ କରିସାରି ଗାଁରେ ପହଞ୍ଚି ଅଚ୍ୟୁତାନନ୍ଦ ଯାହା ଗଣମାଧ୍ୟମ ଆଗରେ ପ୍ରକାଶ କଲେ, ତାହା ଆହୁରି

ପ୍ରଣିଧାନଯୋଗ୍ୟ । ପୁରସ୍କାର ପାଇବା ପରେ ତାଙ୍କ ପ୍ରତିକ୍ରିୟା ଜାଣିବା ପାଇଁ ଚାହିଁଥିବା ଜଣେ ଗଣମାଧ୍ୟମ ପ୍ରତିନିଧିଙ୍କୁ ଅଚ୍ୟୁତାନନ୍ଦ କହିଲେ ଯେ ସେ ଏ ପୁରସ୍କାର ପାଇଁ ଯମ ରାଜାଙ୍କ ନିକଟରେ କୃତଜ୍ଞ । ସେ ଏ ଯାଏଁ ତାଙ୍କୁ ବଞ୍ଚେଇ ରଖିଥିଲେ ବୋଲି ଆଜି ଏ ପୁରସ୍କାର ପାଇବାର ସୌଭାଗ୍ୟ ତାଙ୍କୁ ମିଳିଲା । ତାଙ୍କର ଏ ପ୍ରତିକ୍ରିୟା ତାଙ୍କୁ ଏ ପୁରସ୍କାର ପାଇବା ପରେ ଜାଣିବାକୁ ପାଇଥିବା ମୋ ଭଳି ସଂଖ୍ୟାଧିକ ସାହିତ୍ୟପ୍ରେମୀଙ୍କୁ ଗଭୀର ଆଘାତ ଦେଲା । ଏଥିସହିତ ଏହା ସାହିତ୍ୟ ଏବଂ ସମ୍ବର୍ଦ୍ଧନା ସହିତ ଜଡିତ ହୋଇ ରହିଥିବା ଏକ ଅତ୍ୟନ୍ତ ସମ୍ବେଦନଶୀଳ ପ୍ରସଙ୍ଗ ଉତ୍‌ଥାପନ କଲା, ଯାହା ଯଥେଷ୍ଟ ତର୍କ, ବିତର୍କ ଏବଂ ଆଲୋଚନା ତଥା ପର୍ଯ୍ୟାଲୋଚନାର ଅପେକ୍ଷା ରଖେ ।

ଆମ ଭାଷାରେ ସାହିତ୍ୟିକମାନଙ୍କର ପରିଚିତି ସଂକଟ ଯେମିତି ଥିଲା ସେମିତି ରହିଛି । ସେମାନଙ୍କର ପରିଚିତି, ପରିସର, ଲୋକପ୍ରିୟତା ବୃଦ୍ଧି କରିବା ତଥା ପ୍ରତ୍ୟେକ ସାଧାରଣ ପାଠକ ନିକଟରେ ଉପସ୍ଥାପନା କରି ସେମାନଙ୍କର ଗ୍ରହଣୀୟତା ବଢେଇବା ପାଇଁ କୌଣସି ସ୍ତରରେ ଆନ୍ତରିକ ଉଦ୍ୟମ କରାଯାଉ ନାହିଁ । ଯିଏ ଯେଉଁଠି ଯେମିତି ଭାବରେ ପାରିଲା ଲେଖିଲା, ସମଭାବରେ କେଉଁଠି ବା କେତେବେଳେ ପ୍ରକାଶିତ ହେଲା, କେତେବେଳେ ସମ୍ବାଦପତ୍ରରେ ତ କେତେବେଳେ ପତ୍ରପତ୍ରିକାରେ । ଯିଏ ଖବରକାଗଜ ପଢୁଚି ସିଏ ପୃଷ୍ଠା ଓଲଟେଇ ଇଚ୍ଛା ହେଲେ ପଢିଲା ତ ଯିଏ ସାହିତ୍ୟ ପତ୍ରିକା ଖଣ୍ଡେ କିଣିଲା ସିଏ ପଢିଲା । କବିତାଟିଏ, ତା'ର ଶୀର୍ଷକ, ଲେଖକଙ୍କ ନାଁ, ଫଟୋଟିଏ, ମଝିରେ କବିତାର ଅଂଗ ସୌଷ୍ଠବଠାରୁ ଶେଷରେ ଠିକଣା ଏବଂ ସ୍ଥଳ ବିଶେଷରେ ଫୋନ୍ ନମ୍ବର । କିଛି ସମୟରେ ଖାଲି କବିଙ୍କ ନାଁ ସହିତ କବିତାଟିଏ । କବିଙ୍କ ସମ୍ପର୍କରେ ବା ତାଙ୍କ କବିତା ସମ୍ପର୍କରେ କିଛି ପୂର୍ବାପର ସଂଗତି ନାହିଁ । କେମିତି ପାଠକଟିଏ ଯୋଡିହେବ କବିଙ୍କ ସହିତ ? କେମିତି ଜାଣିବ ଏ କବି କିଏ ଆମ ସାହିତ୍ୟର କ୍ରମ ପ୍ରବାହରେ । ଏତିକି ପରିଚିତି କ'ଣ ଯଥେଷ୍ଟ, ଏତେ ବଡ ସାହିତ୍ୟ ସମାଜରେ ତାଙ୍କୁ ଧ୍ରୁବତାରା ସଦୃଶ ଚିହ୍ନଟ କରିବାରେ ?

କିଏ ତା'ହେଲେ ଗୋଟି ଗୋଟି ଚିହ୍ନେଇ ପାରିବ ଏଇ ତାରା ଫୁଲମାନଙ୍କୁ ସାହିତ୍ୟର ମହାକୁମ୍ଭରେ ? ସମ୍ବାଦପତ୍ର ବିଶାଳ ବପୁଧାରୀ, ବିସ୍ତୀର୍ଣ୍ଣ ଆକାଶ ସମ, ପ୍ରତିଦିନ ସଂଖ୍ୟାଧିକ ପୃଷ୍ଠା ସହିତ ମହାସମାରୋହରେ ପ୍ରକାଶିତ ହେଉଛି । ଏ କଥା ନିଶ୍ଚୟ କରିପାରିବ । ଆମ ପତ୍ରପତ୍ରିକାମାନେ ନିୟମିତ ବ୍ୟବଧାନରେ ପ୍ରକାଶିତ ହେଉଛନ୍ତି । ପ୍ରତି ସଂଖ୍ୟାରେ ନିଜେ ପ୍ରକାଶ କରୁଥିବା ସାହିତ୍ୟିକମାନଙ୍କର ଅଳ୍ପ ବ୍ୟକ୍ତିଗତ ଏବଂ ଯଥେଷ୍ଟ ସାହିତ୍ୟିକ ପରିଚୟ ସଂକ୍ଷେପରେ ରଖିପାରିବେ । ବିଭିନ୍ନ ଲେଖକ ସାମ୍ମୁଖ୍ୟ, ସାହିତ୍ୟିକ ସମାବେଶ, ପୁସ୍ତକମେଳା ସମାରୋହ ମଧ୍ୟ ଏହା କରିପାରନ୍ତେ । ପ୍ରକାଶନ ସଂସ୍ଥାମାନେ ନିଜେ ପ୍ରକାଶ କରୁଥିବା ସବୁ ସାହିତ୍ୟିକମାନଙ୍କର ଏକ ପରିଚୟ ପୁସ୍ତକ ପ୍ରକାଶ କରିପାରନ୍ତେ ଏବଂ କାଲି ସକାଳେ ଏସବୁର ଏକ ଏକତ୍ରୀକରଣ ଯେ କେହି ବି କରିପାରନ୍ତା । ଆମ ଆଗାମୀ ପିଢି ପାଇଁ ଏ ଜାତିର ସାହିତ୍ୟର ଇତିହାସ ଏହାଠାରୁ ଭଲ ଭାବରେ ସଂକଳିତ କରି ରଖାଯାଇପାରନ୍ତା, ଏହା ମୋ ଜ୍ଞାନର ପରିସୀମା ଊର୍ଦ୍ଧ୍ୱରେ ।

ଆମ ସାହିତ୍ୟରେ ଯେହେତୁ ଏହିଭଳି ସାମୂହିକ ଉଦ୍ୟମର ଘୋର ଅଭାବ, ଏଠି ସାହିତ୍ୟ ଏବଂ ସାହିତ୍ୟିକ ବ୍ୟକ୍ତିଗତ ସ୍ତରରେ ତିଷ୍ଠି ରହିଥାନ୍ତି । ନିଜେ ନିଜ ଢୋଲ ପିଟନ୍ତି, ନିଜେ ନିଜ ପାଇଁ ପରିଚିତି ଲୋଡି ବସନ୍ତି । ଏ ଉଦ୍ୟମ ସବୁବେଳେ ସୀମିତ, ଯାହା ଅଚ୍ୟୁତାନନ୍ଦଙ୍କ ଭଳି ଲେଖକମାନଙ୍କ କ୍ଷେତ୍ରରେ ମଧ୍ୟ ସବୁବେଳେ ଘଟିପାରେ । ନିଜ ପାଇଁ ତା' କପିଟିଏ ଯେନ ତେନ ପ୍ରକାରରେ ଯୋଗାଡ କରାଯାଇପାରେ, ସାମଗ୍ରିକ ଚେତନାରେ ତିଷ୍ଠି ରହିବାକୁ ହେଲେ ସାମୂହିକ ଉଦ୍ୟମ ଲୋଡା । ସାହିତ୍ୟ ବ୍ୟକ୍ତି ବ୍ୟକ୍ତି ଭିତରେ ବାଣ୍ଟି ହୋଇଗଲେ ସଂକୀର୍ଣ୍ଣ ହୋଇଯାଏ, ସାମଗ୍ରିକତା ହରେଇ ଦିଏ ଯାହା କୌଣସି ଭାଷା ଓ ସାହିତ୍ୟ ପାଇଁ ଶୁଭଙ୍କର ନୁହେଁ । ସାହିତ୍ୟିକ ଅଭିବୃଦ୍ଧି ସାମଗ୍ରିକ ଅଭିବୃଦ୍ଧି, ଏଠିସବୁ ସାହିତ୍ୟିକ ନିଜ ସାଧ୍ୟମତେ ଜଣେ ଜଣେ ସଫଳ ଅଂଶୀଦାର ହେବା ଉଚିତ । 'ମୋ ସାହିତ୍ୟ ମୋତେ ନେଇ ପ୍ରାଣବନ୍ତ, ମୁଁ ମୋ ସାହିତ୍ୟକୁ ନେଇ ଗର୍ବିତ', କେବଳ ଏହି ଚେତନା ହିଁ ଆମ ଭାଷା ଓ ସାହିତ୍ୟକୁ ସମୁଜ୍ଜ୍ୱଳ କରିବ, ଆମ ସାହିତ୍ୟିକକୁ ତା' ଭାଷା ଓ ସାହିତ୍ୟ ପାଇଁ ଗର୍ବ କରିବାର ଯଥେଷ୍ଟ କାରଣ ଯୋଗାଇ ଦେବ । ଏ ମହନୀୟ ପର୍ବର ମହାର୍ଘ୍ୟ ଏବେଠୁ ଆରମ୍ଭ ହେଉ ।

ଭି.ଆଇ.ଆର୍-୧୮, ୟୁନିଟ୍-୬, ଭୁବନେଶ୍ୱର

# ଚିତ୍ରଭାଷାର ବିଶ୍ୱମଣିଷ ଦିନନାଥ

ଡକ୍ଟର ଗୌରହରି ରାଉତ (ରୂପକଳ୍ପ)



**ଜଣେ ଓଡ଼ିଆ ଚିତ୍ରକର ଭାବରେ ସେ ଯେ ଓଡ଼ିଶାର ଚିତ୍ରକଳାକୁ ବିଦେଶରେ ପ୍ରଚାର ପ୍ରସାର କରାଇ ଚୁପ୍ ହୋଇଯାଇଛଂତି, ତା' ନୁହେଁ ବରଂ ଅନେକ ଓଡ଼ିଆ ଶିଳ୍ପୀଙ୍କୁ ପାଶ୍ଚାତ୍ୟାଭିମୁଖୀ ହେବାରେ ସୁଯୋଗ ସୃଷ୍ଟି କରିଛଂତି । ତାଙ୍କ ପ୍ରେରଣା, ଉତ୍ସାହ ଏବଂ ଉଦ୍ୟମ ଫଳରେ ଆଜି ଓଡ଼ିଆ ଶିଳ୍ପୀଙ୍କର ଆଖି ଖୋଲିଯାଇଛି । ଦୂର ଗଗନକୁ ଛୁଇଁବାର ନିଶା ଜାଗିଛି ସେମାନଙ୍କ ମନରେ । ଏହା ଆମ ଓଡ଼ିଆ ଜାତି ପାଇଁ ଗର୍ବ ଓ ଗୌରବର କଥା । ଓଡ଼ିଆ ଜାତି ଆଉ ସଂକୀର୍ଣ୍ଣତାର ଗଣ୍ଡି ଭିତରେ କୂପମଣ୍ଡୁକ ହୋଇ ରହିନାହିଁ । ଦୂର ଦିଗନ୍ତର ଆହ୍ୱାନରେ ଆକାଶ ସେପାରି ଉଡ଼ି ଉତ୍କୃଷ୍ଟ କଳାର ଦାୟାଦ ରୂପେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି । ଏହା କେବଳ ଦିନନାଥଙ୍କର ଅକାର୍ପଣ୍ୟ ଅବଦାନ ପାଇଁ ସଂଭବ ହୋଇପାରିଛି ।**

ଭାରତୀୟ ଚିତ୍ରକଳା ଆଂଦୋଳନର ବିଚକ୍ଷଣ ବିନ୍ଧାଣି ତଥା ସମକାଳୀନ ସୃଜନଧାରାର ଜଣେ ଦୀପ୍ତିମାନ ବ୍ୟକ୍ତିତ୍ୱ ଡକ୍ଟର ଦିନନାଥ ପାଠୀ । ଓଡ଼ିଶାର ଏକ ଉଜ୍ଜ୍ୱଳ ପ୍ରତିଭା ଭାବରେ ପିତା ଶ୍ୟାମସୁନ୍ଦର ପାଠୀ ଓ ମାତା କମଳା ଦେବୀଙ୍କର କୋଳମଣ୍ଡନ କରି ଜନ୍ମଗ୍ରହଣ କରନ୍ତି ୯ ମେ' ୧୯୪୨ ମସିହାରେ ଅବିଭକ୍ତ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଦିଗପହଣ୍ଡିର ପୁଞ୍ଜିକୟାଁରେ । ପୁରୁଷାନୁକ୍ରମେ ଦିଗପହଣ୍ଡି ଗଡ଼ର ବୈଦ୍ୟ ଭାବରେ କାର୍ଯ୍ୟ କରୁଥିବାରୁ ତାଙ୍କ ବ୍ରାହ୍ମଣ ପରିବାର ସେ ଅଞ୍ଚଳରେ ତତ୍କାଳରେ ବୈଦ୍ୟରତ୍ନ ଭାବରେ ପରିଚିତ ଥିଲା । ପିତା ଶ୍ୟାମ ସୁନ୍ଦର ପାଠୀ ବୈଦ୍ୟକାର୍ଯ୍ୟ କରିବା ସହ ନିଜ ଆମ୍ବତୋଟାରେ ଥିବା ତ୍ରିନାଥ ମନ୍ଦିରର ପୂଜକ ଥିଲେ । ମନ୍ଦିରର ମୂଳ ଦେବତା ହେଲେ ହନୁମାନ । ସେ ଥିଲେ ଜଣେ ଆଶୁ କବି । ମୁହେଁ ମୁହେଁ କବିତା ଆବୃତ୍ତି କରିବାରେ ଥିଲେ ପାରଂଗମ ।

ଦିନନାଥଙ୍କର ବାଲ୍ୟ ଜୀବନ ଥିଲା ଅତ୍ୟନ୍ତ ସଂଘର୍ଷମୟ । ଶୈଶବରେ ସେ ସାମ୍ନା କରିଛନ୍ତି ଅଭାବ ଅନଟନକୁ । ଦାରିଦ୍ର୍ୟର କଷାଘାତରେ ପୀଡ଼ିତ ହୋଇ ବଡ଼ଭାଇ ଲୋକନାଥ ପାଠୀଙ୍କ ସହ ମିଶି ଯାତ୍ରା ଦଳର ବରାଦିଆ ସିନ୍ ଆଂକିବା ସହ ମଂଦିରରେ ଚିତ୍ର ଆଂକିବା ଓ ଅଭିନେତାମାନଙ୍କୁ ମେକ୍ଅପ୍ କରିବା ଉଦ୍ଦେଶ୍ୟରେ ଗାଁକୁ ଗାଁ ବୁଲିଛନ୍ତି । ମାଟ୍ରିକ୍ ବେଳକୁ ପିତୃ ବିୟୋଗ ଏବଂ ପରେ ପରେ ମାତୃ ବିୟୋଗ ତାଙ୍କୁ ପ୍ରଚଣ୍ଡ ଧକ୍କା ଦେଲା । ପରିବାରର ଗୁଜୁରାଣ ମେଣ୍ଟାଇବାକୁ ପିଣ୍ଡାରେ ଟିଉସନ୍ କରିଛନ୍ତି । ଗାଁ ପାଖ ଓଡ଼ାସିଙ୍ଗା ସଂସ୍କୃତ ଟୋଲ୍‌ରେ ମଧ୍ୟ କିଛିଦିନ ପାଇଁ ଇଂରାଜୀ ବିଷୟରେ ଶିକ୍ଷକତା କରିଛନ୍ତି । ପରବର୍ତ୍ତୀ ସମୟରେ ଏହି 'ମେକ୍ଅପ୍ ବୟ' ଦିନନାଥ ବହୁ ଅଭାବ ଅସୁବିଧାରେ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ୍ ପାଶ୍ କରି କିଛି ଦିନ ସାଧାରଣ କଲେଜରେ ବିଜ୍ଞାନ ପଢ଼ିଛନ୍ତି । ମାତ୍ର ବିଧିର ବରାଦ ଅନ୍ୟ ପ୍ରକାରର ଥିଲା ତାଙ୍କ

ପାଇଁ । ଆର୍ଥିକ ସମସ୍ୟା ବାଧକ ସାଜିବାରୁ ଖଲ୍ଲିକୋଟ୍‌ର ଚିତ୍ରକଳା ବିଦ୍ୟାଳୟ (ତତ୍‌କାଳରେ ତାହା ମହାବିଦ୍ୟାଳୟ ହୋଇ ନଥିଲା)ରୁ ଚିତ୍ରକଳାରେ ଡିପ୍ଲୋମା ଡିଗ୍ରୀ ହାସଲ କରନ୍ତି । ପୁଣି ପୁରୀର ସାନଛତା ମଠରେ ରହି ଆଇ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି । ଭୁବନେଶ୍ୱରର ବି.ଜେ.ବି. ସାଂଧ୍ୟ ମହାବିଦ୍ୟାଳୟରେ ଅଧ୍ୟୟନ କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସରେ ସ୍ନାତକୋତ୍ତର ଡିଗ୍ରୀ, ପିଏଚ୍.ଡି ଡିଗ୍ରୀ ସହ ଶାନ୍ତିନିକେତନର କଳା ଭବନରୁ କଳା ଇତିହାସରେ ଗବେଷଣା କରି ଦ୍ୱିତୀୟ ଥର ପିଏଚ୍.ଡି ଡିଗ୍ରୀ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ସମ୍ମାନ ସୂଚକ ଡି.ଲିଟ୍ ଉପାଧି ଏବଂ ଆହୁରି ଅନେକ ଶିକ୍ଷାଗତ ଯୋଗ୍ୟତା (ଏପରିକି ବିଦେଶରୁ ମଧ୍ୟ) ସେ ହାସଲ କରିଛନ୍ତି ।



ଦାରିଦ୍ର୍ୟର କଷାଘାତକୁ ସାମ୍ନା କରିଥିବା ସେଦିନର 'ମେକ୍‌ଅପ୍ ବୟ' ଆଜିର ସାଂପ୍ରତିକ ଚିତ୍ରକଳା ଏବଂ ସାହିତ୍ୟ କଳା କ୍ଷେତ୍ରରେ ଏକ ସ୍ୱର୍ଦ୍ଧିତ ଉଚ୍ଚାରଣ, ଏକ ଶକ୍ତ ମାଇଲ୍ ଖୁଣ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଏଇ କିମ୍ବଦନ୍ତୀ ପୁରୁଷ ଓଡ଼ିଶାର କଳା ଏବଂ ସାହିତ୍ୟ ପାଇଁ କ'ଣ କରିଛନ୍ତି – ଏ ପ୍ରଶ୍ନ ଉତ୍‌ଥାପନ କରିବା ପୂର୍ବରୁ କ'ଣ ସେ କରିନାହାନ୍ତି, ଏ ସଂପର୍କରେ ବିଚାର ବିମର୍ଶ କରିବା ଅଧିକ ସମୀଚୀନ ହେବ । ଉତ୍‌କୃଷ୍ଟ କଳାର ରାଜ୍ୟ 'ଓଡ଼ିଶା'କୁ ବିଦେଶ ମାଟିରେ ଛିଡ଼ା କରାଇ ସିଏ ଦମ୍ଭର ସହ ଉଦ୍‌ଘୋଷଣା କରିପାରୁଥିଲେ– 'ଏ ହେଉଛି ମୋ' ଓଡ଼ିଆ ଜାତି ଏବଂ ସଂସ୍କୃତି ସଂପନ୍ନ ସେଇ ଓଡ଼ିଆ ଜାତିର ମୁଁ ହେଉଛି ଦାୟାଦ' । ଏ ବଜ୍ର କଠୋର ସ୍ୱାଭିମାନ ଯାହାଙ୍କ ରକ୍ତରେ ପ୍ରବାହିତ ହେଉଥିଲା ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ – ଡକ୍ଟର ପାଠୀଙ୍କ ଛଡ଼ା ସେ ଆଉ କିଏ ହୋଇପାରନ୍ତି ? ଭବଘୂରା ଭାବରେ ଏ ଦେଶରେ ସକାଳର ଜଳଖିଆ ଖାଇ ସେ ଦେଶରେ ମଧ୍ୟାହ୍ନଭୋଜନ କରୁଥିବା ଗୋଟିଏ ଆବେଗପ୍ରବଣ ଛଳଛଳ ଆତ୍ମା କେବେ ବିଦେଶ ମାଟିର ମାୟାରେ ମୋହଗ୍ରସ୍ତ ହୋଇଯାଇ ନଥିଲେ' ବରଂ ଏ ମାଟିର ସମକାଳୀନ କଳାନୈପୁଣ୍ୟର ବାସ୍ନାକୁ ସେ ମାଟିରେ ପରଷି ଦେଇ ସେଠୁ କିଛି ଶିଳ୍ପ ସଂପଦ ପାଇଲେ ନିଜ ଝୁଲାରେ ଭରିନେଇ ଆସୁଥିଲେ । ଆମ ପ୍ରାଚ୍ୟକଳାକୁ ପାଶ୍ଚାତ୍ୟରେ ପରଷି ପାଶ୍ଚାତ୍ୟ କଳାକୁ ପ୍ରାଚ୍ୟ ଭୂଖଣ୍ଡରେ ବାଂଟୁଥିଲେ । ତେଣୁ ସେ ଥିଲେ ସୂତ୍ରଧର ସମନ୍ୱୟର । ଦୂରଦିଗନ୍ତରେ ଉଡ଼ିଲେ ବି ଫେରୁଥିଲେ ନିଜ ନୀଡ଼–ଓଡ଼ିଶାକୁ । ପୁଣି ଜନ୍ମ ମାଟି ଦିଗପହଣ୍ଡି ତାଙ୍କଠାରେ ମାୟା ଲଗାଇ ଦେଇଥିଲା । ଗାଁରୁ ଆସି ଦେଶର ବିଭିନ୍ନ ସହର ଯଥା– ଭୁବନେଶ୍ୱର, ଦିଲ୍ଲୀ, ବନାରସ ଏବଂ ବିଦେଶର ବିଭିନ୍ନ ସହରରେ ସେ ରହିଛନ୍ତି, ମାତ୍ର ନିଜ ମାଟିକୁ ଧରିଛନ୍ତି ଜୋର୍‌କରି । ମହାଦ୍ରୁମର ଡାଳପାଲା ଆକାଶଛୁଆଁ ହୋଇ ଦିଗବିଦିଗରେ ସୁରଭି ଖେଳାଇଲେ ବି ମୂଳଚେର କିନ୍ତୁ ଆଣ୍ଠିକରି ଧରିଥାଏ ମାଟିକୁ ।

ଓଡ଼ିଶାର ପାରଂପରିକ 'ପଟ୍ଟଚିତ୍ର'ର ଶୈଳୀ, ତତ୍ତ୍ୱ, ନିର୍ଯ୍ୟାସ, କଥାବସ୍ତୁର ବୈଶିଷ୍ଟ୍ୟ ଏବଂ ଆଂଗିକ ତଥା ଆତ୍ମିକ ନୈପୁଣ୍ୟର ବାହକ ହୋଇ ୟୁରୋପ ଦେଶରେ ପ୍ରଚାର ପ୍ରସାର କରିବାରେ ଦିନନାଥଙ୍କର ରହିଛି ଗୁରୁତ୍ୱପୂର୍ଣ୍ଣ ଭୂମିକା । ସେଥିପାଇଁ ବିଦେଶ ମାଟିରେ ସେ ଯେତେ ନିଜର ଏକକ ଚିତ୍ରକଳା ପ୍ରଦର୍ଶନ କରିଛନ୍ତି, ସେସବୁରେ ରହିଛି ଆମ ଓଡ଼ିଶାର ପାରଂପରିକ ଚିତ୍ରକଳାର ବାସ୍ନା । ସମକାଳୀନ ଶୈଳୀରେ ଆଂକିଲେ ବି ଅନ୍ତଃ ସଲିଳା ଫଲ୍‌ଗୁ ପରି ଓଡ଼ିଶା ଚିତ୍ରକଳାର ଶୈଳୀ ସ୍ୱତଃସ୍ଫୁର୍ତ୍ତ ଭାବରେ ଉତୁରି ଆସିଥାଏ ତାଙ୍କ କାନ୍‌ଭାସ୍‌କୁ । ଏତଦ୍‌ବ୍ୟତୀତ ଓଡ଼ିଶାର ପୁରପଲ୍ଲୀରୁ ମରିହଜି ଯାଉଥିବା ଲୋକକଳା, ଚିତା, ଝୋଟି ଆଦି ଉପରେ ଗବେଷଣା କରିବା ଉଦ୍ଦେଶ୍ୟରେ ଗାଁକୁ ଗାଁ ବୁଲିଛନ୍ତି ସେ । ଏ ସଂପର୍କୀତ ଅନେକ ଗବେଷଣାଧର୍ମୀ ପୁସ୍ତକ ରଚନା କରି ଆମ ଗ୍ରାମ୍ୟ କଳା ଏବଂ ଲୋକକଳାର ପ୍ରସାର କରିଛନ୍ତି ସେ ବିଦେଶ ମାଟିରେ । ଓଡ଼ିଶାର ଚିତ୍ରକଳା, ମାଟି ପାଣି ପବନର ବାସ୍ନାଥିବା

ଫସଲ ଅମଳର ଗୀତ ଆଦିକୁ ପରିଚୟ କରାଇବାରେ ଦିନନାଥ ଯେ ଏକମାତ୍ର କଳାପ୍ରବଣ ବ୍ୟକ୍ତିତ୍ୱ – ଏହା ନିଃସଂଦେହ । ଅନେକ ଓଡ଼ିଆ ଶିଳ୍ପୀ ବିଦେଶ ଯାଇଛଂତି, ଏବେ ମଧ୍ୟ ଯାଉଛଂତି ମାତ୍ର ଓଡ଼ିଶା କଳାର କଥା କେତେଜଣ କହୁଛଂତି ସେଠି ? ପୁଞ୍ଜିକୟାଁର ଝାଟିମାଟି ଘରେ ପଡ଼ିଥିବା ଚିତା, ଗଂଜାମର ଲୋକକଳା – ଯାହା ଅନ୍ୟମାନଙ୍କ ଦୃଷ୍ଟିରେ ହେୟ/ନଗଣ୍ୟ, ସେସବୁକୁ ଡକ୍ଟର ପାଠୀ କ୍ୟାମେରା ଲେନ୍ସ୍‌ରେ ତୋଳିଧରି ଗବେଷଣା କରିଛଂତି ଓ ପରଷି ଦେଇଛଂତି ୟୁରୋପୀୟମାନଙ୍କ ପାଖରେ । ଓଡ଼ିଶାର ମଂଦିର କଳା ମଧ୍ୟ ତାଙ୍କ ଶିଳ୍ପୀ ଆଖିରୁ ବାଦ୍ ଯାଇନି । ଗବେଷଣାତ୍ମକ ଦୃଷ୍ଟିଭଂଗୀ ନେଇ ସେ ସଂପର୍କରେ ଅନେକ ପୁସ୍ତକ ରଚନା କରିଛଂତି ସେ । ବୟନ ବା ବାଂଧକଳା ମଧ୍ୟ ତାଙ୍କ ଚିତ୍ରକଳାରେ ସ୍ଥାନପାଇ ସ୍ୱକୀୟ ଶୈଳୀରେ ପ୍ରକାଶ ପାଇଥାଏ କାନ୍‌ଭାସ୍‌ରେ । ମଂଦିର କଳା ହେଉ, ପାରଂପରିକ କଳା ହେଉ, ହେଉ ଅବା ଆଦିବାସୀର ସଉରା ଚିତ୍ର ଅଥବା ଉତ୍କଳର ଗ୍ରାମ୍ୟ କଳା – ସବୁର ସମ୍ମିଶ୍ରଣରେ ସେ ଯେଉଁ ସମକାଳୀନ ସୃଜନ ତତ୍ତ୍ୱ ଫୁଟାଇଥାନ୍ତି, ତା'ର ବାସନା ଆବେଗପ୍ରବଣ ଭାବରେ ମହକିଯାଏ ଦୂର ବିଦେଶକୁ । ଅନ୍ୟ ପଟେ ପାଶ୍ଚାତ୍ୟ ଚିତ୍ରକଳାର ତତ୍ତ୍ୱକୁ ମଧ୍ୟ ବୁଝି ତା'କୁ ସେ ନିଜ ରଂଗତୂଳୀରେ ବ୍ୟକ୍ତ କରିଛଂତି । ଅତଏବ ତାଙ୍କ ଚିତ୍ରକଳାରେ ଦେଖିବାକୁ ମିଳେ ପ୍ରାଚୀନତା, ନୂତନତା, ପରଂପରା ଓ ଆଧୁନିକତାର ଏକ ଭାବଗତ ସମନ୍ୱୟ । ବିଦେଶର ବିଭିନ୍ନ ଚିତ୍ରବିଥି (art gallery)ରେ ତାଙ୍କଦ୍ୱାରା ଆୟୋଜିତ ହୋଇଥିବା ଏକକ ଚିତ୍ରକଳା ପ୍ରଦର୍ଶନୀର ବହୁଚର୍ଚ୍ଚିତ ଚିତ୍ରସବୁ ଯଥା – ଶ୍ରୀରାଧା, ବ୍ୟାଘ୍ର ଓ ପଦ୍ମବନ, ପକ୍ଷୀର ମୃତ୍ୟୁ, ଅଭିସାରିକା, ନୀଳକନ୍ୟା, ପ୍ରେମୀଯୁଗଳ, ପଦ୍ମ ପୁଷ୍କରିଣୀ, ମୃଗଯୁଥ, ଫସଲ ଅମଳର ଗୀତ ଭଳି ଏକ ସହସ୍ର ପାଖାପାଖି ଚିତ୍ରସବୁର ସେ ସ୍ରଷ୍ଟା – ଯହିଁରେ ଓଡ଼ିଶୀ ଚିତ୍ରକଳା ଶୈଳୀର ଛାପ ଅତି ସୂକ୍ଷ୍ମ ଭାବରେ ପଡ଼ିଥାଏ ଏବଂ ଏଇସବୁ ଚିତ୍ରକଳା ବିଦେଶ ମାଟିରେ ବେଶ୍ ଆଲୋଡ଼ନ ସୃଷ୍ଟି କରିଥାଏ ।

ଜଣେ ଓଡ଼ିଆ ଚିତ୍ରକର ଭାବରେ ସେ ଯେ ଓଡ଼ିଶାର ଚିତ୍ରକଳାକୁ ବିଦେଶରେ ପ୍ରଚାର ପ୍ରସାର କରାଇ ଚୁପ୍ ହୋଇଯାଇଛଂତି, ତା' ନୁହେଁ ବରଂ ଅନେକ ଓଡ଼ିଆ ଶିଳ୍ପୀଙ୍କୁ ପାଶ୍ଚାତ୍ୟାଭିମୁଖୀ ହେବାରେ ସୁଯୋଗ ସୃଷ୍ଟି କରିଛଂତି । ତାଙ୍କ ପ୍ରେରଣା, ଉତ୍ସାହ ଏବଂ ଉଦ୍ୟମ ଫଳରେ ଆଜି ଓଡ଼ିଆ ଶିଳ୍ପୀଙ୍କର ଆଖି ଖୋଲିଯାଇଛି । ଦୂର ଗଗନକୁ ଛୁଇଁବାର ନିଶା ଜାଗିଛି ସେମାନଙ୍କ ମନରେ । ଏହା ଆମ ଓଡ଼ିଆ ଜାତି ପାଇଁ ଗର୍ବ ଓ ଗୌରବର କଥା । ଓଡ଼ିଆ ଜାତି ଆଉ ସଂକୀର୍ଣ୍ଣତାର ଗଣ୍ଡି ଭିତରେ କୂପମଣ୍ଡୁକ ହୋଇ ରହିନାହିଁ । ଦୂର ଦିଗନ୍ତର ଆହ୍ୱାନରେ ଆକାଶ ସେପାରି ଉଡ଼ି ଉତ୍କୃଷ୍ଟ କଳାର ଦାୟାଦ ରୂପେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି । ଏହା କେବଳ ଦିନନାଥଙ୍କର ଅକାର୍ପଣ୍ୟ ଅବଦାନ ପାଇଁ ସଂଭବ ହୋଇପାରିଛି ।

ତାଙ୍କ ପ୍ରତିଭାର ଅନ୍ୟ ଏକ ବିଶେଷ ଦିଗ ହେଲା – ସାରସ୍ୱତ ସୃଜନ କର୍ମ । ଜଣେ ଚିତ୍ର ସାଧକ ପୁଣି ହୋଇପାରନ୍ତି ସାହିତ୍ୟ ସାଧକ ! ତାଙ୍କର ବହୁ ଚର୍ଚ୍ଚିତ ଆତ୍ମଜୀବନୀ 'ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ'– ଯାହା ୧୯୯୦ ମସିହାରେ ପ୍ରଥମେ ପ୍ରକାଶ ପାଇଥିଲା, ଦ୍ୱିତୀୟ ସଂସ୍କରଣ ୨୦୦୪ ଏବଂ ତୃତୀୟ ସଂସ୍କରଣ ୨୦୧୪ରେ ପ୍ରକାଶ ପାଇ ଅନେକ ପାଠକୀୟ ସ୍ୱୀକୃତି ସାଉଁଟି ସାରିଛି । ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ଉକ୍ତ ଆତ୍ମଜୀବନୀ ଗ୍ରନ୍ଥଟି ମଧ୍ୟ ଏକଦା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସ୍ନାତକ ଶ୍ରେଣୀ (ଓଡ଼ିଆ ଭାଷା ସାହିତ୍ୟର ଇଚ୍ଛାଧୀନ)ର ପାଠ୍ୟପୁସ୍ତକ ଭାବରେ ପ୍ରଚଳିତ ଥିଲା । ଏଥିସମେତ ପୁଞ୍ଜିକୟାଁର ଫକୀର (ନିଜ ପିତାଙ୍କ ଜୀବନୀ), ଚିଲିକା ପାଣିରେ ଛାଇ, ଭବଘୁରା ଭବନାଥ, କଳେଜଟିଏ ଗଢ଼ିବାର ବେଳ, ରୂପଜୀବୀର ଡାଏରୀ ଭଳି ପାଞ୍ଚଗୋଟି ଆତ୍ମଜୀବନୀର ସ୍ରଷ୍ଟା ପୁଣି ପର କ୍ଷଣରେ ସୃଷ୍ଟି କରିପାରନ୍ତି ସାୟୋନାରା, ପୁନର୍ନବା, ଶ୍ଲୋକଚ୍ଛନ୍ଦ, ଗଙ୍ଗାବତରଣ ଭଳି ବୃହତ୍‌କାୟ ଚିତ୍ରୋପନ୍ୟାସ । ତାଙ୍କର ଅନ୍ୟ ଦୁଇଗୋଟି ଅପ୍ରକାଶିତ ଆତ୍ମଲିପି ଏଇ ନିକଟରେ ପ୍ରକାଶ ପାଇବାର ଅପେକ୍ଷାରେ ଥିଲା । ସେ ଦୁଇଟି ଆତ୍ମଜୀବନୀ ହେଲା – 'ନୂଆଦିଲ୍ଲୀର କଳା ମଠ' ଓ 'ବନାରସରେ ବାନପ୍ରସ୍ଥ' । 'ନୀଳ ହ୍ରଦର ଚିତ୍ରକର' ଯଦିଓ କଳେବର ଦୃଷ୍ଟିରୁ ଲଘୁ ମାତ୍ର ଏହାହିଁ ତାଙ୍କ ଭ୍ରମଣ କାହାଣୀ ବା ବୃତ୍ତାନ୍ତର ପ୍ରଥମ ପୁସ୍ତକର ଦାବି ରଖେ । ଆମେରିକା ଓ କାନାଡ଼ାର ବହୁ ଅନୁଭୂତିର ଏକ କଳାତ୍ମକ ଅଭିବ୍ୟକ୍ତି ହେଉଛି, 'ଭୀମକୁଣ୍ଡରେ ମିଚ୍‌ଗାନ୍‌ର ପ୍ରତିଛବି', ଯାହା ୨୦୧୪ରେ ପ୍ରଥମେ ପ୍ରକାଶ ପାଇ ଅତିଶୀଘ୍ର

ପାଠକୀୟ ଆଦୃତି ଲାଭ କରିପାରିଛି । 'ସୁନାମାଛ', 'ଅଧିବାସ' ଭଳି ଗଳ୍ପ ପୁସ୍ତକର ସ୍ରଷ୍ଟାଙ୍କ କାବ୍ୟଚେତନାରୁ ପୁଣି ଉତୁରି ଆସିଛି 'ଅବନ୍ତୀ', 'ଚିତ୍ରଶାଳା', 'ବର୍ଣ୍ଣିଳ ଅପରାହ୍ଣ', 'ଅନ୍ୟ ଦେଶ' ପରି କବିତା ପୁସ୍ତକମାନ । ଏତଦ୍‌ଭିନ୍ନ ରମଣେନ୍ଦ୍ର ମହାପାତ୍ରଙ୍କ ଦ୍ୱାରା ଅନୁଦିତ ଓ 'ରସିକ ହାରାବଳୀ' ଦ୍ୱାରା ଅନୁପ୍ରେରିତ ଦିନନାଥଙ୍କ ସ୍କେଚ୍‌ଗୁଡ଼ିକ ସହ ୨୦୧୪ରେ ଇଂରାଜୀରେ 'ଦିନନାଥସ୍ ଷ୍ଟୁଡିଓ'(Dinanath's Studio) ବୋଲି ଏକ କବିତା ପୁସ୍ତକ ମଧ୍ୟ ପ୍ରକାଶ ପାଇଛି । 'ଚିତ୍ର ଚିନ୍ତନ' ଓ ଭାଗବତ ଚିତ୍ରଭାଷ୍ୟ' ମଧ୍ୟ ଡକ୍ଟର ପାଠୀଙ୍କର ଦୁଇଟି ଅନବଦ୍ୟ ସୃଷ୍ଟି ।

ଏତେସବୁ ପୁସ୍ତକ ପ୍ରକାଶନ ପୂର୍ବରୁ ବି ତାଙ୍କର ଆହୁରି ଅନେକ ପୁସ୍ତକ ପ୍ରକାଶିତ ହୋଇସାରିଥିଲା ପ୍ରାଥମିକ ପର୍ଯ୍ୟାୟରେ । କଳା ବିଦ୍ୟାଳୟ, ଖଲ୍ଲିକୋଟ୍‌ରେ ଅଧ୍ୟୟନ କରୁଥିବା ବେଳେ ଶିଳ୍ପୀ ଗୁରୁ ତଥା ଅଧ୍ୟକ୍ଷ ଶରତ ଚନ୍ଦ୍ର ଦେବଙ୍କ ଉତ୍ସାହ ଓ ପ୍ରେରଣାରେ ସେ ସ୍ୱାମୀ ଶିବାନନ୍ଦ ସରସ୍ୱତୀଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ଓ ଦିବ୍ୟ ଜୀବନ ସଂଘର ସେ ଥିଲେ ସେତେବେଳର କାର୍ଯ୍ୟକାରୀ ସଂପାଦକ । ସେଇ ଆଧ୍ୟାତ୍ମିକ ଜୀବନର ଫଳଶ୍ରୁତିରେ ରଚନା କରିଥିଲେ, 'ଶିବାନନ୍ଦ ଓ ଦିବ୍ୟ ଜୀବନ' (୧୯୬୧), 'ଭଗବତ ଗୀତା' (୧୯୬୨) । ଓଡ଼ିଶାର ପ୍ରୌଢ଼ଶିକ୍ଷା ପାଠ୍ୟପୁସ୍ତକ କଳା ସଂପର୍କୀତ ତିନିଗୋଟି ପୁସ୍ତକ ରଚନା କରିଥିଲେ । ୧. 'ଓଡ଼ିଶାର ଲୋକକଳା' (୧୯୮୯), ୨. 'ଓଡ଼ିଶାର ଆଦିବାସୀ କଳା'(୧୯୮୯) ଏବଂ 'ରାମକଥାରେ କାବ୍ୟଭାଷା ଓ ଚିତ୍ରଭାଷା'(୧୯୯୮) ଆଦି ପ୍ରବଂଧ ତାଙ୍କ ସାରସ୍ୱତ ସ୍ରଷ୍ଟା ମାନସର ପ୍ରତିଫଳନ ।

ପ୍ରକାଶିତ ଓଡ଼ିଆ ପୁସ୍ତକ କେବଳ ଓଡ଼ିଶା ମାଟିରେ ସୀମିତ ହୋଇ ରହିନାହିଁ । ତାଙ୍କର ବହୁ ପୁସ୍ତକ ହିନ୍ଦୀ, ଇଂରାଜୀ ଏବଂ ଜର୍ମାନୀ ଭାଷାରେ ଅନୁସୃଜିତ ହୋଇ ଦେଶ ବିଦେଶର ସଂସ୍କୃତିସଂପନ୍ନ କଳାପ୍ରେମୀମାନଂକ ପାଇଁ ଓଡ଼ିଶୀ କଳା ସଂପର୍କରେ ଅଧ୍ୟୟନ ଓ ଗବେଷଣା ପାଇଁ ପଥ ଉନ୍ମୁକ୍ତ କରିଛି । ହିନ୍ଦୀ ସାହିତ୍ୟର ବିଶିଷ୍ଟ କବି/ଲେଖକ ଶଂକର ଲାଲ୍ ପୁରୋହିତଙ୍କ ଦ୍ୱାରା ଡକ୍ଟର ପାଠୀଙ୍କର ବହୁ ପୁସ୍ତକ ଅନୁଦିତ ହୋଇ ଦେଶରେ ପାଠକୀୟ ଆଦୃତି ଲାଭ କରିଛି । ଚିତ୍ରକର ଦିନନାଥଙ୍କ କାବ୍ୟ ପ୍ରତିଭାରେ ଅଭିଭୂତ ହୋଇ ବିଶିଷ୍ଟ କବି ସୌରୀନ୍ଦ୍ର ବାରିକ କହନ୍ତି, 'ଦିନନାଥଙ୍କ ସୃଜନଶୀଳତା ବିଚିତ୍ରବର୍ଣ୍ଣା । ସେ ଏକାଧାରରେ ଚିତ୍ରଶିଳ୍ପୀ, ଔପନ୍ୟାସିକ, କଳାତତ୍ତ୍ୱବିତ୍ ଏବଂ ଶେଷରେ କବି । କଳାର ବିଭିନ୍ନ ଜଗତରେ ସୃଷ୍ଟିଶୀଳ ଶିଳ୍ପୀ ହୋଇ ସ୍ୱଚ୍ଛନ୍ଦ ଭାବରେ ବିଚରଣ କରିବା ସଂଗେ ସଂଗେ କଳାର ତତ୍ତ୍ୱ ଆଲୋଚନା କଲାବେଳେ ସେ ଅତି ନିଖୁଣ ଭାବରେ ପ୍ରୟୋଜନୀୟ ନୈର୍ବ୍ୟକ୍ତିକତାକୁ ରକ୍ଷା କରିବାରେ ସଫଳ ହୁଅନ୍ତି । ଏହି ସଫଳତା ପଛରେ ଅଛି ତାଙ୍କର ଶୃଙ୍ଖଳାବୋଧ ଏବଂ ଉଭୟ ଅନୁଭବ ଓ ମାଧ୍ୟମ ପ୍ରତି ଗଭୀର ଆନ୍ତରିକତା । ଏହି ଆନ୍ତରିକତା ହିଁ ତାଙ୍କୁ ଆଣି ଦେଇଛି ଶିଳ୍ପୀ ଭାବରେ ସଫଳତା, ପ୍ରତିଷ୍ଠା ବି ।'

ଉପରୋକ୍ତ ପୁସ୍ତକଗୁଡ଼ିକ ଚିତ୍ରକଳା ସଂପର୍କୀତ ସାହିତ୍ୟ ପୁସ୍ତକ । ମାତ୍ର ଡକ୍ଟର ଦିନନାଥ ପାଠୀ ଥିଲେ ଜଣେ ଆଗଧାଡ଼ିର କଳା ଗବେଷକ, କଳା ଐତିହାସିକ । ଓଡ଼ିଶାର କଳା ଓ ଐତିହ୍ୟକୁ ତନ୍ନ ତନ୍ନ କରି ପରଖିବା, ଅନୁଶୀଳନ, ପର୍ଯ୍ୟବେକ୍ଷଣ କରିବା ଭିତରେ ବହୁ ଗବେଷଣାତ୍ମକ ଗ୍ରନ୍ଥମାନ ରଚନା କରିଯାଇଛନ୍ତି – ଯାହା ଓଡ଼ିଆ, ଇଂରାଜୀ, ଜର୍ମାନୀ ଆଦି ଭାଷାରେ ରଚିତ । ୧୯୭୬ ମସିହାରେ ଡକ୍ଟର ସୀତାକାନ୍ତ ମହାପାତ୍ର, ରିଟ୍‌ବର୍ଗ ମ୍ୟୁଜିୟମ୍‌ର ନିର୍ଦ୍ଦେଶକ ଡକ୍ଟର ଏବରହାର୍ଡ ଫିସର ଏବଂ ଡକ୍ଟର ପାଠୀ – ଏହି ତିନିଜଣ ସଂସ୍କୃତିସଂପନ୍ନ ପ୍ରଜ୍ଞା ପୁରୁଷ ଏକାଠି ବସି ଓଡ଼ିଶାର ପୋଥିଚିତ୍ର, ମଂଦିର କଳାର ଚିତ୍ର ସଂପର୍କରେ ଏକ ପୁସ୍ତକ ପ୍ରକାଶ କଲେ । ରିଟ୍‌ବର୍ଗ ମ୍ୟୁଜିୟମ୍ ତରଫରୁ ଏହା ଜର୍ମାନ୍ ଭାଷାରେ ପ୍ରକାଶ ପାଇଥିଲା । ବହିଟିର ନାମ ଥିଲା– 'ଓଡ଼ିଶା : କଳା ଓ ସଂସ୍କୃତି ଉତ୍ତର ପୂର୍ବ ଭାରତର' (Odisha : Kunst and Kultur in Nordost India) । ଡକ୍ଟର ଏବର ହାର୍ଡ ଫିସର ହିଁ ଡକ୍ଟର ପାଠୀଙ୍କର ପରମ ବନ୍ଧୁ ଥିଲେ ଯିଏ କି ଜର୍ମାନୀର ରିଟ୍‌ବର୍ଗ ମ୍ୟୁଜିୟମ୍‌ରେ ଓଡ଼ିଶାର କଳା ସଂସ୍କୃତି ସଂପର୍କରେ ପୁସ୍ତକ ଲେଖିବା ପାଇଁ ତାଙ୍କୁ ପ୍ରତିବର୍ଷ ଆହ୍ୱାନ କରିଥାନ୍ତି । ତାଙ୍କ ସହିତ ମିଶି ସେ ଓଡ଼ିଶାର କଳା ସଂପର୍କରେ ନଅ (୦୯)ଟି ବୃହତ୍‌କାୟ ପୁସ୍ତକ ରଚନା କରିଛନ୍ତି । ଦିନନାଥଙ୍କର ଦୁଇଟି ପିଏଚ.ଡି ଗବେଷଣା ମଧ୍ୟ ଓଡ଼ିଶାର କଳା ସଂସ୍କୃତି ଉପରେ ଆଧାରିତ । ଚିତ୍ରଶିଳ୍ପୀ ଦିନନାଥ ପାଠୀ ଚିତ୍ର ସୃଜନ ସହ ସାରସ୍ୱତ ସୃଜନ କର୍ମ ମଧ୍ୟ କରିଛନ୍ତି । ଏହି ସାହିତ୍ୟ ସାଧନା ପୁଣି ସବୁ ଦିଗକୁ ବିସ୍ତାରିତ




ହୋଇଛି । ଗଳ୍ପ, ଉପନ୍ୟାସ, କବିତା, ଭ୍ରମଣ କାହାଣୀ, ଆତ୍ମଜୀବନୀ, ଅନୁବାଦ ସାହିତ୍ୟ, ପ୍ରବଂଧ, ଲଳିତ ନିବଂଧ, ଗବେଷଣା – ଏ ସମସ୍ତ ଦିଗକୁ ଛୁଇଁଥିବା ଦିନନାଥ କିନ୍ତୁ ଜଣେ ନିରୁତା ଏବଂ ନିଆରା ଚିତ୍ରକର । ବିଭିନ୍ନ ଭାଷାରେ ଏଯାବତ୍ ପ୍ରାୟ ୧୦୦ ପାଖାପାଖି ପୁସ୍ତକ ତାଙ୍କର ପ୍ରକାଶ ପାଇସାରିଛି । ଆହୁରି ଅନେକ ପୁସ୍ତକ ଅପ୍ରକାଶିତ ଭାବରେ ରହିଯାଇଛି । ତେବେ ତାଙ୍କ ସୃଜନ ପ୍ରକ୍ରିୟାରେ ସେ ତିନିଗୋଟି କଥାକୁ ଗୁରୁତ୍ୱ ଦେଇଛନ୍ତି । ୧. ଚିତ୍ରରଚନା, ୨. ଚିତ୍ରକଳା ସଂପର୍କରେ ଗବେଷଣା ଏବଂ ୩. ଚିତ୍ରକଳାକୁ ନେଇ ସାହିତ୍ୟ ସର୍ଜନା । ଏହି ତିନୋଟି ପ୍ରକ୍ରିୟାରେ ଓଡ଼ିଶାର କଳାକୁ ବ୍ୟକ୍ତିଗତ ଅନୁଭୂତି ଓ ଉପଲବ୍ଧରେ ପରଖି ଓଡ଼ିଆ, ଇଂରାଜୀ ଏବଂ ଜର୍ମାନ ଭାଷା ମାଧ୍ୟମରେ ବିଶ୍ୱସ୍ତରରେ ସେ ପହଂଚାଇ ପାରିଛଂତି ।

ସଂପାଦନା କ୍ଷେତ୍ରରେ ତାଙ୍କର ଅବଦାନକୁ ଅସ୍ୱୀକାର କରିହେବନି । କଳା ସଂପର୍କୀତ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ବିଭିନ୍ନ କର୍ମଶାଳା, ସଂପାନ ଏବଂ ସେମିନାର୍‌ର ଆୟୋଜନ କରି କ୍ୟାଟ୍‌ଲଗ୍ (catlog), ପୁସ୍ତିକା (booklet)ତଥା ଉଚ୍ଚମାନର ପତ୍ରିକା ପ୍ରକାଶ କରିବାରେ ଡକ୍ଟର ଦିନନାଥ ଥିଲେ ଜଣେ ପ୍ରବୀଣ ଭିଜୁଆଲାଇଜର୍ ଏବଂ ଦକ୍ଷ ଡିଜାଇନର୍ । ତାଙ୍କ ତତ୍ତ୍ୱାବଧାନରେ ଏ ପର୍ଯ୍ୟନ୍ତ ପ୍ରକାଶ ପାଉଥିବା ଏକ ଅନ୍ତର୍ଜାତୀୟ କଳା ସଂବାଦ ପତ୍ରିକା 'ଅଂଗରାଗ' କଳା କ୍ଷେତ୍ରରେ ଏକ ନବଜାଗରଣ । ପୁସ୍ତକର ପରିପାଟୀ ବେଶ୍ ଆକର୍ଷଣୀୟ । ଏହା ଏକ ନୃତ୍ୟଭିତ୍ତିକ ପତ୍ରିକା । ପରିପାଟୀ ବା (get up) ରେ ଡକ୍ଟର ପାଠୀ ଏକ ସାଲିସ୍‌ବିହୀନ ବ୍ୟକ୍ତି । ପତ୍ରିକା ଆକର୍ଷଣୀୟ ନହେଲେ ତାଙ୍କ ମନ ବୁଝେନି । ସେଥିପାଇଁ ଦିନରାତି ପ୍ରେସ୍‌ରେ ଜଗି ବସିଥାନ୍ତି ପ୍ରିଣ୍ଟିଂ ବା ପ୍ରକାଶନକୁ ଆକର୍ଷଣୀୟ କରିବା ପାଇଁ ।

କର୍ମ ଚଂଚଳତା ବୋଧହୁଏ ତାଙ୍କର ସହଜାତ ପ୍ରବୃତ୍ତି ଥିଲା । କୌଣସି ପରିସ୍ଥିତିରେ ବି ବସିଯିବା କିମ୍ୱା ଥକିଯିବାରେ ସେ ବିଶ୍ୱାସ କରୁନଥିଲେ । ନଇଲେ କି ଦିଗପହଣ୍ଡିରୁ ଆସି ରାଜଧାନୀରେ ଏଠି ସେଠି ମୁଣ୍ଡ ଗୁଂଜି ଶେଷରେ ଭୁବନେଶ୍ୱରକୁ ଚଳଚଂଚଳ କରିଦେଲେ । ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ କେତେବେଳେ ସଭାସମିତି, ସେମିନାର୍, ଚିତ୍ରକଳା ପ୍ରଦର୍ଶନୀ, ଆଲୋଚନା ତ ପୁଣି କେତେବେଳେ ପୁସ୍ତକ ପ୍ରକାଶନ ଓ ଲୋକାର୍ପଣ ଉତ୍ସବ । ସେଇ ଲୋକ ପୁଣି ପର କ୍ଷଣରେ ଆବିର୍ଭାବ ହେଉଥିଲେ ଶାସ୍ତ୍ରୀୟ ତଥା ଲୋକନାଟ୍ୟ ଓ ପାରଂପରିକ ନାଟ୍ୟ ଶାସ୍ତ୍ରର ନିର୍ଯ୍ୟାସ/ତତ୍ତ୍ୱ ସଂପର୍କରେ ଚିନ୍ତା କରିବାକୁ । ଏଠି ସେଠି ସବୁଠି କିଛି ନା କିଛି କରି ସେଥିରେ ସେ ସଫଳ ହେଉଥିଲେ । 'ଅଂଗରାଗ'ର ସଂପାଦନା ହେଉ, 'ଇମେଜିଂ ଓଡ଼ିଶା'ର ପରିକଳ୍ପନା ହେଉ କିମ୍ୱା ଚିଲିକା କୂଳର 'ପୂର୍ବାଶା'ର ଲୋଗୋ ପ୍ରସ୍ତୁତିରେ ହେଉ– ସବୁଠି ସେ ଛାଡ଼ିଯାଇଛନ୍ତି ଏକ ନିଆରା ଅନନ୍ୟ ପାଠୀମାର୍କା ଛାପା । ସମସ୍ତଙ୍କ ପ୍ରତି ସମଭାବାପନ୍ନ ସ୍ୱଭାବ ଥିଲା ତାଙ୍କର ଏକ ବିଶେଷ ଗୁଣ– ଯେଉଁଥିପାଇଁ ବହୁ ଉଚ୍ଚ ପଦବୀଧାରୀ ପ୍ରଶାସକଙ୍କଠାରୁ ଆରଂଭ କରି ଶିଳ୍ପୀ, ଜ୍ଞାନଜୀବୀ, ସାହିତ୍ୟିକ, ନୃତ୍ୟଶିଳ୍ପୀ, ଛାତ୍ରଛାତ୍ରୀ, ସାଧାରଣ ବ୍ୟକ୍ତି ବର୍ଗ ଆକର୍ଷିତ ହୋଇ ଆସୁଥିଲେ ତାଙ୍କ ଆଡ଼କୁ । ମିଷ୍ଟଭଂଗୀରେ ରଂଗେଇ ରସେଇ କଥା କହି ବଂଧୁତ୍ୱପୂର୍ଣ୍ଣ ଆବେଗରେ ମନ ମୋହିବାରେ ସେ ଥିଲେ ଅତ୍ୟନ୍ତ ଧୁରୀଣ । ଜଣେ ଆଇ.ଏ.ଏସ୍ ଅଫିସର ସହ ଯେଭଳି ଆତ୍ମୀୟତାପୂର୍ଣ୍ଣ ବ୍ୟବହାର, ଜଣେ ଚା' ଦୋକାନୀ ସହ ସେହିପରି ଅଂତରଂଗତା । ଏଇ ବିରଳ ଗୁଣର ଅଧିକାରୀ ହେତୁ ସେ ଅନେକ ବଂଧୁ ସୃଷ୍ଟି କରିପାରିଛନ୍ତି ।

ଏତେ ବିରାଟ ପୁରୁଷଙ୍କୁ ସ୍ୱଳ୍ପ ଜ୍ଞାନରେ ମପାଯାଇ ନପାରେ । ବିଶ୍ୱ ସ୍ତରରେ ଆମ ଶିଳ୍ପକଳାକୁ ପହଂଚାଇଥିବା ଏଇ ବିଶ୍ୱ ମଣିଷ ଅଟକି ଯାଇ ନାହାନ୍ତି କେବେ । ତାଙ୍କ ହାତର ତୂଳୀ ବିଶ୍ରାମ ନେବାକୁ ଚାହିଁଲେ ତାକୁ ବିଶ୍ରାମ ଦେଇ ଧରିଛନ୍ତି କଲମ । କଲମ ବିଶ୍ରାମ ନେବାକୁ ଚାହିଁଲେ ତାକୁ ରଖି ବୁଝିଛଂତି ଓଡ଼ିଶାର ପାରଂପରିକ ଲୋକନାଟ୍ୟ କଥା । ଓଡ଼ିଶୀ ନୃତ୍ୟର ମୌଳିକତା ଓ ଶାସ୍ତ୍ରୀୟତାର ଭବିଷ୍ୟତକୁ ନେଇ ୩୫୦ ପୃଷ୍ଠା ସଂବଳିତ ଏକ ଗବେଷଣାଧର୍ମୀ ପୁସ୍ତକ 'ରିଥିଙ୍କିଙ୍ଗ୍ ଓଡ଼ିଶା' (rethinking Odisha) ପ୍ରକାଶ କରିଛଂତି । ଆଜି ଏହା ଦେଶ ବିଦେଶରେ ସବୁ ନୃତ୍ୟଶିଳ୍ପୀ ଏବଂ ଗବେଷକଙ୍କ ଆଖି ଖୋଲିଦେଇଛି । ଡ୍ୟାନ୍‌ସିଂ ଗଂଜାମ (dancing Ganjam) ଓଡ଼ିଶୀ ନୃତ୍ୟକଳା କ୍ଷେତ୍ରରେ ତାଙ୍କର ଆଉ ଏକ ନୂତନ ସୃଜନ ସଂଯୋଜନା । ଗଂଜାମର ଲୋକନୃତ୍ୟ, ପାରଂପରିକ ନୃତ୍ୟ ଏବଂ ଆଦିବାସୀ ନୃତ୍ୟର ଅନ୍ତଃ ସଂଯୋଜନା ତାଙ୍କର ମଧ ଅନ୍ୟ ଏକ ପ୍ରୟାସ । ଗତବର୍ଷ କୁଆଲାଲୁମ୍ପୁରର ରାମଲୀ ଇବ୍ରାହିମ୍

ଗ୍ରୁପ୍ ଏହାକୁ ଅଭିନୟ କରିଥିଲେ ଏବଂ ଚଳିତ ବର୍ଷ ଦିଲ୍ଲୀ, ରାଉରକେଲା ଓ ଭୁବନେଶ୍ୱରରେ ଦର୍ଶକଙ୍କୁ ଅଭିଭୂତ କରିଥିଲା । ଏତେସବୁ ସୃଜନଧାରା ପ୍ରବାହିତ ହେଉଥିଲେ ପାଠୀବାବୁଙ୍କ କଳ୍ପ ଜଗତରୁ । ମାତ୍ର ସେ କେବେ ଥକିଯାଇ ନାହାନ୍ତି କିମ୍ବା ଅବଶ ହୋଇଯାଇ ନାହାନ୍ତି । ଚିତ୍ର ସହ ଏଇସବୁ ସୃଜନ ବିଭବକୁ ଏକାଠି କରି ଚାଲିଛନ୍ତି ବିଶ୍ୱାୟନରେ । ଦିନନାଥଙ୍କୁ ଚିତ୍ରନାଥ, ଶବ୍ଦନାଥ ଏବଂ ଆହୁରି ଯେତେ 'ନାଥ'ରେ ବିଭୂଷିତ କଲେ ବି ସବୁ ବିଶେଷଣ ତାଙ୍କ କଳାତ୍ମକ ବ୍ୟକ୍ତିତ୍ୱ ଆଗରେ ନିଷ୍ପ୍ରଭ ହୋଇଯିବ । ଏସବୁର ଉର୍ଦ୍ଧ୍ୱରେ ରହି ସେ କେବଳ ଚାଲିଛନ୍ତି ଆଉ ଚାଲିଛନ୍ତି ନୂତନର ଅନ୍ୱେଷଣରେ । ସତେଯେପରି ସୃଜନୀ ପଥରେ ଚାଲୁଚାଲୁ ସ୍ୱଗତୋକ୍ତି କରୁଥିଲେ, "miles to go before I sleep and miles to go before I sleep." ବୋଧହୁଏ ଦିନନାଥ ହିଁ ପ୍ରଥମ ପୁରୁଷ ଯିଏ କି ଓଡ଼ିଶାର ଚିତ୍ରକଳା ସମେତ ଅନ୍ୟ କଳା ତତ୍ତ୍ୱକୁ କାନ୍ଧରେ ବୋହି ଚାଲିଥିଲେ । ସବୁ କଳା ବିଭବ ଭିତରେ ଏକ ସମନ୍ୱୟର ସେତୁଟିଏ ରଚି ଦେଇଥିଲେ ।

ତାଙ୍କର ପ୍ରତିଟି କାର୍ଯ୍ୟରେ ଥିଲା ନିଆରା ନିଆରା ଭାବ । ଚାଲିବା, ବସିବା, କଥା କହିବା, ପୋଷାକ ପିନ୍ଧିବା ଆଦି ଯେକୌଣସି ନିତିଦିନିଆ ସାଧାରଣ ଘଟଣା କୁହାଯାଉନା କାହିଁକି – ସବୁଥିରେ ଥିଲା ତାଙ୍କର ଗୋଟିଏ ପୃଥକ୍ ରୁଚିବୋଧ, ଥିଲା କଳାତ୍ମକ ଦୃଷ୍ଟିଭଙ୍ଗୀ । ଏହି ନୂଆ ଢଙ୍ଗର ରୁଚିବୋଧହିଁ ଅନ୍ୟମାନଙ୍କୁ ଟାଣି ଆଣୁଥିଲା ତାଙ୍କ ଆଡ଼କୁ । ଏହାହିଁ ଏକ ନିରୁତା କଳାକାରର ଜୀବନବୋଧ ।

ଦିଗପହଣ୍ଡିରୁ ଦିଗନ୍ତକୁ ଛୁଇଁ ଯାଇଥିବା ଏଇ ପ୍ରବାଦ ପୁରୁଷଙ୍କର ଆହୁରି ଅନେକ ବିଶେଷ ଅବଦାନକୁ ଏ ଓଡ଼ିଆ ଜାତି ଭୁଲି ପାରିବନି । ଚିତ୍ରକଳାର ଅଭିବୃଦ୍ଧି ପାଇଁ ବିଶିଷ୍ଟ ଶିଳ୍ପୀ ଅସୀମ ବସୁଙ୍କ ସହ ମିଶି 'ଚିତ୍ରମ୍' କଳା ଶିକ୍ଷାନୁଷ୍ଠାନ ଗଢ଼ିଥିବା ଦିନନାଥ ୧୯୬୭-୭୨ ମସିହା ପର୍ଯ୍ୟନ୍ତ ଭୁବନେଶ୍ୱର କେନ୍ଦ୍ରୀୟ ବିଦ୍ୟାଳୟ ନଂ-୧ରେ ଚିତ୍ରକଳା ଅଧ୍ୟାପକ ଥିଲେ । ରାଜ୍ୟ ସଂଗ୍ରହାଳୟର କ୍ୟୁରେଟର ପଦବୀରେ ରହିଲେ ୧୯୭୨ରୁ ୧୯୭୯ ପର୍ଯ୍ୟନ୍ତ । ରାଜ୍ୟ ପର୍ଯ୍ୟଟନ ବିଭାଗରେ ଡିଭିଜିନାଲ୍ ମ୍ୟାନେଜର ଭାବରେ କାର୍ଯ୍ୟ କଲେ ୧୯୭୯ରୁ ୮୪ ପର୍ଯ୍ୟନ୍ତ । 'ଚିତ୍ରମ୍' କଳା ଅନୁଷ୍ଠାନକୁ ଆହୁରି ବ୍ୟାପକ କରି ଡକ୍ଟର ପାଠୀ ତିଆରି କଲେ ବି.କେ. ଚାରୁ ଓ କାରୁକଳା ମହାବିଦ୍ୟାଳୟ ଏବଂ ପ୍ରତିଷ୍ଠାତା ଅଧ୍ୟକ୍ଷ ଭାବରେ ରହି ଏହିଠାରୁ ସେ ବହୁ ଛାତ୍ରଛାତ୍ରୀ ଉତାରିଛନ୍ତି, ଯେଉଁମାନେ କି ଆଜି ଜାତୀୟ/ଅନ୍ତର୍ଜାତୀୟ କ୍ଷେତ୍ରରେ ଜଣେ ଜଣେ ପ୍ରତିଷ୍ଠିତ ଶିଳ୍ପୀ ହୋଇପାରିଛନ୍ତି । ଓଡ଼ିଶାର କଳା ଆଂଦୋଳନକୁ ବିଶ୍ୱ ସ୍ତରରେ ପହଂଚାଇବାରେ ତାଙ୍କଦ୍ୱାରା ପ୍ରତିଷ୍ଠିତ ବି.କେ. (ବିଭୂତି କାନୁନ୍‌ଗୋ) ଚାରୁ ଓ କାରୁକଳା ମହାବିଦ୍ୟାଳୟର ବିଶେଷ ଗୁରୁତ୍ୱ ରହିଛି । ପରେ ପରେ ଜାତୀୟ ଲଳିତ କଳା ଏକାଡେମୀ, ନୂଆଦିଲ୍ଲୀର ସଚିବ ଏବଂ ଜବାହରଲାଲ୍ ନେହେରୁ ଫେଲୋଭାବେ କାର୍ଯ୍ୟ କରିବାର ସୌଭାଗ୍ୟ ଅର୍ଜନ କରିଥିଲେ । ୧୯୮୬-୮୭ରେ ସ୍ୱିଡେନ୍‌ଠାରେ ଅନୁଷ୍ଠିତ 'ଭାରତ ଉତ୍ସବ'ର କମିଶନର ତଥା ଭିଜ୍ୟୁଏଲାଇଜର ଏବଂ ଡିଜାଇନର ଥିଲେ ଦିନନାଥ । ଇଣ୍ଡୋନେସିଆରେ ଅନୁଷ୍ଠିତ ହୋଇଥିବା କଳିଙ୍ଗ ବାଲିଯାତ୍ରାର ମୁଖ୍ୟ ବିନ୍ଧାଣି ଡକ୍ଟର ପାଠୀଙ୍କ ଚମତ୍କାର କାର୍ଯ୍ୟ ଦକ୍ଷତାରେ ମୁଗ୍ଧ ହୋଇ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ତାଙ୍କ ମୁଣ୍ଡରେ ବାଂଧି ଥିଲେ ଶ୍ରେଷ୍ଠ ଶିଳ୍ପୀର ପାଟବସ୍ତ୍ର । ବନାରସର ଏଲିସ୍‌ବୋନର୍ ଫାଉଣ୍ଡେସନ୍‌ର ନିର୍ଦ୍ଦେଶକ ହୋଇ ଭାରତୀୟ କଳାତତ୍ତ୍ୱର ବହୁ ଗହନ କଥାମାନ ପୁସ୍ତକ ଆକାରରେ ପ୍ରକାଶ କରିଛନ୍ତି । ଓଡ଼ିଶା ଲଳିତ କଳା ଏକାଡ଼େମୀର ସଂପାଦକ ଥିବା ସମୟରେ ଓଡ଼ିଶାର କଳା ଓ କଳାକାରଙ୍କ ପାଇଁ ବିଭିନ୍ନ ପ୍ରକାରର ଗଠନମୂଳକ କାର୍ଯ୍ୟକ୍ରମମାନ ହାତକୁ ନେଇ ସଫଳ ହୋଇଛନ୍ତି । କଳା ଚିନ୍ତକ, କଳା ଐତିହାସିକ, କଳା ଗବେଷକ, ସାହିତ୍ୟିକ, ଲୋକନାଟ୍ୟ ତଥା ଶାସ୍ତ୍ରୀୟ ନାଟ୍ୟକଳାର ଗବେଷକ- ଇତ୍ୟାଦି ବହୁ ବିସ୍ତାରିତ ପଥରେ ଯାତ୍ରା କରି ଓଡ଼ିଶାକୁ ଦେଇଛନ୍ତି ଅନେକ କିଛି । ଯାତ୍ରା ପଥରେ ପାଦଟଣା ଖାଇଲେ ବି ସ୍ୱାଭିମାନୀ ଶିଳ୍ପୀ ଦିନନାଥ ସେସବୁକୁ ଖାତିର୍ ନକରି ଆଗେଇଛନ୍ତି ତାଙ୍କ ରାସ୍ତାରେ । ସୃଜନ ଯାତ୍ରାରେ ବିଶ୍ୱର ପ୍ରାୟ ୩୦ରୁ ଉର୍ଦ୍ଧ୍ୱ ରାଷ୍ଟ୍ର ଭ୍ରମଣ କରିବା ସହ ଅନେକ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଶିଳ୍ପୀମାନଙ୍କୁ ଓଡ଼ିଶାର କଳା/ପରଂପରା ସହ ପରିଚୟ କରାଇଛନ୍ତି । ଓଡ଼ିଶାର କଳା ସାହିତ୍ୟକୁ ଏହା ତାଙ୍କର ଏକକ ଅବଦାନ ବୋଲି କହିବାକୁ ହେବ ।

କଳା ସଂସ୍କୃତିର ଅନୁଷ୍ଠାନ ବି କିଛି କମ୍ ଗଢ଼ିନାହାନ୍ତି ଦିନନାଥ । ସହଯୋଗୀ ଶିଳ୍ପୀବଂଧୁମାନଙ୍କ ସହ ମିଶି ୧୯୬୪ରେ ଭୁବନେଶ୍ୱରରେ ଗଢ଼ିଥିଲେ 'ଶିଳ୍ପୀ ସଂସଦ'।

ଚିତ୍ରଶିଳ୍ପୀ ଅସୀମ ବସୁ, ଅସୀତ୍ ମୁଖାର୍ଜି, ଡି.ଏନ୍.ରାଓ, ଉଦୟ ନାରାୟଣ ଜେନାଙ୍କ ସହଯୋଗରେ ୧୯୭୦ରେ ଗଠନ କରିଥିଲେ 'ଚିତ୍ରମ୍' କଳା ଶିକ୍ଷା ଅନୁଷ୍ଠାନ। ୧୯୭୩ରେ 'ୱାର୍କିଂ ଆର୍ଟିଷ୍ଟସ୍ ଆସୋସିଏସନ୍', ଡକ୍ଟର ବିଜୟ କୁମାର ରଥ (ଷ୍ଟେଟ୍ ଆର୍କିଓଲୋଜିଷ୍ଟ)ଙ୍କ ସହ ମିଶି ପୁଣି ଗଢ଼ିଥିଲେ 'ଓଡ଼ିଶା ରିସର୍ଚ୍ଚ ଜର୍ନାଲ୍' । ଓଡ଼ିଶା କଳା ସଂସ୍କୃତି ସଂପର୍କରେ ଗବେଷଣା କରୁଥିବା ଗବେଷକଙ୍କୁ ପ୍ରୋତ୍ସାହନ ଦେଇ ଆଗକୁ ଆଣିବା ଏ ଅନୁଷ୍ଠାନର ଉଦ୍ଦେଶ୍ୟ ଥିଲା । ୧୯୮୮-୮୯ରେ ନୂଆକରି ଗଢ଼ିଥିଲେ 'ଓଡ଼ିଶା କ୍ରାଫ୍ଟ୍ କାଉନ୍‌ସିଲ' । ଭାରତ ସରକାରଙ୍କର ଏହା ଏକ ପ୍ରକଳ୍ପ । ଗାଁ ଗଣ୍ଡାର ପ୍ରତିଭାବାନ୍ ହସ୍ତଶିଳ୍ପୀମାନଙ୍କୁ ଆର୍ଥିକ ପ୍ରୋତ୍ସାହନ ଦେଇ ସେମାନଂକୁ କଳା ସଂସ୍କୃତିର ମୁଖ୍ୟସ୍ରୋତରେ ସାମିଲ୍ କରିବା ଥିଲା ଏହାର ଆଭିମୁଖ୍ୟ । କେଦାରନାଥ ଗବେଷଣା ପ୍ରତିଷ୍ଠାନର ପ୍ରତିଷ୍ଠାତା ସଭ୍ୟ ଭାବରେ ସେ ବହୁବର୍ଷ ରହି ଆସିଛନ୍ତି । କୋମଳମତି ଶିଶୁ ତଥା ତରୁଣ ତରୁଣୀମାନଙ୍କ ମନରେ ସୃଜନଶୀଳତାର ଅଭିବୃଦ୍ଧି ନିମନ୍ତେ ୧୯୮୮ରେ ତାଙ୍କର ଏକମାତ୍ର କନ୍ୟାର ସ୍ମୃତିରେ ଗଠନ କରିଥିଲେ ଶିଶୁଚିତ୍ର ସଂଗଠନ 'ସୁନନ୍ଦା ପାଠୀ ଫାଉଣ୍ଡେସନ୍' । ଏହାର ଏକ୍‌ଜିକ୍ୟୁଟିଭ୍ ଡିରେକ୍ଟର ଥିଲେ ବିଶିଷ୍ଟ ଶିଳ୍ପୀ ରାମହରି ଜେନା । ସର୍ବଭାରତୀୟ ସ୍ତରରେ ଶିଶୁ ଚିତ୍ରକଳା ପ୍ରଦର୍ଶନୀ ଓ କର୍ମଶାଳା ଆଦିର ଆୟୋଜନ କରି ପିଲାମାନଙ୍କ ଭିତରେ କଳାମନସ୍କ ଚେତନାକୁ ଚିଆଁଇଥିଲେ ସେ । ସେହିପରି 'ଅଂଗରାଗ','ଇପ୍‌କା' ଏବଂ ଆହୁରି ଅନେକ କଳା ଅନୁଷ୍ଠାନର ସେ ପ୍ରତିଷ୍ଠାତା । ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକସଂପର୍କ ବିଭାଗ ତରଫରୁ ଦିଲ୍ଲୀର ପ୍ରଗତି ମଇଦାନରେ ଅନୁଷ୍ଠିତ ହେଉଥିବା ପ୍ରଜ୍ଞାପନ ମେଳାର ବହୁବର୍ଷ ପର୍ଯ୍ୟନ୍ତ ସେ ଥିଲେ ମୁଖ୍ୟ ଭିଜୁଆଲାଇଜର୍, ସଂଯୋଜକ ତଥା ଡିଜାଇନର୍ ।

ସୃଜନଶୀଳତାର ବହୁ ବିସ୍ତାରିତ ଦିଗକୁ ଛୁଇଁଥିବା ଡକ୍ଟର ଦିନନାଥ ପାଠୀ ସେଥିପାଇଁ ଜଣେ ବ୍ୟକ୍ତି ନଥିଲେ । ଏଇସବୁ ଭିତରେ ସେ ପାଲଟି ଯାଇଛନ୍ତି ଏକ ଅନୁଷ୍ଠାନ, ଏକ କର୍ମଚଂଚଳ, ଚଳଚଂଚଳ କଳା ଅନୁଷ୍ଠାନ ।

ତାଙ୍କଦ୍ୱାରା ପରିକଳ୍ପିତ ଓ ରୂପାୟିତ 'ଇଲା ପଣ୍ଡା ସେଣ୍ଟର ଫର୍ ଆର୍ଟସ୍'ର 'ଓଡ଼ିଶା ଆର୍ଟ କନ୍‌କ୍ଲେଭ୍' ମେ ଫେୟାର ହୋଟେଲ୍‌ରେ ଶୁଭ ଉଦ୍‌ଘାଟନୀର ଉତ୍ସବ ଥିଲା ୨୯ ଅଗଷ୍ଟ ୨୦୧୬ ସଂଧ୍ୟାରେ । ସେଥିପାଇଁ ବିଶିଷ୍ଟ ଚିତ୍ରଶିଳ୍ପୀ ଯତୀନ୍ ଦାସଙ୍କ ସମେତ ଭାରତର ବହୁ ପ୍ରତିଷ୍ଠିତ ଶିଳ୍ପୀମାନଙ୍କୁ ସେ ନିମନ୍ତ୍ରଣ କରି ଓଡ଼ିଶା ଆଣିଥିଲେ । ଓଡ଼ିଶା ବାହାରେ ପ୍ରତିଷ୍ଠିତ ୪୦ରୁ ଉର୍ଦ୍ଧ୍ୱ ତାଙ୍କର ପ୍ରାକ୍ତନ ଛାତ୍ରମାନେ ବି ନିମନ୍ତ୍ରିତ ହୋଇ ଆସିଥିଲେ ଓଡ଼ିଶା । ଆୟୋଜନର ସବୁ ଯୋଜନା ଶେଷ ହୋଇସାରିଛି ପୂର୍ବ ଦିନର ବିଳଂବିତ ରାତିରୁ । ସମସ୍ତ ଛାତ୍ରମାନଙ୍କୁ ଏକତ୍ରିତ କରି ଦିନନାଥ ସତେ ଯେପରି ତାଙ୍କଦ୍ୱାରା ବାକିଥିବା ଆହୁରି ଅଧୁରା କାମକୁ ସେମାନଙ୍କ ହାତରେ ନ୍ୟସ୍ତ କରି ଚାଲିଗଲେ ଏକ ଅଶୁଳ ପରିବେଶ ସୃଷ୍ଟି କରି । ୨୯ ଅଗଷ୍ଟ ୨୦୧୬ ସକାଳ ପ୍ରାୟ ୭ ଟା ୧୫ ମିନିଟ୍‌ରେ ପ୍ରାତଃ ଭ୍ରମଣ ଅନ୍ତେ ଛାତିରେ ଯଂତ୍ରଣା ଅନୁଭବ କଲେ ଏବଂ ତତ୍‌କାଳ ତାଙ୍କର ସୁଯୋଗ୍ୟ ପୁତ୍ର ଡକ୍ଟର ସୌଭାଗ୍ୟ କୁମାର ପାଠୀ ଏକ ଘରୋଇ ହସ୍‌ପିଟାଲ୍‌ରେ ଭର୍ତ୍ତିକଲେ ତାଙ୍କୁ । ମାତ୍ର ଡାକ୍ତରଙ୍କ ସମସ୍ତ ଚେଷ୍ଟା ଫେଲ୍ ମାରିଲା......ଦିନନାଥ ଅସ୍ତ ହୋଇଗଲେ; ନା ନା ସେ ଅସ୍ତ ହୋଇ ନାହାନ୍ତି । ଆମଠାରୁ ଅଦୃଶ୍ୟ ହୋଇ ଦିଗନ୍ତରେ ମିଶିଯାଇଛନ୍ତି । ହୁଏତ ଆରପାରିରେ ନିଜ ତେଜ ପ୍ରକଟ କରିବେ । ଓଡ଼ିଶା ରାଜ୍ୟ ସରକାର ତୋପ ସଲାମୀର ସମ୍ମାନରେ ତାଙ୍କୁ ବିଦାୟ ଦେଲେ । ତାଙ୍କ ଅବର୍ତ୍ତମାନରେ କଳା ଜଗତରେ ସତେଯେପରି ଅନ୍ଧାର ଛାଇଗଲା । ଗୋଟିଏ ଯୁଗର ଅବସାନ ହେଲା । ଆଉ କିଛି ଦିନ ପ୍ରଭା ବିକିରଣ କରିପାରି ନଥାନ୍ତେ ବିଶ୍ୱ ମଣିଷ-ଦିନନାଥ...!!!

**ପୁରସ୍କାର ଓ ସମ୍ମାନ:**

କଳାରେ ଅନେକ ଜାତୀୟ ତଥା ଅନ୍ତର୍ଜାତୀୟ ସମ୍ମାନ ପାଇଥିବା ଡକ୍ଟର ପାଠୀଙ୍କ ସଫଳତାର ତାଲିକା ବେଶ୍ ଦୀର୍ଘ । ସେଥିରୁ କିଂଚିତ୍ ପ୍ରମୁଖ ପୁରସ୍କାର ଓ ସମ୍ମାନରୁ କିଛି.....

- କଳା ଇତିହାସର ଉତ୍କର୍ଷ ପାଇଁ ଏ.ଏଲ୍.ବାସମ୍ ସ୍ମୃତି ପୁରସ୍କାର -୧୯୮୦ ।
- ଚିତ୍ରକଳା ପାଇଁ ଭାରତର ରାଷ୍ଟ୍ରପତିଙ୍କ ରଜତ ଫଳକ -୧୯୮୮ ।
- ଚୀନ୍ ସରକାରଙ୍କ ସମ୍ମାନ – ୧୯୯୮ ।

- ସାହିତ୍ୟ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ ବିଷୁବ ପୁରସ୍କାର ।
- ଏ.ଆଇ.ଏଫ୍.ଏ.ସି.ଏସ୍ ପକ୍ଷରୁ ରୌପ୍ୟ ଫଳକ ଓ ଜୀବନବ୍ୟାପୀ ସାଧନା ପାଇଁ 'କଳାଶ୍ରୀ' ସମ୍ମାନ ।
- ଓଡ଼ିଶା ଲଳିତ କଳା ଏକାଡ଼େମୀ ପୁରସ୍କାର – ୧୯୭୬ ।
- ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଓରିଏଣ୍ଟାଲ୍ ଏଣ୍ଡ୍ ଓଡ଼ିଶାନ୍ ଷ୍ଟଡିଜ୍ ସମ୍ମାନ ।
- ଅନ୍ତର୍ଜାତୀୟ ରିଟ୍‌ବର୍ଗ ଆୱାର୍ଡ–୨୦୧୪ ।
- ଉତ୍କଳ ବିଶ୍ୱବିଦ୍ୟାଳୟ ଓ ବିଶ୍ୱଭାରତୀରୁ ପିଏଚ.ଡି ଉପାଧି ।
- ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ସମ୍ମାନସୂଚକ ଡି.ଲିଟ୍ ।
- କଲିକତା ଫାଇନ୍ ଆର୍ଟ ଏକାଡେମୀ ସ୍ୱର୍ଣ୍ଣ ପଦକ ।
- ଜବାହରଲାଲ୍ ନେହେରୁ ଫେଲୋସିପ୍ – ୧୯୯୬ ।
- ଆଲିସ୍ ବୋନର ଫେଲୋସିପ୍ – ୧୯୯୫ ।
- କଳିଙ୍ଗ ସାହିତ୍ୟ ସମାଜ ଭଂଜ ପ୍ରତିଭା ସମ୍ମାନ – ୨୦୦୦ ।
- ଉତ୍କଳ ସାହିତ୍ୟ ସମାଜ ଉପନ୍ୟାସ ସମ୍ମାନ – ୨୦୦୬ ।
- ସିଟିଜେନ୍ ଆୱାର୍ଡ –୨୦୧୨ ।

ଏଥିସହିତ ଦେଶ ବିଦେଶରୁ ପାଇଥିବା ଆହୁରି ଅନେକ ପୁରସ୍କାର ଓ ସମ୍ମାନର ଅଧିକାରୀ ସେ ।

ଚିତ୍ରକଳା ବିଭାଗ
କେନ୍ଦ୍ରୀୟ ବିଦ୍ୟାଳୟ, ନଂ–୪
ନୀଳାଦ୍ରି ବିହାର, ଭୁବନେଶ୍ୱର–୨୧

# କିଶୋରୀମାନଙ୍କ ସଶକ୍ତିକରଣ ନିମନ୍ତେ ଓଡ଼ିଶା ରାଜ୍ୟ ସରକାରଙ୍କ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ଏକ ଅଭିନବ ପ୍ରୟାସ




ଶ୍ରୀ ମହେନ୍ଦ୍ର କୁମାର ମଲ୍ଲିକ, ଏସ୍‌ପିଡି, ଓପିଇପିଏ, ଶ୍ରୀମତୀ କଳ୍ପନା ବେହେରା, ଉପନିର୍ଦ୍ଦେଶକ, ବାଳିକା ଶିକ୍ଷା ଏବଂ ଶ୍ରୀମତୀ ଲହରୀ ମହାନ୍ତି, ଷ୍ଟେଟ୍ ଜେଣ୍ଡର କୋଅର୍ଡିନେଟର ବାଳିକାମାନଙ୍କ ନିମନ୍ତେ ଆତ୍ମରକ୍ଷା ତାଲିମ୍ କାର୍ଯ୍ୟକ୍ରମରେ ଉପସ୍ଥିତ ଅଛନ୍ତି ।



ସାଂପ୍ରତିକ ଦୃଶ୍ୟପଟ୍ଟରେ ବାଳିକାମାନଙ୍କ ମଧ୍ୟରେ ଆତ୍ମବିଶ୍ୱାସ ବୃଦ୍ଧି ଓ ସେମାନଙ୍କ ନିରାପତ୍ତା ତଥା ସୁରକ୍ଷା ହେଉଛି ଗୁରୁତ୍ୱପୂର୍ଣ୍ଣ । ବାଳିକାମାନଙ୍କ ମଧ୍ୟରେ ଆତ୍ମ ପ୍ରତ୍ୟୟ ସୃଷ୍ଟି ଏବଂ ସେମାନଙ୍କୁ ସଶକ୍ତ କରିବା ଲକ୍ଷ୍ୟରେ ୨,୫୦,୦୦୦ ଜଣ କିଶୋରୀଙ୍କୁ ଆତ୍ମରକ୍ଷା ତାଲିମ୍ ପ୍ରଦାନ କରାଯାଇଛି ।

# ଶକ୍ତି ସ୍ୱରୂପାଙ୍କ ବାହନ ପ୍ରସଙ୍ଗ

**ଡକ୍ଟର ତ୍ରିନାଥ ପଟ୍ଟନାୟକ**

ଶକ୍ତି ସ୍ୱରୂପା ଜଗଦମ୍ବାଙ୍କର ଆରାଧନା ହିଁ ଶକ୍ତି ଉପାସନା । ଶକ୍ତିର ତାତ୍ପର୍ଯ୍ୟ କେବଳ ବଳ ନୁହେଁ, ଶକ୍ତି ଏକ ଭାବ, ଯାହାକି ବ୍ୟକ୍ତିର ସାମର୍ଥ୍ୟକୁ ବ୍ୟକ୍ତ କରିଥାଏ । ଶକ୍ତି ଓ ଶକ୍ତିମାନ କଦାପି ଅଲଗା ନୁହଁନ୍ତି । ଯେପରି ଚନ୍ଦ୍ର ଥିଲେ ଚାନ୍ଦିନୀ ଅଛି, ଦୀପ ପ୍ରଜ୍ୱଳିତ ହେଲେ ପ୍ରକାଶ ବିଚ୍ଛୁରିତ ହୁଏ, ସେହିଭଳି ଶକ୍ତି ଥିଲେ ଶକ୍ତିମାନ ହିଁ ଦେଖାଦେବ । ଜଣେ ଶକ୍ତିମାନ ହେବାକୁ ହେଲେ ସର୍ବପ୍ରଥମେ ଶକ୍ତି ଆରାଧନା କରିବାକୁ ପଡିବ । ସେଥିପାଇଁ ସିଦ୍ଧି ଆବଶ୍ୟକ । ସିଦ୍ଧି ପାଇଁ ସାଧନା ଲୋଡ଼ା । 'ଶ'ର ଅନ୍ୟ ନାମ ସୁବିଧା, ସୌଭାଗ୍ୟ ଓ 'କ୍ତି'ର ଅନ୍ୟନାମ ପରାକ୍ରମ, ବୁଦ୍ଧି, ବଳ । ଏଣୁ ଯିଏ ଐଶ୍ୱର୍ଯ୍ୟ ପରାକ୍ରମ ପ୍ରଦାନ କରେ ସେ ହିଁ ଶକ୍ତି ।

ଐଶ୍ୱର୍ଯ୍ୟ ବଚନଃ ଶକ୍ତିଃ ପରାକ୍ରମ ଏତ୍ ଚ୍
ତତ୍ ସ୍ୱରୂପା ତୟୋଦାତ୍ରୀ ସା ଶକ୍ତି ପରକୀର୍ତ୍ତିତ ।

ମା' ଦୁର୍ଗା ହିଁ ଶକ୍ତି ସ୍ୱରୂପା । ସେ ଐଶ୍ୱର୍ଯ୍ୟ ପ୍ରଦାନ କରନ୍ତି, ଯଶ ଓ ପରାକ୍ରମ ମଧ୍ୟ ପ୍ରଦାନ କରିଥାନ୍ତି । ପରାକ୍ରମର ସ୍ମାରକ ହେଉଛି 'ସିଂହ' । ଯିଏ ନିଜର ଜୀବତ୍ୱ ଭାବକୁ ହିଂସା କରୁଥାଏ, ସେ ହିଁ ସିଂହଧର୍ମୀ । ନୀତି ଶାସ୍ତ୍ରରେ ଉଦ୍‌ଯୋଗୀ ଭାବକୁ ତଥା ପୁରୁଷକୁ ସିଂହ ସହିତ ତୁଳନା କରାଯାଇଛି । ଉଦ୍‌ଯୋଗିନଂ ପୁରୁଷ ସିଂହମୁପୈତି ଲକ୍ଷ୍ମୀ । ଗୀତାରେ ମଧ୍ୟ ଭଗବାନ ଶ୍ରୀକୃଷ୍ଣ ସାଧକ ଶ୍ରେଷ୍ଠ ଅର୍ଜୁନଙ୍କୁ– 'ପୁରୁଷ ବ୍ୟାଘ୍ର' ବୋଲି ସଂବୋଧନ କରିଛନ୍ତି । ସିଂହ ଓ ବ୍ୟାଘ୍ର ଦୁହେଁ ସମାନଧର୍ମୀ । ଦୁହିଁଙ୍କର ପ୍ରକୃତି ଓ ପରାକ୍ରମ ଏକ । ଦେବୀ ଦୁର୍ଗା ଏହି ପରାକ୍ରମୀ ଜୀବକୁ ବାହନ ରୂପେ ଗ୍ରହଣ କରିଛନ୍ତି । ସେଥିପାଇଁ ଦୁର୍ଗାଙ୍କୁ ସିଂହବାହିନୀ ବୋଲି କୁହାଯାଏ । ଯେତେ ଦେବୀ ଓ ଦେବତା ଅଛନ୍ତି, ସମସ୍ତଙ୍କର କୌଣସି ନା କୌଣସି ବାହନ କିମ୍ବା ଯାନ ଅଛି । ଯେଉଁ ଦେବଶକ୍ତି ଯେଉଁ ପଶୁ ଉପରେ ପ୍ରତିଷ୍ଠିତ ବା ସାଧନ ରୂପେ ସ୍ୱୀକୃତି ଦେଇଛନ୍ତି ସେହି ପଶୁ ସେହି ଦେବ ଦେବୀଙ୍କର ବାହନ । ଶ୍ରୀଦୁର୍ଗା ମହାଶକ୍ତି ଓ ସମସ୍ତ କାର୍ଯ୍ୟ ସିଦ୍ଧି କରିବାରେ ସମର୍ଥା । ତାଙ୍କରି ଅଂଶରୁ ବ୍ରହ୍ମା, ବିଷ୍ଣୁ ଓ ଶିବ ଉତ୍ପନ୍ନ ହୋଇଛନ୍ତି । ନିଃସନ୍ଦେହ ଯେ ଜଗତମାତାଙ୍କର ଆରାଧନା ସମସ୍ତ ମନୋରଥକୁ ପୂର୍ଣ୍ଣ କରିଥାଏ । ଜଗଦମ୍ବାଙ୍କର ସେବା ସର୍ବାଭୀଷ୍ଟଦାୟିନୀ । ଶ୍ରୀଦୁର୍ଗା ସର୍ବଶକ୍ତିମୟୀ ହୋଇଥିବାରୁ ତାଙ୍କର ବାହନ ଶକ୍ତିମାନ ସିଂହ ।

ସମସ୍ତ ଦେବ ଶକ୍ତିର ଏକୀଭୂତ ସ୍ୱରୂପ ଶ୍ରୀଦୁର୍ଗା । ତା'ପରେ ଦେବଗଣ ଦେବୀଙ୍କୁ ନିଜ ନିଜର ଅସ୍ତ୍ରଶସ୍ତ୍ର ପ୍ରଦାନ କରିଥିଲେ । ଅସ୍ତ୍ରଶସ୍ତ୍ର ଲାଭ କଲାପରେ ମହାଦେବୀ ଦେବଗଣଙ୍କୁ ଅନୁରୋଧ କରିଥିଲେ ବାହନ ନିମନ୍ତେ ।

ଏମନ୍ତ ବଚନ ଶୁଣି ସବୁ ଦେବମାନେ
ଯେ ଯାହାର ଅସ୍ତ୍ରମାନ ଦିଅନ୍ତି ବହନେ ।
ଶସ୍ତ୍ର ଶାସ୍ତ୍ର ପାଇ ବୋଇଲେକ ଗୋସାମଣୀ
ବାହନ ବିନୁ ଦୈତ୍ୟକୁ ପାରିବି କି ଜିଣି । (ଚଣ୍ଡୀପୁରାଣ)

ଦେବଗଣ ନିଜ ନିଜର ବାହନକୁ ଦେବୀଙ୍କୁ ପ୍ରଦାନ କଲେ । ସମସ୍ତ ବାହନର ବିଶେଷ ଗୁଣକୁ ନେଇ ସିଂହକୁ ସୃଷ୍ଟି କରାଗଲା ।

ଏ ବାଣୀ କହିଲେ ଯହୁଁ ଦୁର୍ଗତିତାରିଣୀ
ଯେ ଯାହାର ବାହନ ଦେଲେ ଦେବତାଏ ଆଣି ।

ଶ୍ରୀଦୁର୍ଗାର ବଚନରେ ଦେବେ ଉଦ୍‌ବେଗ
ସିଂହ ନେଇଣ ଦୁର୍ଗାଙ୍କୁ ସମର୍ପିଲେ ବେଗ ।

(ଚଣ୍ଡୀ ପୁରାଣ)

ତନ୍ତ୍ରଶାସ୍ତ୍ର ଅନୁସାରେ ଆଠଗୋଟି ଶକ୍ତି ହେଉଛନ୍ତି– (୧) ବ୍ରାହ୍ମୀ, (୨) ମାହେଶ୍ୱରୀ, (୩) କୌମାରୀ, (୪) ବୈଷ୍ଣବୀ, (୫) ବାରାହୀ,(୬) ନାରସିଂହୀ, (୭)ଐନ୍ଦ୍ରୀ ଓ (୮) ଚାମୁଣ୍ଡା ।

(୧) ବ୍ରାହ୍ମୀଙ୍କର ବାହନ ହେଉଛି ହଂସ । ହୃଦୟର ଧର୍ମ ହେଉଛି କଳ୍ପନା । କଳ୍ପନା ଏକ ଅଦୃଶ୍ୟ ଶକ୍ତି । ଏହି ଗୁଣର ସମଷ୍ଟି ହେଉଛି ମନ । ମନ ହେଉଛି ଜୀବ ସୃଷ୍ଟିର ପରିଚାଳକ । ଜୀବ ବିନା ସୃଷ୍ଟି ଶକ୍ତିର କୌଣସି ଅର୍ଥ ନାହିଁ । ଏହି କାରଣରୁ ସୃଷ୍ଟିର ପ୍ରତୀକ ରୂପରେ ହଂସକୁ ବ୍ରାହ୍ମୀଙ୍କର ବାହନ ରୂପେ ଗ୍ରହଣ କରାଯାଇଛି ।

(୨) ମାହେଶ୍ୱରୀ ଲୟ ଶକ୍ତିକୁ କୁହାଯାଏ । ମାହେଶ୍ୱରୀଙ୍କର ବାହନ ବୃଷଭ । ବୃଷର ଅର୍ଥ ଧର୍ମ । ଧର୍ମ ସତ୍ତ୍ୱ ଗୁଣରୁ ଉତ୍ପନ୍ନ ହୁଏ । ସତ୍ତ୍ୱ ଭାବର ବର୍ଣ୍ଣ ଶୁଭ୍ର । ଏଣୁ ଧର୍ମକୁ ବୃଷଭ ପ୍ରତୀକ ରୂପେ ଗ୍ରହଣ କରାଯାଇଛି । ଏହି କାରଣରୁ ମାହେଶ୍ୱରୀ ଶକ୍ତିଙ୍କର ବାହନ ବୃଷଭ ।

(୩) କୌମାରୀ ହେଉଛନ୍ତି ତୃତୀୟ ଶକ୍ତି । ଯେଉଁ ଶକ୍ତି ଅସୁରଙ୍କୁ ନାଶ କରେ ଏବଂ ଦେବଶକ୍ତି ସମୂହକୁ ପରିଚାଳିତ କରିଥାଏ । କୌମାରୀ ଶକ୍ତିର ବାହନ ହେଉଛନ୍ତି ମୟୂର । ସର୍ପର ଶତ୍ରୁ ମୟୂର । ସର୍ପ ବକ୍ରଗତିରେ ଚାଲିଥାଏ । କୌମାରୀ ଶକ୍ତି ବକ୍ରଗତିରେ ଚାଳିତ ଅସୁରଙ୍କୁ ନାଶ କରିଥାନ୍ତି । ଏଣୁ କୁମାରୀ ଶକ୍ତିଙ୍କର ବାହନ ମୟୂର ଯଥାର୍ଥ ଅଟେ ।

(୪) ବୈଷ୍ଣବୀ ହେଉଛନ୍ତି ଚତୁର୍ଥ ଶକ୍ତି । ଯେଉଁ ଶକ୍ତି ଜଗତର ସ୍ଥିତି ତଥା ପାଳନର ଧ୍ୟାନ ରଖିଥାନ୍ତି । ବୈଷ୍ଣବୀ ଶକ୍ତିର ବାହନ ହେଉଛନ୍ତି ଗରୁଡ । ଗରୁଡ଼ଙ୍କ ପକ୍ଷକୁ ଜ୍ଞାନ ଓ କର୍ମର ପ୍ରତୀକ ରୂପେ ଗ୍ରହଣ କରାଯାଏ । ଯେଭଳି ପକ୍ଷୀ ଦୁଇପକ୍ଷର ସହାୟତାରେ ଆକାଶରେ ଉନ୍ମୁକ୍ତ ଭାବେ ବିଚରଣ କରିଥାଏ, ସେହିଭଳି ସାଧକ ଜ୍ଞାନ ତଥା କର୍ମ ସାହାଯ୍ୟରେ ବିଷ୍ଣୁଙ୍କୁ ପ୍ରାପ୍ତ ହୋଇଥାଏ । ବିଷ୍ଣୁ ଜଗତର ପାଳନ କର୍ତ୍ତା । ଏଣୁ ଜଗତର ପାଳନ କର୍ତ୍ତା ବୈଷ୍ଣବୀ ଶକ୍ତିଙ୍କର ବାହନ ହେଉଛନ୍ତି ଗରୁଡ଼ ।

(୫) ବାରାହୀ ହେଉଛନ୍ତି ପଞ୍ଚମ ଶକ୍ତି । ଶ୍ରୀବିଷ୍ଣୁ ବରାହ ଅବତାର ନେଇ ପୃଥିବୀକୁ ଆସିଥିଲେ । ଏଣୁ ବରାହରୂପୀ ବିଷ୍ଣୁଙ୍କ ଶକ୍ତି ବାରାହୀ । କାଳସତ୍ତା ହିଁ ସର୍ବପ୍ରଥମ ଆତ୍ମାକୁ ଆବୃତ୍ତି ପ୍ରଦାନ କରିଥାଏ । କାଳଶକ୍ତିକୁ ହିଁ ବାରାହୀ ଶକ୍ତି କୁହାଯାଏ । ଏହି ଶକ୍ତିଙ୍କର କୌଣସି ଆଧାର ବା ବାହନ ନାହିଁ ।

(୬) ନାରସିଂହୀ ହେଉଛନ୍ତି ଷଷ୍ଠ ଶକ୍ତି । ନୃସିଂହ ସ୍ୱରୂପ ଜ୍ଞାନକୁ କୁହାଯାଏ । ଆତ୍ମା ସ୍ୱରୂପ ଜ୍ଞାନର ଉଦୟ ହେବା ପରେ ହିଁ ମନୁଷ୍ୟ ଶ୍ରେଷ୍ଠତା ଲାଭ କରିଥାଏ । ଭଗବାନ ବିଷ୍ଣୁ ନୃସିଂହ ଅବତାର ନେଇ ହିରଣ୍ୟକଶିପୁ ଅସୁରକୁ ନାଶ କରିଥିଲେ । ଏହି ନୃସିଂହଙ୍କ ଶକ୍ତିକୁ ନାରସିଂହୀ କୁହାଯାଏ । ନୃସିଂହ କୌଣସି ଆଧାରକୁ ନେଇ ପ୍ରକଟ ହୋଇନଥିଲେ । ଏଣୁ ନାରସିଂହୀଙ୍କର କୌଣସି ବାହନ ନାହିଁ ।

(୭) ଐନ୍ଦ୍ରୀ ହେଉଛନ୍ତି ସପ୍ତମ ଶକ୍ତି । ହସ୍ତେନ୍ଦ୍ରିୟର ଅଧିପତି ଦେବତାଙ୍କ ନାମ ଇନ୍ଦ୍ର । ଏହାଙ୍କର ଶକ୍ତି ହେଉଛନ୍ତି ଐନ୍ଦ୍ରୀ । ଏହାଙ୍କର ବାହନ ଐରାବତ । ଇର୍ ଧାତୁର ଅର୍ଥ ହେଉଛି ଗତି ଅଥବା ବେଗ ଏବଂ ରାବତ୍ ଶବ୍ଦର ଅର୍ଥ ହେଉଛି ଗତିର ବିଶିଷ୍ଟତା । ରାବତ୍ ସମ୍ବନ୍ଧୀୟ ବସ୍ତୁକୁ ଐରାବତ କୁହାଯାଏ । ଏହି ଐରାବତ ହେଉଛି ଐନ୍ଦ୍ରୀଙ୍କ ବାହନ । ଇନ୍ଦ୍ରଙ୍କ ଶକ୍ତି ତଡିତ୍ ଶକ୍ତି, ଯାହାକି ଅତ୍ୟନ୍ତ ଗତିବାନ୍ । ତଡିତ୍ ଶକ୍ତି ହେଉଛି ଐନ୍ଦ୍ରୀ ଏବଂ ଏହାର ପରିଚାଳକ ଐରାବତ । ଏହି ଦୃଷ୍ଟିକୋଣରୁ ଐନ୍ଦ୍ରୀଙ୍କ ବାହନ ଐରାବତ ।

(୮) ଚାମୁଣ୍ଡା ହେଉଛନ୍ତି ଅଷ୍ଟମ ଶକ୍ତି । ପ୍ରକୃତିର ଅର୍ଥ ଚଣ୍ଡ ତଥା ନିବୃତ୍ତର ଅର୍ଥ ହେଉଛି ମୁଣ୍ଡ । ଏ ଦୁହେଁ ଭାଇ । ଏହାଙ୍କୁ ନାଶ କରିଥିବା ଶକ୍ତି ହେଉଛି ଚାମୁଣ୍ଡା । ଚାମୁଣ୍ଡା ସ୍ୱୟଂ ପ୍ରକାଶମୟୀ । ସେ କୌଣସି ଆଧାରକୁ ନେଇ ପ୍ରକାଶିତ ହୋଇ ନଥିଲେ । ଏଣୁ ତାଙ୍କର କୌଣସି ବାହନ ନାହିଁ ।

ଆଲୋକ ନଗର, ନିଆଳୀ
କଟକ–୭୫୪୦୦୪








# ଅଶୀ ବର୍ଷରେ ଓଡ଼ିଶା

**ସୁଶୀଲ୍ କୁମାର ଦାସ**

୨୦୧୬ ମସିହା ହେଉଛି ଓଡିଶାବାସୀଙ୍କ ନିମନ୍ତେ ଏକ ଗୁରୁତ୍ୱପୂର୍ଣ୍ଣ ତଥା ସ୍ମରଣୀୟ ବର୍ଷ । ଏହି ବର୍ଷରେ ଆମେ ଭାଷାଭିତ୍ତିରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ୮୦ ବର୍ଷ ପୂର୍ତ୍ତି ସହ ଆଧୁନିକ ଓଡିଶାର ନିର୍ମାତା ବିଜୁବାବୁଙ୍କ ଜନ୍ମ ଶତବାର୍ଷିକୀ ଉତ୍ସବ ପାଳନ କରୁଛେ । ୧୯୩୬ ମସିହା ଅପ୍ରେଲ୍ ୧ ତାରିଖରେ ଗଠିତ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ୨୦୧୬ ଅପ୍ରେଲ୍ ୧ ତାରିଖରେ ୮୦ ବର୍ଷ ପୂରଣ କରିଛି । ସ୍ୱତନ୍ତ୍ର ପ୍ରଦେଶ ଗଠନଠାରୁ ଆଜି ପର୍ଯ୍ୟନ୍ତ ଓଡିଆ ଜାତି ବହୁ ଉତ୍‌ଥାନ ପତନ ଦେଇ ଆଗକୁ ବଢିପାରିଛି । ସେହିପରି ୧୯୧୬ ମସିହା ମାର୍ଚ୍ଚ ମାସ ୫ ତାରିଖରେ ଜନ୍ମ ଲାଭ କରିଥିବା ଓଡିଶାର ମଉଡମଣି ବିଜୁବାବୁଙ୍କ ଜନ୍ମ ଶତବାର୍ଷିକୀ ସଂଯୋଗକ୍ରମେ ଏହି ବର୍ଷ ପାଳିତ ହେଉଛି ।

ଗୋଟିଏ ନିର୍ଦ୍ଦିଷ୍ଟ ଭୂଖଣ୍ଡ ମଧ୍ୟରେ ଥାଏ ଗୋଟିଏ ଜାତିର ପରିଚିତି । ଏହାର ସ୍ୱତନ୍ତ୍ର ଭାଷା, ସଂସ୍କୃତି, ଧର୍ମ, ପରମ୍ପରା ଏହାକୁ ସ୍ୱତନ୍ତ୍ର ଭାବେ ଗଢିତୋଳିଥାଏ । ଭାରତବର୍ଷରେ ମଧ୍ୟ ରାଜ୍ୟ ରାଜ୍ୟ ମଧ୍ୟରେ ଏପରି ବିବିଧତା ଦେଖିବାକୁ ମିଳେ । ଏଣୁ ଆମେ ଭାରତବର୍ଷକୁ ବିଭିନ୍ନତା ମଧ୍ୟରେ ଏକତାର ଦେଶ ବୋଲି ଅଭିହିତ କରିଥାଉ । ଆମ ରାଜ୍ୟ ଓଡିଶାର ଅଛି ସୁଦୀର୍ଘ ଇତିହାସ । ଏକଦା ଏହି ରାଜ୍ୟ ଉଡ୍ର, କଳିଙ୍ଗ, କଙ୍ଗୋଦ, କୋଶଳ ଓ ଉତ୍କଳ ନାମରେ ସୁବିଦିତ ଥିଲା । ଉତ୍କର୍ଷ କଳାର ରାଜ୍ୟ ଥିଲା ଓଡିଶା । ଏହାର କଳା, ସ୍ଥାପତ୍ୟ ଅତି ଉଚ୍ଚମାନର ଥିଲା । କଳିଙ୍ଗର ସମ୍ରାଟ୍ ଖାରବେଳଙ୍କ ସମୟରେ ଏହାର ସୁନାମ ଆକାଶଛୁଆଁ ହୋଇଥିଲା । ସମ୍ରାଟ୍ ଖାରବେଳ କଳିଙ୍ଗର ସୀମାକୁ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । କିନ୍ତୁ ପରାଧୀନ ଭାରତବର୍ଷରେ ବିଦେଶୀମାନଙ୍କ ଶାସନଗତ ସୁବିଧା ତଥା ଗୋଟିଏ ନିର୍ଦ୍ଦିଷ୍ଟ ଜାତିକୁ ସଂଗଠିତ କରାଇ ନଦେବା ଉଦ୍ଦେଶ୍ୟରେ ଓଡିଶାର କେତେକ ଜିଲ୍ଲାକୁ ବିଭିନ୍ନ ପ୍ରେସିଡେନ୍ସି ଅଧୀନରେ ରଖାଯାଇଥିଲା । ଏହା ଆମ ଓଡିଆ ଜାତି ମନରେ ଗଭୀର କ୍ଷୋଭ ଜାତ କରିଥିଲା । ତତ୍‌କାଳୀନ କିଛି ବୁଦ୍ଧିଜୀବୀ ଏପରି ଚକ୍ରାନ୍ତ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ଦାବୀ ଜୋର୍ ଧରିଥିଲା ।

ଓଡିଆ ଓ ଓଡିଶାର ଏପରି ଦୁର୍ଦ୍ଦିନରେ କେତେକ ଜାତିପ୍ରେମୀ ନିଜ ଭାଷାର ସ୍ୱୀକୃତି ଓ ସ୍ୱତନ୍ତ୍ର ପ୍ରଦେଶ ଗଠନର ସ୍ୱପ୍ନ ସାକାର ନିମନ୍ତେ ଅହରହ ଉଦ୍ୟମ ଅବ୍ୟାହତ ରଖିଥିଲେ ।

ଏହି କ୍ରମରେ ୧୯୦୩ ମସିହାରେ ଗଠିତ ହୋଇଥିଲା ଉତ୍କଳ ସମ୍ମିଳନୀ । ଉତ୍କଳ ସମ୍ମିଳନୀର ମଙ୍ଗ ଧରିଥିବା ଓଡ଼ିଆ ପ୍ରେମୀମାନେ ପାରଳା ମହାରାଜାଙ୍କ ନେତୃତ୍ୱରେ 'ମଣ୍ଟେଗୁ ଚେମସ୍ ଫୋର୍ଡ କମିଟି' ନିକଟରେ ଏ ସଂପର୍କରେ ନିଜର ବଳିଷ୍ଠ ଦାବୀ ଉପସ୍ଥାପନ କରିଥିଲେ । ୧୯୨୮ ମସିହାରେ ଉତ୍କଳଗୌରବ ମଧୁସୂଦନ ଦାସ ସାଇମନ୍ କମିଶନ୍‌ଙ୍କ ନିକଟରେ ଉକ୍ତ ଦାବୀର ପୁନରାବୃତ୍ତି କରିଥିଲେ । ୧୯୩୦ ମସିହା ଲଣ୍ଡନ ଗୋଲ୍‌ଟେବୁଲ୍ ବୈଠକରେ ପାରଳା ମହାରାଜାଙ୍କ


ହୀରାକୁଦ ନଦୀବନ୍ଧ

ଯୁକ୍ତିସଂଗତ ଦାବୀ ଉପସ୍ଥାପନ ସହିତ ତତ୍କାଳୀନ ମହାମନୀଷୀମାନଙ୍କର ଆପ୍ରାଣ ଉଦ୍ୟମର ଫଳସ୍ୱରୂପ ୧୯୩୬ ମସିହା ଅପ୍ରେଲ୍ ୧ ତାରିଖରେ ଓଡିଶା ଭାଷାଭିତ୍ତିରେ ଏକ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଲାଭ କଲା । ଓଡିଶାବାସୀଙ୍କ ଦୀର୍ଘ ଦିନର ସ୍ୱପ୍ନ ସାକାର ହୋଇଥିଲା ।

୧୯୩୬ ମସିହାରୁ ୨୦୧୬ ମସିହା ଏକ ଦୀର୍ଘ ଓ ସଫଳ ଯାତ୍ରା ଥିଲା । ଅଶୀ ବର୍ଷରେ ପଦାର୍ପଣ କରିଥିବା ଓଡିଶା ଇତିମଧ୍ୟରେ ଅନେକ ସୋପାନ ଅତିକ୍ରମ କରିପାରିଛି । ପ୍ରଥମ ପର୍ଯ୍ୟାୟରେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ


ଓଡ଼ିଶା ବିଧାନ ସୌଧ



ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

ଓ କୋରାପୁଟକୁ ନେଇ ଗଠିତ ଓଡ଼ିଶା ଶାସନଗତ ସୁବିଧା ପାଇଁ ପରବର୍ତ୍ତୀ ପର୍ଯ୍ୟାୟରେ ୧୩ଟି ଜିଲ୍ଲାକୁ ସଂପ୍ରସାରିତ ହେଲା ଏବଂ ସମୟକ୍ରମେ ୧୯୯୪ ମସିହା ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ଏହା ୩୦ଟି ଜିଲ୍ଲାକୁ ପରିବର୍ଦ୍ଧିତ ହୋଇଥିଲା ।

ସ୍ୱାଧୀନତା ପୂର୍ବରୁ ଭାରତର ସମ୍ବିଧାନ ପ୍ରଣୀତ ହେବା ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦବୀଟିକୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା । ସ୍ୱାଧୀନତା ପ୍ରାପ୍ତି ସମୟରେ ଓଡ଼ିଶାର


ରାଉରକେଲା ଇସ୍ପାତ କାରଖାନା

ପ୍ରଧାନମନ୍ତ୍ରୀ ଥିଲେ ଡକ୍ଟର ହରେକୃଷ୍ଣ ମହତାବ । ତାଙ୍କ ଶାସନ ସମୟରେ ଓଡ଼ିଶାରେ ଗଡଜାତ ମିଶ୍ରଣ, କଟକଠାରେ ଆକାଶବାଣୀ କେନ୍ଦ୍ର ପ୍ରତିଷ୍ଠା, ହୀରାକୁଦ ବନ୍ଧ ନିର୍ମାଣ ପାଇଁ ଭିତ୍ତିପ୍ରସ୍ତର ସ୍ଥାପନ ଏବଂ ଉଦ୍‌ଘାଟନ, ଓଡ଼ିଶା ହାଇକୋର୍ଟ ପ୍ରତିଷ୍ଠା, ଉତ୍କଳ ବିଶ୍ୱବିଦ୍ୟାଳୟ ଭିତ୍ତିପ୍ରସ୍ତର ସ୍ଥାପନ, ରାଜ୍ୟ ସଂଗ୍ରହାଳୟ ଉଦ୍‌ଘାଟନ, କଟକରୁ ଭୁବନେଶ୍ୱରକୁ ରାଜଧାନୀ ସ୍ଥାନାନ୍ତର ଇତ୍ୟାଦି ମାଧ୍ୟମରେ ଏକ ପ୍ରଗତିଶୀଳ ଓଡିଶା ଗଠନର ଶୁଭାରମ୍ଭ ହୋଇଥିଲା । ପରବର୍ତ୍ତୀ ସମୟରେ ନିଜକୁ





କେନ୍ଦ୍ରୀୟ ଧାନ ଗବେଷଣା ପ୍ରତିଷ୍ଠାନ, କଟକ

ଖାରବେଳଙ୍କ ଦାୟାଦ କହୁଥିବା ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ୧୯୬୧ ମସିହାରୁ ଓଡିଶାରେ ବିକାଶର ପର୍ବ ଅନୁଭୂତ ହୋଇଥିଲା । ଦଇତାରୀ-ପାରାଦୀପ ଏକ୍ସପ୍ରେସ୍ ହାଇୱେ, ବାଲିମେଳା ଜଳବିଦ୍ୟୁତ ଯୋଜନା, ତାଳଚେର ଥର୍ମାଲ୍, ସୁନାବେଡା ମିଗ୍ କାରଖାନା, ବଡବିଲ୍ ଲୁହା କାରଖାନା, ରାଉରକେଲା ଆଞ୍ଚଳିକ ଇଂଜିନିୟରିଂ କଲେଜ, ଭୁବନେଶ୍ୱରରେ ସୈନିକ ସ୍କୁଲ, ଭୁବନେଶ୍ୱରରେ ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ, ଚାରବାଟିଆ ସାମଗ୍ରିକ ବିମାନ ଅବତରଣ କେନ୍ଦ୍ର, ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ବୁର୍ଲା ଇଂଜିନିୟରିଂ ଓ ମେଡିକାଲ କଲେଜ ନିର୍ମାଣ ଇତ୍ୟାଦି ପ୍ରଗତିଶୀଳ କାର୍ଯ୍ୟକ୍ରମ ଓଡ଼ିଶାକୁ ଏକ ଉଚ୍ଚତର ସୋପାନରେ ପହଞ୍ଚାଇଥିଲା । ଏତଦ୍‌ବ୍ୟତୀତ, ୧୯୭୭ରୁ ୧୯୯୬ ମଧ୍ୟରେ ଅନୁଗୁଳସ୍ଥିତ ନାଲ୍‌କୋ, ସଇଁତଳା



ଧାମରା ବନ୍ଦର

ଗୋଳାବାରୁଦ କାରଖାନା, ପଠାଣି ସାମନ୍ତ ପ୍ଲାନେଟୋରିୟମ୍, ଚାନ୍ଦିପୁର କ୍ଷେପଣାସ୍ତ୍ର ଘାଟୀ, କଟକ ଇନ୍‌ଡୋର୍ ଷ୍ଟାଡିୟମ ନିର୍ମାଣ ଇତ୍ୟାଦି ବିକାଶମୂଳକ କାର୍ଯ୍ୟ ଓଡ଼ିଶାକୁ ଜାତୀୟସ୍ତରରେ ପ୍ରତିଷ୍ଠିତ କରିଥିଲା । ବହୁ ଘାତପ୍ରତିଘାତ ମଧ୍ୟରେ ଗତିକରି ନୂତନ ଓଡ଼ିଶା ଆଜି ଦେଶର ଏକ ପ୍ରମୁଖ ସ୍ଥାନ ଅଧିକାର କରିଛି । ଜାତୀୟ ସ୍ତରରେ ତାଳ ଦେଇ ଅଭିବୃଦ୍ଧି ହାସଲ କରିପାରିଛି ।

ପ୍ରାକୃତିକ ବିପର୍ଯ୍ୟୟ ହେଉଛି ଓଡ଼ିଶାର ଚିର ସହଚର । ୨୦୦୦ ମସିହାରେ ନବୀନ ପଟ୍ଟନାୟକଙ୍କ ନେତୃତ୍ୱାଧୀନ ସରକାର ଶାସନଭାର ଗ୍ରହଣ କରିବା ପୂର୍ବରୁ, ୧୯୯୯ରେ ଓଡିଶାରେ ସଂଘଟିତ ହୋଇଥିଲା ପ୍ରଳୟଙ୍କରୀ ମହାବାତ୍ୟା । ଏଥିରେ ଓଡ଼ିଶାର ସାମାଜିକ, ଅର୍ଥନୈତିକ ଏବଂ ଭୌଗଳିକ ପରିସ୍ଥିତି ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇଯାଇଥିଲା । ଏକ ପ୍ରାକୃତିକ ବିପର୍ଯ୍ୟସ୍ତ ରାଜ୍ୟକୁ ପ୍ରଗତିଶୀଳ ରାଜ୍ୟରେ ପରିଣତ


ନବ ନିର୍ମିତ ଫ୍ଲାଇ ଓଭର ବ୍ରିଜ୍, ମଞ୍ଚେଶ୍ୱର, ଭୁବନେଶ୍ୱର

କରିବା ପାଇଁ ତତ୍କାଳୀନ ସରକାରଙ୍କ ପକ୍ଷେ ଏକ କଷ୍ଟକର ବ୍ୟାପାର ଥିଲା । କିନ୍ତୁ ସମସ୍ତ ବାଧାବିଘ୍ନକୁ ପ୍ରତିହତ କରି ୨୦୦୦ରୁ ୨୦୧୬ ମଧ୍ୟରେ ଆଜି ଓଡ଼ିଶା ଦେଶର ଏକ ଅଗ୍ରଣୀ ରାଜ୍ୟଭାବେ ପରିଗଣିତ ହୋଇପାରିଛି । ଏହି ସମୟ ମଧ୍ୟରେ ଅନେକଗୁଡିଏ ଛୋଟ ବଡ ଶିଳ୍ପାନୁଷ୍ଠାନ ସହିତ ଦେଶର ପ୍ରମୁଖ ଇସ୍ପାତ ଉତ୍ପାଦନକାରୀ ସଂସ୍ଥା ଟାଟାଷ୍ଟିଲ ତା'ର ୨ୟ ପ୍ଲାଣ୍ଟ ଯାଜପୁର ଜିଲ୍ଲାର କଳିଙ୍ଗନଗରଠାରେ ପ୍ରତିଷ୍ଠା କରିଛି । ଓଡ଼ିଶା ଆଜି ଆଇ.ଟି କ୍ଷେତ୍ରରେ ଦେଶର ଏକ ପ୍ରମୁଖ ସ୍ଥାନ ଅଧିକାର କରିଛି । ଶିକ୍ଷାକ୍ଷେତ୍ରରେ ଏକ ଅଗ୍ରଣୀ ରାଜ୍ୟଭାବେ ରାଜ୍ୟରେ ଆଇ.ଆଇ.ଟି, ଆଇଆଇଏମ୍, ଏମ୍ସ, ନାଇଜର ଇତ୍ୟାଦି ଜାତୀୟସ୍ତରର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ହୋଇଛି । ପୁଞ୍ଜିନିବେଶକାରୀଙ୍କ ନିମନ୍ତେ ଅନୁକୂଳ ବାତାବରଣ ସୃଷ୍ଟି ହୋଇଛି । ବ୍ରିଟିଶ ଅମଳରୁ ପ୍ରଚଳିତ ରାଜ୍ୟର ନାମକରଣ





ଏମ୍ସ, ଭୁବନେଶ୍ୱର

'ଓରିଶା'ରୁ 'ଓଡ଼ିଶା'କୁ ପରିବର୍ତ୍ତିତ ହୋଇଛି । ଓଡିଆ ସ୍ୱାଭିମାନର ପ୍ରତୀକ ବିଜୁବାବୁଙ୍କ ମହତ ପ୍ରଚେଷ୍ଟାରେ ଶେଷ ସ୍ପର୍ଶ ଦେଇ ତାଙ୍କ ସୁପୁତ୍ରଙ୍କ ସମୟରେ ଓଡ଼ିଆ ଭାଷା ଶାସ୍ତ୍ରୀୟ ଭାଷାର ମାନ୍ୟତା ଲାଭ କରିଛି । ଓଡିଶା ଶାସନ କ୍ଷେତ୍ରରେ ଓଡିଆ ଭାଷାର ପ୍ରଚଳନ ହୋଇଛି ।

ବିଜୁବାବୁଙ୍କର ଗୋଟିଏ ଲୋକପ୍ରିୟ ସ୍ଲୋଗାନ୍ ଥିଲା, 'ଗାଁ କୁ କାମ ଓ ମା' କୁ ସମ୍ମାନ' । ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଉକ୍ତି ' ଗାଁ'ରେ ହିଁ ଭାରତର ଆତ୍ମା ' କୁ ସେ ବେଶ୍ ହୃଦୟଙ୍ଗମ କରିପାରିଥିଲେ । ବିଜୁବାବୁଙ୍କ ଶାସନ କାଳରେ ଓଡିଶାର ଗ୍ରାମାଞ୍ଚଳର ଅଭୂତପୂର୍ବ ବିକାଶ ଘଟିଥିଲା । ନାରୀ ସଶକ୍ତିକରଣ, ମହିଳାମାନଙ୍କ ନିମନ୍ତେ ସ୍ଥାନ ସଂରକ୍ଷଣ, ପଂଚାୟତିରାଜ ବ୍ୟବସ୍ଥାରେ ତୃଣମୂଳ ସ୍ତରରେ କ୍ଷମତା ହସ୍ତାନ୍ତର ପରି ଅଭିନବ କାର୍ଯ୍ୟକ୍ରମର ପଥପ୍ରଦର୍ଶକ ହେଉଛି ଓଡିଶା ରାଜ୍ୟ ଓ ଏହାର ପ୍ରଣେତା ହେଉଛନ୍ତି ବିଜୁବାବୁ । ବିଜୁବାବୁ ପ୍ରତିଷ୍ଠା କରିଥିବା ଭିତ୍ତିଭୂମି ଆଜି ଉଭୟ ଗାଁ ଓ ସହର ବିକାଶ କ୍ଷେତ୍ରରେ ସୁଫଳ ପ୍ରଦାନ କରିଆସୁଛି । ଅଧୁନା ବିଭିନ୍ନ ଜନହିତକର କାର୍ଯ୍ୟକ୍ରମ ମାଧ୍ୟମରେ ଗ୍ରାମାଞ୍ଚଳରୁ ଆରମ୍ଭ କରି ସହରାଞ୍ଚଳ ପର୍ଯ୍ୟନ୍ତ ଜନସାଧାରଣଙ୍କ ସାମାଜିକ-ଅର୍ଥନୈତିକ ଅଭିବୃଦ୍ଧି ସହ ମୁଣ୍ଡପିଛା ଆୟ ଦ୍ୱିଗୁଣିତ ହୋଇପାରିଛି । କୃଷି ଉତ୍ପାଦନ କ୍ଷେତ୍ରରେ ଉତ୍କର୍ଷ ନିମନ୍ତେ ଆଜି ଓଡ଼ିଶା ଜାତୀୟସ୍ତରରେ ଚାରି ଚାରି ଥର ପୁରସ୍କୃତ ହୋଇପାରିଛି । ଓଡ଼ିଶାରେ ସାମାଜିକ ନିରାପତ୍ତା ବଳୟ ସୁଦୃଢ ହୋଇପାରିଛି । ଗ୍ରାମାଞ୍ଚଳର ଭିତ୍ତିଭୂମି ବିକାଶ କାର୍ଯ୍ୟକ୍ରମ ଗୁରୁତ୍ୱ ଲାଭ କରିଛି। ଗ୍ରାମାଞ୍ଚଳରେ ଥିବା ସମସ୍ତ କଚ୍ଚାଘରକୁ ପକ୍କାଘରରେ ପରିଣତ କରିବା ପାଇଁ ନିରବଚ୍ଛିନ୍ନ ଉଦ୍ୟମ ଅବ୍ୟାହତ ଅଛି । ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ଏହାର ବିକଶିତ ଭିତ୍ତିଭୂମି ଦୃଷ୍ଟିରୁ ଦେଶର ସ୍ମାର୍ଟ ସିଟି ପ୍ରତିଯୋଗିତାର ପ୍ରଥମ ସ୍ଥାନ ଲାଭ କରିପାରିଛି । ସାମଗ୍ରିକ ବିକାଶ ପ୍ରତି ସର୍ବାଧିକ ଗୁରୁତ୍ୱ ଦେଇ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ବିଭିନ୍ନ ସ୍ତରରେ ସରକାରୀ ସୁବିଧାର ବ୍ୟବସ୍ଥା ହୋଇପାରିଛି ।

ଓଡିଆ ଜାତି ଏହାର ଆରାଧ୍ୟ ଠାକୁର ଜଗନ୍ନାଥଙ୍କୁ ନେଇ ଗର୍ବ କରେ । ଜଗନ୍ନାଥ ଧାମ ରୂପେ ପରିଚିତ ଓଡିଶାରେ ଧାର୍ମିକ ସହନଶୀଳତା, ଶାନ୍ତି, ମୈତ୍ରୀ ଓ ପ୍ରୀତି ବଜାୟ ରହିଛି । ଓଡିଶା ଅପେକ୍ଷାକୃତ ଏକ ଶାନ୍ତ ରାଜ୍ୟର ପରିଚିତି ଲାଭ କରିଛି ।

ସ୍ମାର୍ଟ ସିଟି


ଆଗକୁ ଓଡିଶାର ବିକାଶ ଜୟଯାତ୍ରା ଅବ୍ୟାହତ ରହିଛି । ଓଡିଆ ଜାତି ଓ ଜଗନ୍ନାଥଙ୍କୁ ନେଇ ଗର୍ବ କରୁଥିବା ବିଜୁବାବୁ ଓଡିଆ ସ୍ୱାଭିମାନ ପ୍ରତି ଯଥେଷ୍ଟ ସଚେତନ ଥିଲେ । ଏହାକୁ ପାଥେୟ କରି ତାଙ୍କ ସୁପୁତ୍ର ଓଡିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ରାଜ୍ୟକୁ ସମୃଦ୍ଧି ପଥରେ ଆଗେଇ ନେଉଥିବା ବେଳେ, ଆଜି ଓଡିଆ ସଗର୍ବେ ନିଜର ମଥା ଟେକି ଜାତୀୟ ସ୍ତରରେ ନିଜର ସମ୍ମାନ ବଜାୟ ରଖିପାରିଛି ।

ନିର୍ଦ୍ଦେଶକ
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଭୁବନେଶ୍ୱର





# ମହାନ୍ ଜନନାୟକ ବିଜୁ ପଟ୍ଟନାୟକ

ଡକ୍ଟର ଲେନିନ୍ ମହାନ୍ତି



ଆଧୁନିକ ଓଡ଼ିଶାର ଅନ୍ୟତମ ନିର୍ମାତା ତଥା ଓଡ଼ିଆ ଜାତିର ସ୍ୱାଭିମାନର ପ୍ରତୀକ ବିଜୁବାବୁ ଜଣେ କିମ୍ବଦନ୍ତୀ ପୁରୁଷ । କିମ୍ବଦନ୍ତୀମାନଙ୍କୁ ଗଢାଯାଏ ନାହିଁ । ତାଙ୍କର ଅନନ୍ୟ କୀର୍ତ୍ତି ଓ କୃତିତ୍ୱ ପାଇଁ ସେମାନେ ସ୍ୱତଃ ପାଲଟିଯାଆନ୍ତି କିମ୍ବଦନ୍ତୀ । ଓଡ଼ିଶାରେ ଏମିତି କେହି ନଥିବେ ଯିଏ ବିଜୁ ପଟ୍ଟନାୟକଙ୍କୁ ଚିହ୍ନିନଥିବେ । କେବଳ ଓଡ଼ିଶାରେ ନୁହେଁ, ଓଡ଼ିଶା ବାହାରେ ମଧ୍ୟ ସେ ଥିଲେ ଓଡ଼ିଆଙ୍କ ପରିଚୟ । ରାଜ୍ୟ ବାହାରେ ବା ବିଦେଶରେ ଓଡ଼ିଶା କହିଲେ ସାଧାରଣତଃ ବୁଝାଯାଏ ଜଗନ୍ନାଥ ଦେଶ ଓ ବିଜୁ ପଟ୍ଟନାୟକଙ୍କୁ । ସ୍ୱାଧୀନୋତ୍ତର ଓଡ଼ିଶାର ରାଜନୈତିକ ଘଟଣାକ୍ରମ ଓ ସାମଗ୍ରିକ ବିକାଶ ସମ୍ପର୍କରେ ଯେବେ ବି ଯିଏ ଆଲୋଚନା କିମ୍ବା ଆଲେଖ୍ୟ ପ୍ରସ୍ତୁତ କରିଥାଏ ସେଥିରେ ବିଜୁ ବାବୁଙ୍କ ସ୍ଥାନ ସ୍ୱତନ୍ତ୍ରଭାବେ ଉପସ୍ଥାପିତ ହୋଇଥିବାର ନଜିର୍ ଥାଏ ।

୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ କଟକର ତୁଳସୀପୁରଠାରେ ଜନ୍ମ ନେଇଥିଲେ ବିଜୟାନନ୍ଦ ପଟ୍ଟନାୟକ, ଯିଏ କି ପରବର୍ତ୍ତୀ ସମୟରେ ବିଜୁ ପଟ୍ଟନାୟକ ନାମରେ ବେଶ୍ ପରିଚିତ ହୋଇଥିଲେ । 'ତୁଳସୀ ଦୁଇପତ୍ରରୁ ବାସେ' ନ୍ୟାୟରେ ପିଲାଟିବେଳୁ ତାଙ୍କର ମନ ଭିତରେ ସାହସିକତା, ଦାମ୍ଭିକତା ଏବଂ ସ୍ୱାଭିମାନ ଭରିରହିଥିଲା । ରେଭେନ୍ସା କଲେଜରେ ପଢୁଥିବା ବେଳେ କଟକରୁ ପେଶୱାର ପର୍ଯ୍ୟନ୍ତ ସାଇକେଲ୍‌ରେ ଯାଇ ତାଙ୍କର ଅପୂର୍ବ ସାହସିକତାର ପରିଚୟ ଦେଇଥିଲେ । ନିଜ ସମୟର ଓଡ଼ିଶାକୁ ଅତୀତର କଳିଙ୍ଗ ଓ ନିଜକୁ ଖାରବେଳଙ୍କ ଦାୟାଦ ରୂପେ ପରିଚୟ ପ୍ରଦାନ ହିଁ ଥିଲା ତାଙ୍କ ସ୍ୱାଭିମାନର ପ୍ରତୀକ । ସେ ସର୍ବଦା ସ୍ୱପ୍ନ ଦେଖୁଥିଲେ କିଭଳି ଓଡ଼ିଆ ଓ ଓଡ଼ିଶାର ଉନ୍ନତି ହେବ । ସ୍ୱାଧୀନତା ପୂର୍ବବର୍ତ୍ତୀ ସମୟରେ ସଙ୍ଗଠିତ ମୁକ୍ତି ସଂଗ୍ରାମରେ ତାଙ୍କ ଭୂମିକା ଥିଲା ଅନନ୍ୟ । ବହୁବାର ଏଥିପାଇଁ କାରାବରଣ କରି ନିର୍ଯାତିତ ହୋଇଥିଲେ ମଧ୍ୟ ତାଙ୍କର କାର୍ଯ୍ୟ ଦକ୍ଷତା ପଣ୍ଡିତ ଜବାହରଲାଲ୍ ନେହେରୁଙ୍କୁ ବହୁମାତ୍ରାରେ ପ୍ରଭାବିତ କରିଥିଲା । କେବଳ ଭାରତର ସ୍ୱାଧୀନତା ସଂଗ୍ରାମରେ ନିଜକୁ ସୀମିତ ନରଖି ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମରେ ମଧ୍ୟ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଏଥିପାଇଁ ତାଙ୍କୁ ଇଣ୍ଡୋନେସିଆ ସରକାର ସମ୍ମାନଜନକ 'ଭୂମିପୁତ୍ର' ଉପାଧି ସହ ବିପୁଳ ଅର୍ଥ ପୁରସ୍କାର ଆକାରରେ ପ୍ରଦାନ କରିଥିଲେ, ମାତ୍ର ସ୍ୱାଭିମାନୀ ବିଜୁବାବୁ ପୁରସ୍କାର ରାଶିକୁ ଇଣ୍ଡୋନେସିଆବାସୀଙ୍କ ଉନ୍ନତି କଳ୍ପେ ସବିନୟେ ଫେରାଇ ଦେଇ ତାଙ୍କ ମହାନତାର ପରିଚୟ ଦେଇଥିଲେ । ପରବର୍ତ୍ତୀ ସମୟରେ ଯେତେବେଳେ ହିଁ

ଭାରତବର୍ଷକୁ ବାହ୍ୟଶକ୍ତି ଆକ୍ରମଣ କରିଛି, ବିଜୁବାବୁ ସର୍ବଦା ମାଟି ମା'ର ରକ୍ଷା ଉଦ୍ଦେଶ୍ୟରେ ସେଥିରେ ନିଜକୁ ସାମିଲ କରିଛନ୍ତି । ସେ ୧୯୪୮ ଏବଂ ୧୯୬୫ ମସିହା ପାକିସ୍ତାନର ଭାରତ ଆକ୍ରମଣ ହେଉ ଅଥବା ୧୯୬୨ ମସିହାରେ ଚୀନ୍‌ର ଆକ୍ରମଣ । ୧୯୬୧ ମସିହାରେ ବିଜୁବାବୁଙ୍କ ନେତୃତ୍ୱରେ ବିପୁଳ ସଂଖ୍ୟା ଗରିଷ୍ଠତା ହାସଲ କରି ଓଡ଼ିଶାରେ ସରକାର ଗଠନ ହେଲା । ପାରାଦୀପ ବନ୍ଦର, ଦଇତାରୀ–ପାରାଦୀପ ଏକ୍ସପ୍ରେସ ହାଇୱେ, ବାଲିମେଳା ଜଳବିଦ୍ୟୁତ କେନ୍ଦ୍ର, ତାଳଚେର ଥର୍ମାଲ୍ ପ୍ଲାଣ୍ଟ, ସୁନାବେଡ଼ା ମିଗ୍‌ବିମାନ କାରଖାନା, ବଡବିଲ ଲୁହା କାରଖାନା, ରାଉରକେଲା ଇଂଜିନିୟରିଂ କଲେଜ, ଚାରବାଟିଆ ସାମରିକ ବିମାନ ଅବତରଣ କେନ୍ଦ୍ର, ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ବୁର୍ଲା ଇଂଜିନିୟରିଂ ଓ ମେଡିକାଲ କଲେଜ ପ୍ରତିଷ୍ଠା ଇତ୍ୟାଦି ବିଜୁବାବୁଙ୍କ ଶାସନର ଉଲ୍ଲେଖନୀୟ ଅବଦାନ ଥିଲା। ପରବର୍ତ୍ତୀ ସମୟରେ ୧୯୯୦ ମସିହାରେ ଶାସନକୁ ଆସିଲାବେଳେ ମଧ୍ୟ ସେ ଓଡ଼ିଆ ଜାତି ଓ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ବହୁ ପଦକ୍ଷେପ ନେଇଥିଲେ । ଏଥିମଧ୍ୟରେ ଶ୍ରମିକମାନଙ୍କ ସର୍ବନିମ୍ନ ମଜୁରି ବୃଦ୍ଧି, ନାରୀ ସଶକ୍ତିକରଣ, ଗ୍ରାମାଞ୍ଚଳ ଗରିବ ଲୋକଙ୍କ ବାସଗୃହ ନିର୍ମାଣ ପାଇଁ କଳିଙ୍ଗ କୁଟୀର ଯୋଜନା, ବୃଦ୍ଧବୃଦ୍ଧା, ଅକ୍ଷମ, ବିଧବା ଭତ୍ତା ବୃଦ୍ଧି, ରାଜ୍ୟରେ ମହିଳା ବିକାଶ ନିଗମ, ମହିଳା ବ୍ୟାଙ୍କ୍ ଏବଂ ରାଜ୍ୟ ମହିଳା କମିଶନ ପ୍ରତିଷ୍ଠା, ପ୍ରଶାସନିକ ସୁବିଧା ପାଇଁ ଜିଲ୍ଲା ସଂପ୍ରସାରଣ, ରାଜନୀତି କ୍ଷେତ୍ରରେ ମହିଳାଙ୍କ ନିମନ୍ତେ ସ୍ଥାନ ସଂରକ୍ଷଣ, ଦ୍ରୁତ ଶିଳ୍ପାୟନ ଇତ୍ୟାଦି ଅନ୍ୟତମ ।

ସେ ଏକାଧାରରେ ଥିଲେ ଜଣେ ବୈମାନିକ, ଶିଳ୍ପପତି ଓ ରାଜନୀତିଜ୍ଞ । ଅତୀତର 'କଳିଙ୍ଗାଃ ସାହସିକାଃ' ଭିତ୍ତିରେ ସେ ଓଡ଼ିଆ ଜାତିକୁ ସାହସ ଓ ସ୍ୱାଭିମାନର ପୁନଃସ୍ମରଣ କରାଉଥିଲେ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ସମସ୍ତ ଅନୁଷ୍ଠାନକୁ ସେ କଳିଙ୍ଗ ନାମରେ ନାମକରଣ କରିଥିଲେ ଯଥା: କଳିଙ୍ଗ ଟ୍ୟୁବ୍ସ୍, କଳିଙ୍ଗ ଏୟାରଲାଇନ୍ସ, କଳିଙ୍ଗ ଆଇରନ ୱାର୍କ୍ସ, କଳିଙ୍ଗ ସମ୍ବାଦପତ୍ର, କଳିଙ୍ଗ ଫାଉଣ୍ଡେସନ ଇତ୍ୟାଦି । ତାଙ୍କର ସର୍ବଶ୍ରେଷ୍ଠ କୃତି ଥିଲା ବିଜ୍ଞାନ କ୍ଷେତ୍ରରେ ୟୁନେସ୍କୋ କଳିଙ୍ଗ ପୁରସ୍କାର । ବିଜ୍ଞାନ ଓ ବୈଜ୍ଞାନିକଙ୍କୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ଏହି ପୁରସ୍କାର ସମର୍ପିତ, ଯାହା ଆଜି ମଧ୍ୟ ଦିଆଯାଉଛି ।

ବିଜୁବାବୁ ସର୍ବଦା ଚାହୁଁଥିଲେ ଓଡ଼ିଶାର ଉନ୍ନତି ପାଇଁ, ଓଡ଼ିଶାରୁ ଦାରିଦ୍ର୍ୟ ଦୂର କରିବା ପାଇଁ । ନିଜ ମନ୍ତବ୍ୟରେ ସେ କହିଥିଲେ, 'ମୋ ସ୍ୱପ୍ନର ଓଡ଼ିଶାରେ କୌଣସି କୃଷକର କ୍ଷେତ ଶୁଷ୍କ ଶ୍ରୀହୀନ ହୋଇ ରହିବ ନାହିଁ । ଆମ ମାଟିକୁ ସିକ୍ତ କରୁଥିବା ପ୍ରତିଟି ଜଳବିନ୍ଦୁ ସବୁଜ ଶସ୍ୟ ସମ୍ଭାର ଅଜାଡି ଦେବ । ଆଗାମୀ କାଲିର ଓଡ଼ିଶାରେ ନାରୀ ପୁରୁଷ ସହିତ ସମାନ ସ୍ଥାନରେ ରହିବ' । ତାଙ୍କର ସ୍ଲୋଗାନ ଥିଲା– 'ଗାଁକୁ କାମ – ମା'କୁ ସମ୍ମାନ' । ଗ୍ରାମାଞ୍ଚଳର ଉନ୍ନତି, ପଞ୍ଚାୟତିରାଜର ପ୍ରବର୍ତ୍ତନ, ମହିଳାମାନଙ୍କୁ ସ୍ଥାନ ସଂରକ୍ଷଣ ସୁବିଧା ପ୍ରଦାନ କ୍ଷେତ୍ରରେ ସେ ଥିଲେ ଅଦ୍ୱିତୀୟ । ଜୀବନର ଶେଷ ପର୍ଯ୍ୟନ୍ତ ସେ ସର୍ବଦା ଓଡ଼ିଶାର ଏବଂ ଓଡ଼ିଆ ଜାତିର ଉନ୍ନତି ଚିନ୍ତା କରୁଥିଲେ । ବିଜୁବାବୁ ନିଜକୁ ଜଣେ ଜାତୀୟସ୍ତରର ନେତାଭାବେ ପ୍ରତିଷ୍ଠିତ କରିପାରିଥିଲେ । କିନ୍ତୁ ଓଡ଼ିଶା ମାଟିକୁ ଅତ୍ୟନ୍ତ ଭଲ ପାଉଥିବା ଯୋଗୁଁ ସେ ଓଡ଼ିଶା ରାଜନୀତିରେ ନିଜକୁ ସକ୍ରିୟ ରଖିଥିଲେ । ୧୯୯୭ ମସିହା ଅପ୍ରେଲ ୧୭ ତାରିଖରେ ଏହି ମହାମାନବଙ୍କ ମହାପ୍ରୟାଣ ହୋଇଥିଲା । ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱରେ ପ୍ରଭାବିତ ତତ୍କାଳୀନ ଜାତୀୟ ଗଣମାଧ୍ୟମ ତାଙ୍କୁ 'ଓଡ଼ିଶାର ମୁକୁଟ ବିହୀନ ସମ୍ରାଟ'ଭାବେ ଅଭିହିତ କରିଥିଲେ । ତାଙ୍କ ଅବର୍ତ୍ତମାନରେ ସମଗ୍ର ଓଡ଼ିଶା ଶୋକାଭିଭୂତ ହେବା ସହ ବିଶ୍ୱବାସୀ ତାଙ୍କର ଅମର କୃତିକୁ ଶ୍ରଦ୍ଧାସମ୍ମାନ ପୂର୍ବକ ସ୍ମରଣ କରିଥିଲେ ।

ବିଜୁବାବୁ ଥିଲେ ଉତ୍କଳଗୌରବ ମଧୁବାବୁଙ୍କ ପରି ପ୍ରଚଣ୍ଡ ସ୍ୱାଭିମାନୀ ଓଡ଼ିଆ ତଥା ଓଡ଼ିଶାକୁ ଭଲ ପାଉଥିବା ଜଣେ ଖାଣ୍ଟି ସରଳ ଓଡ଼ିଆ ଓ ପଣ୍ଡିତ ଗୋପବନ୍ଧୁଙ୍କ ପରି ଜଣେ ଜାତୀୟତାବାଦୀ । ବାସ୍ତବିକ୍ ସେ ଥିଲେ ଓଡ଼ିଆ ଜାତିର ଗର୍ବ ଓ ଗୌରବ ।

ସମ୍ପାଦକ
ଉତ୍କଳ ପ୍ରସଙ୍ଗ
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଭୁବନେଶ୍ୱର

# ଅଲ୍‌ଚିକି ଲିପି ଉଦ୍ଭାବକ ପଣ୍ଡିତ ରଘୁନାଥ ମୁର୍ମୁ

**ଠାକୁରଦାସ ହାଁସଦା଼**

ଭାରତର ଆଦିବାସୀ ସମ୍ପ୍ରଦାୟ ଲୋକମାନଙ୍କ ମଧ୍ୟରେ ସାନ୍ତାଳ ସମ୍ପ୍ରଦାୟର ଲୋକମାନେ ବହୁଳ ମାତ୍ରାରେ ଅଛନ୍ତି । ଭାରତ ଭିତରେ ଏମାନେ ମୁଖ୍ୟତଃ, ଓଡିଶା ପ୍ରଦେଶ, ଝାରଖଣ୍ଡ, ବିହାର, ପଶ୍ଚିମବଙ୍ଗ, ମଧ୍ୟପ୍ରଦେଶ, ଛତିଶଗଡ, ଆସାମ ଓ ତ୍ରିପୁରା ରାଜ୍ୟମାନଙ୍କରେ ଥିବାବେଳେ, ଭାରତ ବାହାରେ ଏମାନେ ନେପାଳର ଝାପା, ମୋରାଙ୍ଗ ଓ ସୁନ୍‌ସାରି ଜିଲ୍ଲା, ବଙ୍ଗଳା ଦେଶର ଛୋଟନାଗପୁର, ରାଜମହଲ ଓ ଦଲମା ପାହାଡ ଅଂଚଳର ପାଦଦେଶରେ, ଦାମୋଦର ଉପତ୍ୟକାରେ, ଭୁଟାନ୍ ଏବଂ ମିଆଁମାର୍‌ର ସୀମା ଅଂଚଳମାନଙ୍କରେ ବସବାସ କରନ୍ତି । ଏହି ସାନ୍ତାଳି ଲୋକମାନଙ୍କର ସଭ୍ୟତା, ସମାଜ, ସଂସ୍କୃତି, ଭାଷା, ପର୍ବପର୍ବାଣି, ଦେବା-ଦେବୀ, ନୀତି-ନିୟମ ଓ ବ୍ୟବହାର ଖୁବ୍ ଉଚ୍ଚକୋଟୀର ଅଟେ । ଏମାନେ ମନୁଷ୍ୟ ସଭ୍ୟତାର Austro Asiatic ଭାଷା କହୁଥିବା ମୁଣ୍ଡାରି ସମ୍ପ୍ରଦାୟର ଲୋକ ଅଟନ୍ତି ଏବଂ ଏମାନେ ମୁଖ୍ୟତଃ କୃଷି ଉପରେ ଜୀବିକା ନିର୍ବାହ କରିଥାନ୍ତି । ମୁଣ୍ଡା, ସାନ୍ତାଳ ଏବଂ ହୋ ଆଦିବାସୀ ସମ୍ପ୍ରଦାୟମାନେ ଏହି ସଭ୍ୟତାରେ ଅନ୍ତର୍ଭୁକ୍ତ । ଏହି ସମ୍ପ୍ରଦାୟର ଭାଷାରେ ସେମାନେ ନିଜକୁ ଖେର୍‌ୱାଲ୍ ବଂଶ ବୋଲି ସମ୍ବୋଧିତ କରିଥାନ୍ତି । ତେଣୁ, ଖେର୍‌ୱାଲ୍ ବଂଶ କହିଲେ ଏହି ସାନ୍ତାଳ, ମୁଣ୍ଡା ଓ ହୋ ସମ୍ପ୍ରଦାୟର ଲୋକଙ୍କୁ ବୁଝାଇ ଥାଏ ଏବଂ ଏକଇ ଜନନୀର ତିନି ସୁ-ପୁତ୍ର ସ୍ୱରୂପ ସେମାନେ ପରସ୍ପରକୁ ଅନ୍ତର ଆତ୍ମାରେ ଆଦର କରି ବିପଦ-ଆପଦରେ ମଧ୍ୟ ସାହାଯ୍ୟ କରିଥାନ୍ତି ।

**ଆଦିବାସୀ ସାନ୍ତାଳ ସମ୍ପ୍ରଦାୟର ଏହି ଅଲ୍‌ଚିକି ଅକ୍ଷରଗୁଡିକ ପ୍ରକୃତି ସହିତ ଜଡିତ ହୋଇ ରହିଛି, ଏହାର ମହତ ପ୍ରକୃତି ପରି ସ୍ୱଚ୍ଛ ଏବଂ ସତ୍ୟ ଅଟେ ।**

ସାନ୍ତାଳ ସମ୍ପ୍ରଦାୟର ଲୋକମାନେ ଆମ ଓଡିଶାର ୬୨ ପ୍ରକାର ଆଦିବାସୀମାନଙ୍କଠାରୁ ଅନ୍ୟତମ । ଏମାନଙ୍କ ଭାଷାର ଏକ ସ୍ୱତନ୍ତ୍ର ଲିପି ରହିଛି, ଏହାକୁ ଅଲ୍‌ଚିକି କୁହାଯାଏ । ଅଲ୍‌ଚିକିର ଉଦ୍ଭାବକ ପଣ୍ଡିତ ରଘୁନାଥ ମୁର୍ମୁ ୧୯୨୫ ମସିହାରେ ଏହାକୁ ଉଦ୍ଭାବନ କରିଥିଲେ ଏବଂ



ଏହା ୨୦୦୩ ମସିହା ଡିସେମ୍ବର ମାସ ୨୨ ତାରିଖ ଦିନ ଭାରତ ସରକାରଙ୍କ ଦ୍ୱାରା ସମ୍ବିଧାନ ସ୍ୱୀକୃତି ମିଳିବା ଫଳରେ, ଏହା ରାଷ୍ଟ୍ରଭାଷା ରୂପେ ପରିଗଣିତ ହୋଇଅଛି । ଏହି ଦିନଟି ସାନ୍ତାଳି ଆଦିବାସୀମାନଙ୍କର ବଡ ଖୁସିର ଦିନ ଅଟେ ଏବଂ ସେମାନେ ଏହି ଦିବସଟିକୁ ସାନ୍ତାଳି ଭାଷା ଦିବସ ହିସାବରେ ସାରା ଭାରତରେ ଅଲ୍‌ଚିକି ପାର୍‌ସି ମାହା ଦିବସ ରୂପେ ପାଳନ କରନ୍ତି ।

ରଘୁନାଥ ମୁର୍ମୁ ରାଇରଙ୍ଗପୁର ସନ୍ନିକଟ ଡାଣ୍ଡବୁସ୍ ଗ୍ରାମରେ ୧୯୦୫ ମସିହା ବୈଶାଖ ମାସ ବୁଦ୍ଧ ପୂର୍ଣ୍ଣିମା ଦିନ ଜନ୍ମ ଗ୍ରହଣ କରିଥିଲେ । ପିଲାଟିର ଜନ୍ମ ପରଦିନ ଏକ ସାଧୁ ବାବା ତାଙ୍କରି ଘରକୁ ଆସିଥିଲେ ଏବଂ କହିଥିଲେ- ଏହି ପିଲାଟି ଦିନେ ଜଣେ ମହାପୁରୁଷ ହେବ, ନିଜର କାମ ଓ ଯଶ ପାଇଁ

ସାନ୍ତାଳି ସମାଜରେ ବିଦ୍ୟମାନ ହେବ ଏବଂ ଯୁଗଯୁଗ ଧରି ଅମର ରହି ପୂଜା ପାଇବ । ବାସ୍ତବରେ ସେ ସାଧୁ ଜଣକ କହିଥିବା କଥା ସତ୍ୟରେ ପାଲଟିଗଲା ଏବଂ କାଳକ୍ରମେ ସେ ଜଣେ ମହାପୁରୁଷ ହୋଇ ଏ ପୃଥିବୀରେ ଯୁଗ ଯୁଗ ଧରି ଅମର ହୋଇ ରହିଲେ । ସେ ପିଲାଟି ଆଉ କେହି ନଥିଲେ ସ୍ୱୟଂ ପଣ୍ଡିତ ରଘୁନାଥ ମୁର୍ମୁ । ତାଙ୍କରି ଏହି ଜନ୍ମଦିନଟି ସାରା ଭାରତରେ ଓ ଭାରତ ବାହାରେ ଗୁରୁକୁନାମି ରୂପେ ପାଳନ କରାଯାଉଅଛି । ରଘୁନାଥ ମୁର୍ମୁଙ୍କର ପିତାଙ୍କର ନାମ ସିଦ ମୁର୍ମୁ ଓ ଭଲ ନାମ ନନ୍ଦଲାଲ ମୁର୍ମୁ ଏବଂ ମାତାଙ୍କର ନାମ ସଲମା ମୁର୍ମୁ । ଏହି ଦମ୍ପତିଙ୍କର ଦୁଇ ଝିଅ ପରେ ଦୁଇ ପୁଅ ହୋଇଥିଲେ । ଏହି ପିଲାମାନଙ୍କର ନାମସବୁ ଯଥାକ୍ରମେ ବାହା ମୁର୍ମୁ, ସନା ମୁର୍ମୁ, ରଘୁନାଥ ମୁର୍ମୁ ଏବଂ ଦୁବରାଜ ମୁର୍ମୁ । ପିତା ନନ୍ଦଲାଲ ଜଣେ ନିପୁଣ ଓ ସୁନ୍ଦର ବଢେଇ କାମ ଜାଣିଥିଲେ ଏବଂ ସେ ଏଥିରେ ଖ୍ୟାତିଅର୍ଜନ କରିଥିଲେ । ମଧ୍ୟବିତ୍ତ ପରିବାରର ସେ ଜଣେ ଦକ୍ଷ ଚାଷୀ ଥାଇ ମଧ୍ୟ ବଢେଇ କାମ ବେଶ୍ ଜାଣିଥିଲେ । ତାଙ୍କରି ଗ୍ରାମରେ ସେ ପୂଜାରୀ (ନାୟକେ) ମଧ୍ୟ ଥିଲେ । ଡାଣ୍ଡବୁସ ଗ୍ରାମର ବିଭିନ୍ନ ଧର୍ମପୀଠ ଯଥା ଜାହିରା (ଜାହେର୍ ବଙ୍ଗା), ଘରପୂଜା(ଭିତାର୍ ବଙ୍ଗା), ଗୋ-ଶାଳା ପୂଜା(ଗହାଲ୍ ବଙ୍ଗା) ଓ ଗାଁ-ଦାଣ୍ଡ ପୂଜା(ଗଶାଣେ ବଙ୍ଗା) ଆଦି ଧର୍ମପୀଠ ମାନଙ୍କଠାରେ ବିଭିନ୍ନ ପର୍ବପର୍ବାଣିମାନଙ୍କରେ ପିତା ସିଦ ମୁର୍ମୁ ପୂଜାପାଠ କରୁଥିଲେ । ତତ୍ ସଙ୍ଗେ ସଙ୍ଗେ ଗ୍ରାମର ପରିବାର କିମ୍ବା ସାହି ଭିତରେ ବାଦ-ବିବାଦ ଲାଗିଲେ, ସେ ଆଚାର ବିଚାର କରି ନ୍ୟାୟମାନ ଦେଉଥିଲେ, ପର୍ବ ପାଳନ କରିବାର ତିଥି ଓ ବାରମାନ ସ୍ଥିର କରୁଥିଲେ, ଫଳରେ ସାନ୍ତାଳ ସମାଜରେ ତାଙ୍କୁ ବେଶ ଲୋକମାନେ ମାନୁଥିଲେ ଓ ତାଙ୍କୁ ଖାତିର ମଧ୍ୟ ମିଳୁଥିଲା । ଅନେକାଂଶ ସମୟରେ ବାଳକ ରଘୁନାଥ ମୁର୍ମୁ ପିତାଙ୍କୁ ବଢେଇ ଓ କୃଷି କାମରେ ସାହାଯ୍ୟ କରୁଥିଲେ ଏବଂ ପିତାଙ୍କଠୁ ଭଲ ବଢେଇ କଳା ଓ କାରୁକାର୍ଯ୍ୟ ଶିଖିଥିଲେ, ଯାହା ପରବର୍ତ୍ତୀ ଅଲ୍‌ଚିକି ଉଦ୍ଭାବନ ସମୟରେ ଦୃଷ୍ଟାନ୍ତ ଦେଖିବାକୁ ମିଳିଥାଏ । ସମାଜରେ ସେକାଳରେ ଘଟୁଥିବା ବାଦ ବିବାଦ ଏବଂ ବିଭେଦ ତାଙ୍କୁ ଅଧିକାଂଶ ସମୟରେ ସାମ୍ନା କରିବାକୁ ପଡୁଥିଲା । ପିଲାଦିନରୁ ସେ ଅତ୍ୟନ୍ତ ପରିଶ୍ରମୀ, ବିଚକ୍ଷଣ ଏବଂ ବୁଦ୍ଧିମାନ୍ ଥିଲେ । ପିଲାଦିନରୁ ହିଁ ତାଙ୍କର ଜାତିଗତ ଦେଶ ପ୍ରେମ ଥିଲା ଏବଂ ସମାଜର କୁସଂସ୍କାର ଦୂର କରିବା ପ୍ରତି ସର୍ବଦା ଚେଷ୍ଟିତ ଥିଲେ । ନିଜ ସାନ୍ତାଳି ସମାଜର ଲୋକମାନେ ଦିନ ମଜୁରିଆ, ଚାଷୀ, ବଢେଇ ଏବଂ ଛୋଟ-ବଡ ଚାକିରିଆ ଥିବାରୁ ସେମାନଙ୍କର ଜୀବନ ଯାପନରେ କିପରି ଉନ୍ନତି ଘଟିବ ସେଥିପାଇଁ ସେ ବିଶେଷ ଚିନ୍ତିତ ଥିଲେ ।

ରଘୁନାଥ ମୁର୍ମୁଙ୍କର ଶିକ୍ଷା ଗମ୍ଭାରିଆ ବିଦ୍ୟାଳୟରୁ ଆରମ୍ଭ କରି ବହଳଦା ବିଦ୍ୟାଳୟରେ, ପରେ ବାରିପଦା ଉଚ୍ଚ ବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ କଲା ପରେ ଶିକ୍ଷା ସମାପନ କରିଥିଲେ । ସେକାଳର ଶିକ୍ଷାର ମହତ ଏବେକାର ଶିକ୍ଷା ଅପେକ୍ଷା ଅନେକ ବେଶୀ । ପଣ୍ଡିତ ରଘୁନାଥ ମୁର୍ମୁ ସନ୍ ୧୯୨୪ ମସିହାରେ ବାରିପଦା ହାଇସ୍କୁଲରେ ପାଠପଢିବା ପାଇଁ ଆସିଥିଲେ । ଠିକ ସେହି ବର୍ଷ ହିଁ ତାଙ୍କର ପିଲାଦିନର ସ୍କୁଲ ସାଙ୍ଗ ଏବଂ ସମ୍ପର୍କୀୟ ମାମୁଁ ସାଉନା ମୁର୍ମୁ କାଦୁଆଣିରୁ ସଦର ମହକୁମା ବାରିପଦାକୁ ଗୁରୁଶିକ୍ଷା ପ୍ରଶିକ୍ଷଣ ନେବାପାଇଁ ଆସି ଏକ ଛାତ୍ରାବାସରେ ରହିଥାନ୍ତି । ମୟୂରଭଞ୍ଜ ସେତେବେଳେ ଏକ ଗଡଜାତ ରାଜ୍ୟ ଭାବରେ ପରିଗଣିତ ହେଉଥିଲା ଏବଂ ମହାରାଜ ସାର୍ ଶ୍ରୀ ପ୍ରତାପ ଚନ୍ଦ୍ର ଭଞ୍ଜଦେଓ (ଶାସନ କାଳ ୨୧-୪-୧୯୨୮ରିଖଠାରୁ ତା:୧-୧-୧୯୪୯ରିଖ) ମୟୂରଭଞ୍ଜ ଦେଶକୁ ଶାସନ କରୁଥିଲେ । ମହାରାଜା ରାଜବାଟୀ ବାରିପଦାରେ ବସି ସମଗ୍ର ମୟୂରଭଞ୍ଜ ଦେଶରେ ଶାସନ ଚଳାଉଥିଲେ । ରାଜପ୍ରାସାଦରୁ ରଘୁନାଥ ମୁର୍ମୁ ପଢୁଥିବା ବାରିପଦା ଉଚ୍ଚ ବିଦ୍ୟାଳୟର ଦୂରତା ମାତ୍ର ତିନି କିଲୋମିଟର ଥିଲା । ଏହିଠାରେ ଏକଦା ରାଜା ଶାସନ ଚାଲିଥିବା ବେଳେ ହିଁ ପଣ୍ଡିତ ରଘୁନାଥ ମୁର୍ମୁଙ୍କର ପାଠପଢା ସହିତ ଅଲ୍‌ଚିକି ଅକ୍ଷର ଉଦ୍ଭାବନ କରିବା କାମ ମଧ୍ୟ ପ୍ରବଳ ବେଗରେ ଚାଲିଥିଲା । ମାମୁଁ ସାଉନା ମୁର୍ମୁ ଭଣଜା ରଘୁନାଥ ମୁର୍ମୁଙ୍କୁ ଅକ୍ଷର ଉଦ୍ଭାବନ କରିବା ପ୍ରକ୍ରିୟାରେ ଅନେକ ସାହାଯ୍ୟ ଓ ଉତ୍ସାହ ଦେଉଥିଲେ, ଯାହା ରଘୁନାଥ ମୁର୍ମୁଙ୍କୁ ଦିନେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟପଥରେ ପହଂଚାଇ ଦେଇଥିଲା । ପଣ୍ଡିତ ରଘୁନାଥ ମୁର୍ମୁ ପାଠ ପଢିବା ସହିତ ଲିପି ତିଆରି କରିବା ପ୍ରକ୍ରିୟାରେ ଦିନ ରାତି ଲାଗିପଡି ସନ ୧୯୨୫ ମସିହାରେ ସାନ୍ତାଳି ଭାଷାର ଅଲ୍‌ଚିକି ଲିପିର ସମସ୍ତ ୩୦ଟି ଅକ୍ଷର ଆବିଷ୍କାର କରିପାରିଥିଲେ । ସେତେବେଳକୁ ପଣ୍ଡିତ ରଘୁନାଥ ମୁର୍ମୁ 'ନବମ ଶ୍ରେଣୀର





ମେଧାବୀ’ ଛାତ୍ର ଥିଲେ ଏବଂ ଶ୍ରେଣୀରେ ମଧ୍ୟ ସେ ହିଁ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ପଣ୍ଡିତ ରଘୁନାଥ ମୁର୍ମୁ ଆବିଷ୍କାର କରିଥିବା ଅଲ୍‌ଚିକି ଲିପି ଦୁଇ ପ୍ରକାରର ଯଥା– ୧) ଛାପା ଅକ୍ଷର ଏହାକୁ କେବଳ ବହିପତ୍ର, ଲିଫଲେଟ୍ ଛାପିବାରେ ବ୍ୟବହୃତ ହେଉଥିବାରୁ ଏହାକୁ ସାନ୍ତାଳିରେ ଛାପା ଅଲ୍ ବୋଲି କୁହାଯାଏ ଏବଂ ୨) ହସ୍ତଲିପି ଏହାକୁ ସାନ୍ତାଳି ଭାଷାରେ ‘ଉଷାର ଅଲ୍’ ବୋଲି କୁହାଯାଏ ।

## -: ଅଲ୍‌ଚିକି ଅକ୍ଷର ମାଳା :-

| ଛାପା ଅକ୍ଷର (Printing Letter) | ହସ୍ତ ଲିପି (Cursive writing Letter) |
|---|---|
| ᱚ ᱛ ᱜ ᱝ ᱞ<br>ଅ ଅତ୍ ଅଗ୍ ଅଂ ଅଲ୍ | ᱚ ᱛ ᱜ ᱝ ᱞ<br>ଅ ଅତ୍ ଅଗ୍ ଅଂ ଅଲ୍ |
| ᱟ ᱠ ᱡ ᱢ ᱣ<br>ଆ ଆକ୍ ଆଜ୍ ଆମ୍ ଆୱ୍ | ᱟ ᱠ ᱡ ᱢ ᱣ<br>ଆ ଆକ୍ ଆଜ୍ ଆମ୍ ଆୱ୍ |
| ᱤ ᱥ ᱦ ᱧ ᱨ<br>ଇ ଇସ୍ ଇହ୍ ଇଁଞ୍ ଇର୍ | ᱤ ᱥ ᱦ ᱧ ᱨ<br>ଇ ଇସ୍ ଇହ୍ ଇଁଞ୍ ଇର୍ |
| ᱩ ᱪ ᱫ ᱬ ᱭ<br>ଉ ଉଚ୍ ଉଦ୍ ଉଣ୍ ଉୟ୍ | ᱩ ᱪ ᱫ ᱬ ᱭ<br>ଉ ଉଚ୍ ଉଦ୍ ଉଣ୍ ଉୟ୍ |
| ᱮ ᱯ ᱰ ᱱ ᱲ<br>ଏ ଏପ୍ ଏଡ୍ ଏନ୍ ଏଲ୍ | ᱮ ᱯ ᱰ ᱱ ᱲ<br>ଏ ଏପ୍ ଏଡ୍ ଏନ୍ ଏଲ୍ |
| ᱳ ᱴ ᱵ ᱶ ᱷ<br>ଓ ଓଟ୍ ଓବ୍ ଓଙ୍ ଓହ୍ | ᱳ ᱴ ᱵ ᱶ ᱷ<br>ଓ ଓଟ୍ ଓବ୍ ଓଙ୍ ଓହ୍ |
| ସଂଖ୍ୟା ମାନ- ᱐=0, ᱑=୧, ᱒=୨, ᱓=୩, ᱔=୪, ᱕=୫, ᱖=୬, ᱗=୭, ᱘=୮, ᱙=୯ | |
| ମାତ୍ରା ଚିହ୍ନମାନ- ᱸ ମୁଁଟୁଡାଃ, ᱹ ଗାହ୍ଲାଟୁଡାଃ, ᱻ ରେଲା, ᱼ ଫାର୍କା, ᱽ ଅହଦ୍ | |

ଏହି ଦ୍ୱିତୀୟ ବିଭାଗରେ ଲିପି ସାହାଯ୍ୟରେ ବିଭିନ୍ନ ଚିଠିପତ୍ର, ଦସ୍ତଖତ ଓ ଦଲିଲମାନଙ୍କରେ ଅତି ସହଜରେ ଲେଖାଯାଇପାରେ । ସାନ୍ତାଳି ଭାଷାର ଏହି ଅଲ୍‌ଚିକି ଲିପି, ଅନ୍ୟାନ୍ୟ ଜାତିର ଭାଷା ପରି ଏହାର ବିଶେଷତ୍ୱ ମଧ୍ୟ ଅନେକ ରହିଅଛି । ଏଥିରେ ସମୁଦାୟ ୩୦ଟି ଅକ୍ଷର ମଧ୍ୟରୁ ୬ଗୋଟି ସ୍ୱରବର୍ଣ୍ଣ ଓ ୨୪ ଗୋଟି ବ୍ୟଞ୍ଜନ ବର୍ଣ୍ଣମାନ ରହିଛି । ଏହା ବ୍ୟତୀତ ୫ଗୋଟି ମାତ୍ରା ଚିହ୍ନମାନ ମଧ୍ୟ ରହିଅଛି, ଯାହା

**ᱚ(ଅତ୍) ମାନେ ଭୂମି, ᱜ(ଅଗ୍) ମାନେ ଧୂଆଁ ଦେବା, ᱝ(ଅଂ) ମାନେ ଫୁଙ୍କିବା, ᱞ(ଅଲ୍) ମାନେ ଲେଖିବା, ᱟ(ଆକ୍) ମାନେ ସେ, ᱢ(ଆମ୍) ମାନେ ତମେ, ᱤ(ଇଁଜ୍) ମାନେ ମୁଁ, ᱨ(ଇର୍) ମାନେ କାଟିବା, ᱫ(ଉଦ୍) ମାନେ ଛତୁ, ᱮ(ଏନ୍) ମାନେ ଖଳାରେ ହଳାଚାପି ଧାନ ଅମଳ କରିବା ଆଦି ଦୃଷ୍ଟାନ୍ତ ରହିଅଛି । କେତେକ ଅଲ୍‌ଚିକି ଲିପି ମଣିଷର ଚକିତ ଭାବକୁ ବୁଝାଇ ଥାଏ, ସେଗୁଡିକ ହେଲା - ᱶ(ଆଉ), ᱸ(ଇସ୍), ᱷ(ଇହ୍), ᱴ(ଉୟ୍), ᱺ(ଓହ୍) ଇତ୍ୟାଦି ।**

ଶବ୍ଦମାନ ଗଠନ ପ୍ରକ୍ରିୟାରେ ବ୍ୟବହୃତ ହୋଇଥାଏ । ଏହି ୩୦ଟି ଅଲ୍‌ଚିକି ଲିପିକୁ ୫ଗୋଟି ଧାଡିରେ ବିଭକ୍ତ କରାଯାଇଅଛି ଏବଂ ପ୍ରତ୍ୟେକ ଧାଡିରେ ୬ଟି ଲେଖାଏଁ ଲିପି ରହିଛି । ପ୍ରତ୍ୟେକ ଧାଡିର ପ୍ରଥମ ଲିପିଟି ସ୍ୱର ବର୍ଣ୍ଣ ଅଟେ ଏବଂ ଏହା ବ୍ୟଞ୍ଜନ ବର୍ଣ୍ଣକୁ ଶବ୍ଦ ଗଠନ କରିବାରେ ସାହାଯ୍ୟ କରିଥାଏ । ଅଲ୍‌ଚିକି ଲିପି ଅନ୍ୟ କୌଣସି ଜାତିର ଲିପି କିମ୍ୱା ଭାଷାକୁ ଅନୁକରଣ କରାଯାଇ ନାହିଁ । ବାସ୍ତବରେ, ପ୍ରତ୍ୟେକ ଅଲ୍‌ଚିକି ଲିପିର ନିର୍ଦ୍ଦିଷ୍ଟ ପରିଚୟ, ସ୍ୱତନ୍ତ୍ରତା ଓ ବିଶେଷତ୍ୱ ମଧ୍ୟ ରହିଅଛି । ଯେପରିକି–

ଆଦିବାସୀ ସାନ୍ତାଳ ସମ୍ପ୍ରଦାୟର ଏହି ଅଲ୍‌ଚିକି ଅକ୍ଷରଗୁଡିକ ପ୍ରକୃତି ସହିତ ଜଡିତ ହୋଇ ରହିଛି, ଏହାର ମହତ ପ୍ରକୃତି ପରି ସ୍ୱଚ୍ଛ ଏବଂ ସତ୍ୟ ଅଟେ । ମାତ୍ର ଏହାର ପ୍ରଚାର ଓ ପରିପ୍ରକାଶର ଅଭାବ ଥିବାରୁ ଏହାର ବିକାଶ ଘଟିପାରୁ ନାହିଁ, କି ଏହା ଖ୍ୟାତି ଅର୍ଜନ କରିପାରୁ ନାହିଁ । ସାନ୍ତାଳି ଭାଷାର ଶବ୍ଦଗୁଡିକ ଅନ୍ୟ ଯେକୌଣସି ଭାଷାର ଅନୁବାଦ କରିହୁଏ ନାହିଁ କି ଅନ୍ୟ ଲିପିରେ ଲେଖିବା ମଧ୍ୟ ଅନେକ କଷ୍ଟ ଅଟେ, ବାସ୍ତବରେ କହିବାକୁ ଗଲେ ସାନ୍ତାଳି ଭାଷାର କେତେକ ଶବ୍ଦଗୁଡିକ ଅନୁବାଦ କରିହୁଏ ନାହିଁ, ବରଂ ଏପରି କରୁଥିବା ବ୍ୟକ୍ତି ଅଧିକ ମାତ୍ରାରେ ଭୁଲ ଭଟକା କରିଥାନ୍ତି ।

ପଣ୍ଡିତ ରଘୁନାଥ ମୁର୍ମୁ କେବଳ ନବମ ଶ୍ରେଣୀର ଛାତ୍ର ହୋଇ ଏହି ଦୁଇ ପ୍ରକାରର ସାନ୍ତାଳି ଆଦିବାସୀ ଲିପି ଦ୍ୱୟକୁ ବାହାର କରିବା ଏକ ସାଧାରଣ ଛାତ୍ର ପାଖରେ ସମ୍ଭବପର ନୁହେଁ । ତେଣୁ, ସେ ଜଣେ ସାଧାରଣ ଛାତ୍ର ନଥିଲେ । ସେ ପିଲାଟି ଦିନରୁ ମହାଜ୍ଞାନୀ ଓ ଚାଲାକ ଥିଲେ, ଆଦିବାସୀ ସାନ୍ତାଳି ପରିବାରରେ ଜନ୍ମ ନେଇଥିଲେ ସତ କିନ୍ତୁ ତାଙ୍କର ଚିନ୍ତାଧାରା ଓ ଦିଗ୍‌ଦର୍ଶନ ଯଥେଷ୍ଟ ପରିମାଣରେ ବେଶୀ ଥିଲା । ଏହିପରି ଭାବରେ ସାନ୍ତାଳି ଲିପି ସାଙ୍ଗକୁ ଉଚ୍ଚ ଶିକ୍ଷା ପାଠପଢା କାମ ଚାରି ବର୍ଷ କାଳ ବାରିପଦା ସଦର ମହକୁମାରେ ରାଜାଙ୍କ ଦ୍ୱାରା ନିର୍ମିତ ଛାତ୍ରାବାସରେ ରହି ପଣ୍ଡିତ ରଘୁନାଥ ମୁର୍ମୁ ତା.୨୮–୪–୧୯୨୮ରିଖ ଦିନ ହାଇସ୍କୁଲ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ପାଇ କୃତକାର୍ଯ୍ୟ ହୋଇଥିଲେ । ରଘୁନାଥ ମୁର୍ମୁ ପାଠପଢ଼ା କାମ ସାରି ଘରେ ବେକାର ବସି ନଥିଲେ, ଘରର ଆର୍ଥିକ ଅବସ୍ଥା ସେତେବେଳେ ଏତେଟା ଭଲ ନଥିଲା । ତେଣୁ, ଏହାକୁ ଦେଖି ସେ ଚାଷ କାମରେ ଲାଗି ପଡିଥିଲେ ଏବଂ ଏହା ସହିତ କିଛି ଅର୍ଥ ଉପାର୍ଜନ କରିବା ପାଇଁ ଚେଷ୍ଟା କଲେ । ପଣ୍ଡିତ ରଘୁନାଥ ମୁର୍ମୁ ନିଜ ଘରେ ହିଁ ଏକ 'ତନ୍ତକଳ' ବସେଇ ଲୁଗା ବୁଣିବା ଆରମ୍ଭ କଲେ ଏବଂ ରାଇରଙ୍ଗପୁର ଅଂଚଳରେ ଥିବା ବିଭିନ୍ନ ଗାଁ ହାଟ ଓ ବଜାରମାନଙ୍କରେ ଉନ୍ନତ ମାନର ଗାମୁଛା, ଲୁଙ୍ଗି, ଧୋତି, ଶାଢୀ ଆଦି ବିକ୍ରୟ କରି ଘରର ଗୁଜୁରାଣ ଭଲରେ ମେଣ୍ଟାଇଲେ ।

ଏହା ପରେ କିଛି ଦିନ ରାଇରଙ୍ଗପୁର ତହସିଲ କଚେରିରେ କାମ ମଧ୍ୟ କଲେ । ସନ ୧୯୩୧ ମସିହାରେ ରଘୁନାଥ ମୁର୍ମୁ ସରକାରଙ୍କର ଜନଗଣନା କାମରେ ନିଜକୁ ନିୟୋଜିତ କରିଥିଲେ । ଏହିପରି ଛୋଟବଡ କାମ କରୁଥିବା ବେଳେ ବାରିପଦା ପାୱାର ହାଉସରେ କାରିଗର ପ୍ରଶିକ୍ଷଣ ନେବାପାଇଁ ଦରଖାସ୍ତ ଆବେଦନ କଲେ । କିଛି ଦିନ ଗଲା ପରେ କାରିଗର ତାଲିମ କେନ୍ଦ୍ରରୁ ତାଙ୍କର ଯୋଗ ଦେବାପାଇଁ ପତ୍ର ଘରେ ଆସି ପହଂଚିବାରୁ, ରଘୁନାଥ ମୁର୍ମୁ ବାରିପଦା ପାୱାର ହାଉସ କାରିଗର ପଶିକ୍ଷଣ ଶିବିରରେ ଯୋଗଦେଲେ । କାରିଗର ପ୍ରଶିକ୍ଷଣ ଶିବିର, ବାରିପଦା ପାୱାର ହାଉସଠାରେ ବିଭିନ୍ନ କାରିଗରି କାମ ଶିକ୍ଷା ଲାଭ କରିବା ପାଇଁ ସରକାରଙ୍କ ଦ୍ୱାରା ପ୍ରଶିକ୍ଷଣ ଦିଆଯାଉଥିଲା ଏବଂ ଏଥିରେ କୃତକାର୍ଯ୍ୟ ହେଉଥିବା

ଛାତ୍ରମାନଙ୍କୁ ବିଭିନ୍ନ ଶିକ୍ଷାନୁଷ୍ଠାନମାନଙ୍କରେ ଚାକିରି ଦିଆଯାଉଥିଲା । ଏହି କାରିଗର ଶିକ୍ଷା କେନ୍ଦ୍ରରେ ବଢ଼େଇ କାମ ସହିତ, ସିଲେଇ ଶିକ୍ଷା, ତନ୍ତ କାମ, ବିଜୁଳି ବିଦ୍ୟା, କଣ୍ଢେଇ ତିଆରି କାମ ଆଦି ବିଭିନ୍ନ ଉନ୍ନତ ମାନର ଶିକ୍ଷା ଛାତ୍ରମାନଙ୍କୁ ଦିଆଯାଉଥିଲା । ରଘୁନାଥ ମୁର୍ମୁ ମଧ୍ୟ ଏହିଠାରେ ପ୍ରଶିକ୍ଷଣ ନେଉଥିଲେ । ସନ୍ ୧୯୩୨ ମସିହାରେ ସେ ଏହି କାରିଗର ପ୍ରଶିକ୍ଷଣର ବାର୍ଷିକ ପରୀକ୍ଷାରେ ଭଲ ନମ୍ବର ରଖି ପାସ କଲେ । କାରିଗର ତାଲିମ ସରିଗଲା ପରେ, ରଘୁନାଥ ମୁର୍ମୁ ନିଜ ଗାଁ ଘର ଡାଣ୍ଡବୁସକୁ ଫେରିଗଲେ । ରଘୁନାଥ ମୁର୍ମୁ ଏଥର ଅନ୍ୟ କୌଣସି କାମଧନ୍ଦା ବାହାରେ ନ କିର ନିଜଘରେ ଥିବା ନିଜର ପୂର୍ବ 'ତନ୍ତକଳ'ରେ ଲୁଗାବୁଣିବା କାମକୁ ପୁଣି ଆରମ୍ଭ କଲେ । ରଘୁନାଥ ମୁର୍ମୁଙ୍କର ଲୁଗାବୁଣା କାମ ତାଙ୍କର ପେସା କାମ ନୁହେଁ ମାତ୍ର, ଅର୍ଥର ଅଭାବକୁ କିପରି ଭାବରେ ତ୍ୱରାନ୍ୱିତ କରାଯାଇ ପାରିବ, ସେଥିପ୍ରତି ରଘୁନାଥଙ୍କୁ ବେଶ୍ ଜଣାଥିଲା । ରଘୁନାଥ ତାଙ୍କର ପିଲାଦିନୁ ଘର ବାହାରେ ରହି ପାଠ ପଢ଼ିଛନ୍ତି । ସେ ଅଭାବ ଅସୁବିଧାକୁ କିଭଳି ଭାବରେ ମୁକାବିଲା କରାଯାଇ ପାରିବ ସେସବୁ କଥା ତାଙ୍କୁ ଭଲ ଭାବରେ ଜଣାଥିଲା । ପ୍ରାରମ୍ଭରୁ ପିଲା ରଘୁନାଥ ମୁର୍ମୁ ନିଜ ଗ୍ରାମରେ ବିଦ୍ୟାଳୟ ନଥିବାରୁ ତିନି କିଲୋମିଟର ଦୂର ଗମ୍ଭାରିଆ ପ୍ରାଥମିକ ବିଦ୍ୟାଳୟରେ ପଦଯାତ୍ରା କରି ପାଠପଢା ଆରମ୍ଭ କରିଥିଲେ । ଏହା ପରେ ସେ ତୃତୀୟ ଶ୍ରେଣୀରୁ ୭ମ ଶ୍ରେଣୀ ପର୍ଯ୍ୟନ୍ତ ୬ବର୍ଷ କାଳ ବହଳଦା 'ଚୁନୁବାସା'ଠାରେ ରହି ପାଠ ପଢିଲେ । ରଘୁନାଥ ମୁର୍ମୁ ଏହାପରେ ୮ମ ଶ୍ରେଣୀରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ବାରିପଦା ହାଇସ୍କୁଲର ଛାତ୍ରାବାସରେ ରହି ପାଠ ପଢିଛନ୍ତି । ତେଣୁ, ଅଭାବ, ଅନାଟନ, ଦୁଃଖ, କଷ୍ଟ କ'ଣ ଏବଂ ଏହାକୁ କିଭଳି ଭାବରେ ମୁକାବିଲା କରାଯାଇ ପାରିବ, ତାହା ରଘୁନାଥ ମୁର୍ମୁଙ୍କୁ ବେଶ୍ ଜଣାଥିଲା ।

ବିଭିନ୍ନ ଡିଜାଇନ୍ ଓ ରଙ୍ଗ ବେରଙ୍ଗର ଲୁଗା, ଗାମୁଛା, ଧୋତି, ବେଡ୍‌ସିଟ୍, ଦରି, ଗାଲିଚା, କାରପେଟ୍, ସତରଞ୍ଜିମାନ ବୁଣିବା ଆରମ୍ଭ କଲେ । ତାଙ୍କଦ୍ୱାରା ବୁଣାଯାଇଥିବା ଲୁଗାପଟାଗୁଡିକ ଗାଁ-ଗଣ୍ଡାରେ, ହାଟ-ବଜାରରେ ଓ ବାହାରେ ବେଶ୍ ଆଦର ହୋଇ ଚାହିଦା ହେବାରେ ଲାଗିଲା ଏବଂ ଏଥିରୁ ବେଶ୍ ଅର୍ଥ ମଧ୍ୟ ଉପାର୍ଜନ କରି ଘରର ଅଭାବକୁ ଦୂର କରିପାରିଲେ । କାରିଗର ପ୍ରଶିକ୍ଷଣ ନେଉଥିବା ବେଳେ ଓ ଘରେ ନିଜସ୍ୱ ତନ୍ତକଳରେ ବିଭିନ୍ନ ଉନ୍ନତ କିସମର ଲୁଗାପଟା ବୁଣିବାର କାରଗରି କୌଶଳ କାମ ପାଇଁ ରଘୁନାଥ ଅନେକ ସୁନାମ ଅର୍ଜନ କରିବା ଫଳରେ ସେ ସମସ୍ତଙ୍କ ଆଗରେ ଚର୍ଚ୍ଚାର ବିଷୟ ହୋଇରହିଲେ । ଏହି କଥା ଚାରିଆଡେ ପ୍ରଚାରିତ ହେବା ଫଳରେ, ରାଜାଙ୍କର ଲୋକ ଓ ଦେୱାନ ସାହେବ ମହାରାଜ ପ୍ରତାପ ଚନ୍ଦ୍ର ଭଞ୍ଜଦେଓଙ୍କୁ ଜଣାଇଲେ । ଏହାପରେ ଦେୱାନ ସାହେବ Dr. P.K Sen ରଘୁନାଥ ମୁର୍ମୁଙ୍କର ନାମ Industrial Co-operative Training ପାଇଁ ସୁପାରିଶ କଲେ ଏବଂ ମହାରାଜା ମଧ୍ୟ ଏହାକୁ ମଞ୍ଜୁରି ଦେବା ଫଳରେ ରଘୁନାଥଙ୍କୁ ପ୍ରଶିକ୍ଷଣ ନେବା ପାଇଁ ପଶ୍ଚିମ ବଙ୍ଗର ବିଭିନ୍ନ ତାଲିମ କେନ୍ଦ୍ର ଯଥା- କଲିକତା, ଶିରାମପୁର, ଗୋସବା, ବଲପୁର ଏବଂ ଭାଗଲପୁର ଆଦି ତାଲିମ ଶିବିରମାନଙ୍କରେ ତାଲିମମାନ ସେ ନେଲେ ।

ଏହିସବୁ ତାଲିମ କେନ୍ଦ୍ରମାନଙ୍କରେ ତାଲିମ ସାରିଲା ପରେ, ମୟୂରଭଞ୍ଜ ମହାରାଜା ସାର୍ ଶ୍ରୀ ପ୍ରତାପ ଚନ୍ଦ୍ର ଭଞ୍ଜଦେଓ, ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ଏକ ଭଲ ଚାକିରିରେ ନିୟୋଜନ କଲେ । ଏହା ଫଳରେ ପଣ୍ଡିତ ରଘୁନାଥ ମୁର୍ମୁ Purna Chandra Industrial Training Institution, Baripada ଠାରେ ଅନୁଦେଷ୍ଟା (Instructor) ପଦବୀରେ ଚାକିରି କଲେ ଏବଂ ଏହିଠାରେ ପ୍ରଶିକ୍ଷଣ ନେଉଥିବା ଛାତ୍ରମାନଙ୍କୁ ତାଲିମ ପ୍ରଦାନ କଲେ । ଏହିଠାରେ ଚାକିରି କଲା ପରେ ରଘୁନାଥ ଟିକେ ନିଃଶ୍ୱାସ ମାରିଲେ ମାତ୍ର, ୬ମାସ ଚାକିରି କଲା ପରେ ପିତା ନନ୍ଦଲାଲ ବେଶୀ ଦିନ ପୁତ୍ର ସୁଖ ଅନୁଭବ କରିପାରିଲେ ନାହିଁ ଏବଂ ସେ ଆରପାରିକୁ ଚାଲିଗଲେ । ଫଳରେ ରଘୁନାଥ ମୁର୍ମୁ ଅନେକ ଜଞ୍ଜାଳରେ ପଡିଗଲେ, ଆଗରୁ ଭଉଣୀ ପରେ ପରେ ଭାଇ ଦୁବରାଜର ମଧ୍ୟ ମୃତ୍ୟୁ ହୋଇଯାଇଥିଲା ଆଉ ଏବେ ବାପା ଚାଲିଗଲେ । ଏହିପରି ଭାବରେ ରଘୁନାଥ ମୁର୍ମୁ ହତଭାଗା ହୋଇଗଲେ, ତାଙ୍କରି ଘର ସମ୍ଭାଳିବାକୁ ଆଉ କେହି ରହିଲେ ନାହିଁ । ପିତା ନନ୍ଦଲାଲ ମୁର୍ମୁଙ୍କର ପରଲୋକ ହେଲା ପରେ, ଘର ସମସ୍ୟା ଅସହାୟ ହୋଇପଡିଲା, ରଘୁନାଥ ମୁର୍ମୁଙ୍କୁ ନିଜେ ଚାଷକାମ ଦେଖିବାକୁ ପଡିଲା, ଘରେ ସାନଭାଇର ବିଧବା ସ୍ତ୍ରୀ ଓ ତା'ର ପିଲାଛୁଆ ଏଥି ସହିତ ପୁନଶ୍ଚ, ତାଙ୍କର





ଦୁଃଖିନୀ ବୃଦ୍ଧା ମାଆ । ନିଜ ସହଧର୍ମିଣୀ ଓ ପଲାଛୁଆ ସହିତ ଏ ସମସ୍ତଙ୍କୁ ଏକାକୀ ସମ୍ଭାଳିବା ସମ୍ଭବପର ନଥିଲା । ଏପଟେ ମୟୂରଭଞ୍ଜ ମହାରାଜା ଦେଇଥିବା ଚାକିରି ଖଣ୍ଡିକ ପୁଣି କିପରି ଭାବରେ ତ୍ୱରାନ୍ୱିତ କରିବେ ! ପୁଣି ଏହିଭଳି ପରିସ୍ଥିତି ଭିତରେ, ସାନ୍ତାଳି ଜାତିର ଭାଷା, ସାହିତ୍ୟ, ଲିପି, ସମାଜ, ସଂସ୍କୃତି ଓ ଶିକ୍ଷାର ବୋଝ କେଉଁଟାକୁ ସେ ସମ୍ଭାଳିବେ । ଘରେ ଗୋଟେ କାମ କରିବା ପାଇଁ ବାରମାସିଆ ପିଲା ଥିଲା ମାତ୍ର ସେ ବାରମ୍ବାର ଜ୍ୱରରେ ପଡୁଥିବାରୁ ସେ ମଧ୍ୟ କାମ କରିପାରୁନଥିଲା । ଏଣୁ ରଘୁନାଥ ମୁର୍ମୁଙ୍କ ବିନା ତାଙ୍କ ଘର ସଂସାର ଭାସି ଯାଉଥିଲା, ନିଜ ଘର ସଂସାର ତାଙ୍କୁ ସମ୍ଭାଳିବାକୁ ହିଁ ପଡିବ ଅନ୍ୟଥା ତାଙ୍କ ପାଖରେ ଆଉ କୌଣସି ଉପାୟ ନାହିଁ । ପରିଶେଷରେ, ରଘୁନାଥ ମୁର୍ମୁ ନିଷ୍ପତ୍ତି ନେଲେ ତାଙ୍କୁ ଘରକୁ ଯିବାକୁ ହିଁ ପଡିବ ଏବଂ ମହାରାଜ ଦେଇଥିବା ଚାକିରି ଖଣ୍ଡିକ ତାଙ୍କୁ ଛାଡିବାକୁ ହିଁ ପଡିବ । ଏଥିପାଇଁ ସେ ମହାରଜାଙ୍କ ପାଖରେ ଆବେଦନ କଲେ ମାତ୍ର, ମହାରଜାଙ୍କର ହୁକୁମ ହେଲା କି ରଘୁନାଥ ମୁର୍ମୁ ତାଙ୍କ ପଦ ଛାଡି ପାରିବେ ନାହିଁ । ଏହାପରେ ତାଙ୍କର କରୁଣ କାହାଣୀ ଦେୱାନ ସାହେବଙ୍କୁ କହିଲେ, ତାଙ୍କରି ଉପଦେଶକ୍ରମେ ଘରପାଖ ବଦଳି କରିବା ପାଇଁ ଏବଂ କମ୍ ବେତନରେ ଖଟିବା ପାଇଁ ମଧ୍ୟ ରଘୁନାଥ ରାଜି ଅଛନ୍ତି ବୋଲି ଆଉଥରେ ଗୁହାରୀ ପତ୍ରରେ ଦର୍ଶାଇ ଆବେଦନ କଲେ, ଯାହାକୁ ଦେଖି ମୟୂରଭଞ୍ଜ ମହାରାଜ ରାଜି ହୋଇଥିଲେ । ଏହା ଫଳରେ ପଣ୍ଡିତ୍ ରଘୁନାଥ ମୁର୍ମୁଙ୍କୁ ବଡାମତଳିଆ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ବଡେଇ ଶିକ୍ଷକ ପଦବୀରେ ରଖାଗଲା । ମହାରାଜା, ରଘୁନାଥ ମୁର୍ମୁଙ୍କର ଶିକ୍ଷକତା ଓ ପିଲାମାନଙ୍କର ପାଠପଢାର ଉନ୍ନତି ଦେଖି ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ସେହି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭାବରେ ଦାୟିତ୍ୱ ମଧ୍ୟ ଦିଆଗଲା ।

ଏହି ବଡାମତଳିଆ ବିଦ୍ୟାଳୟରେ ଶିକ୍ଷକ ଥିବା ସମୟରେ ହିଁ ପଣ୍ଡିତ ରଘୁନାଥ ମୁର୍ମୁ ନିଜେ କାଠର ଏକ ହସ୍ତ ଚାଳିତ ଛପା ଯନ୍ତ୍ର ନିର୍ମାଣ କରିଥିଲେ, ଯାହାକୁ ୧୯୩୯ ମସିହାରେ ବାରିପଦା ଶିଳ୍ପ ପ୍ରଦର୍ଶନୀକୁ ଦୀର୍ଘ ୭୫ କିଲୋମିଟର ଏକ ଶଗଡ ସାହାଯ୍ୟରେ ନିଆଯାଇଥିଲା । ସେଠାରେ, ସେ ବେଳର ମୟୂରଭଞ୍ଜ ମହାରାଜା ସାର୍ ଶ୍ରୀ ପ୍ରତାପ ଚନ୍ଦ୍ର ଭଂଜଦେଓ ଏହାକୁ ଦେଖି ଅତ୍ୟନ୍ତ ଖୁସି ହୋଇଥିଲେ ଏବଂ ରାଜ୍ୟ ସାରା ଅଲ୍‌ଚିକିର ସୁପ୍ରଚାର ଓ ପ୍ରସାର ନିମନ୍ତେ ପ୍ରେରଣା ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ଦେଇଥିଲେ । ପଣ୍ଡିତ ରଘୁନାଥ ଏହି ଅଲ୍‌ଚିକି ହାତ ତିଆରି ଛପା ଯନ୍ତ୍ର ବ୍ୟତୀତ କାଠର ଶଗଡ, କାଠର ସାଇକେଲ୍ (ଡୁଲୁଂ ଗାଡି) ମଧ୍ୟ ନିଜେ ନିର୍ମାଣ କରିଥିଲେ । ଯାହାକୁ ଦେଖି ସେ ଅଂଚଳବାସୀ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଅନେକ ପ୍ରଶଂସା କରିଥିଲେ । ଭଲ ଶିକ୍ଷକତା କରିବାରୁ ମହାରାଜା ରଘୁନାଥ ମୁର୍ମୁଙ୍କୁ ପଦୋନ୍ନତି ଦେବା ସହିତ ବଡାମତଳିଆ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରୁ ରାଇରଙ୍ଗପୁର ଉଚ୍ଚ ବିଦ୍ୟାଳୟକୁ ବଦଳି କଲେ ।

ପଣ୍ଡିତ ରଘୁନାଥ ମୁର୍ମୁ ଜାଣିଥିଲେ ସାନ୍ତାଳି ଜାତି, ଧର୍ମ, ଭାଷା ସାହିତ୍ୟ, ସଂସ୍କୃତି ଓ ଲିପି ପ୍ରଚାର ଓ ପ୍ରସାର ନ ହେଲେ, ଏହି ସମ୍ପ୍ରଦାୟର ଲୋକମାନେ ସମାଜରେ ପଛୁଆ ବର୍ଗରେ ରହିଯିବେ । ଏମାନଙ୍କର ପ୍ରକୃତ ଶିକ୍ଷା କେବଳ ନିଜ ଭାଷାର ଲିପିରେ ହିଁ ସମ୍ଭବପର ବୋଲି ରଘୁନାଥ ମୁର୍ମୁ ବେଶ ବୁଝିପାରି ଥିଲେ ଏବଂ ସେଥିପାଇଁ ସେ ଅଲ୍‌ଚିକି ଲିପି ବିକାଶ ନିମନ୍ତେ ଅଲ୍‌ସମିତି ନାମକ ଏକ ସଂଘ ବନ୍ତଲି ଗ୍ରାମଠାରେ ମଧ୍ୟ ପ୍ରତିଷ୍ଠା କରିଥିଲେ, ଯାହାର କାର୍ଯ୍ୟଭାର ସର୍ଦ୍ଦାର ପଦନ ଟୁଡୁଙ୍କ ପୁତ୍ର ଶ୍ରୀଯୁକ୍ତ ସମ୍ବା ଚରଣ ଟୁଡୁଙ୍କ ହାତରେ ଦେଇଥିଲେ । ଏହି 'ଅଲ୍‌ସମିତି'ର ସଭ୍ୟମାନଙ୍କ ସହାୟତାରେ ଥରେ ମୟୂରଭଞ୍ଜ ମହାରାଜା ପ୍ରତାପ ଚନ୍ଦ୍ର ଭଞ୍ଜଦେଓଙ୍କ ପାଖରେ 'ଅଲ୍‌ଚିକି ଅକ୍ଷର'କୁ ମୟୂରଭଞ୍ଜ ରାଜ୍ୟରେ ସରକାରୀ ଭାବେ ପ୍ରଚଳନ କରିବା ନିମନ୍ତେ ପଣ୍ଡିତ ରଘୁନାଥ ମୁର୍ମୁ ଆବେଦନ କରିଥିଲେ । ବଡାମତଳିଆ ବିଦ୍ୟାଳୟରୁ ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ରାଇରଙ୍ଗପୁର ଉଚ୍ଚ ବିଦ୍ୟାଳୟକୁ ବଦଳି କରାଗଲା ମାତ୍ର, ରାଇରଙ୍ଗପୁର ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କରିବା ଫଳରେ ତାଙ୍କଦ୍ୱାରା ଉଦ୍ଭାବିତ ହୋଇଥିବା ଅଲ୍‌ଚିକି ଲିପିର ପ୍ରଚାର ଓ ପ୍ରସାର କାମ ବାଧାପ୍ରାପ୍ତ ହେଉଥିବାରୁ ପଣ୍ଡିତ ରଘୁନାଥ ମୁର୍ମୁ, ସନ ୧୯୪୬ ମସିହାରେ ରାଇରଙ୍ଗପୁର ଉଚ୍ଚ ବିଦ୍ୟାଳୟର ଶିକ୍ଷକତା ପଦରୁ ଇସ୍ତଫା ଦେଲେ ଏବଂ ଚିରଜୀବନ ସାନ୍ତାଳି ଜାତି, ଧର୍ମ, ଭାଷା ସାହିତ୍ୟ ଓ ଅଲ୍‌ଚିକି ଲିପିର ପ୍ରଚାର ଦିଗରେ ନିଜକୁ ନିୟୋଜିତ କରିଦେଲେ । ସରକାରୀ ଚାକିରି ଛାଡିବା ପରେ ପଣ୍ଡିତ ରଘୁନାଥ ମୁର୍ମୁ ବିହାର ପ୍ରଦେଶର(ଝାରଖଣ୍ଡ) ଜାମସେଦପୁର ଠାରେ 'ଖେରୱାଲ୍ ଜାର୍ପା ସମିତି' ନାମରେ





ଏକ ସମିତି ଗଠନ କଲେ । ଏହି ସମିତିର ଶାଖା–କାର୍ଯ୍ୟାଳୟମାନ ଝାରଖଣ୍ଡ ଜିଲ୍ଲାର ଜାମ୍‌ଜଲା (ତାଙ୍କ ସହଧର୍ମିଣୀଙ୍କ ଗ୍ରାମ), କରଣ୍ଡି, ରାମେଡି ଏବଂ ଓଡିଶା ପ୍ରଦେଶର ରାଇରଙ୍ଗପୁର ସହର ଆଦି ସ୍ଥାନମାନଙ୍କରେ ପ୍ରତିଷ୍ଠା କଲେ ।

ପଣ୍ଡିତ ରଘୁନାଥ ମୁର୍ମୁଙ୍କର ସହଧର୍ମିଣୀଙ୍କ ଗାଁ, ଜାମଜଲା (ଝାରଖଣ୍ଡ)ର ଜଣେ ଶିକ୍ଷିତ ସମ୍ପର୍କୀୟ ଯୁବକ ମୁନିରାମ ବାସ୍କେ ବିହାରର ଏହି 'ଖେର୍‌ୱାଲ୍ ଜାର୍ପା ସମିତି' କାର୍ଯ୍ୟଭାର ଦାୟିତ୍ୱ ତୁଲାଇଥାନ୍ତି । ଏହି ଖେରୱାର ଜାର୍ପା ସମିତି ସହାୟତାରେ ପଣ୍ଡିତ ରଘୁନାଥ ମୁର୍ମୁ ଏକ ଛାପାକଳ କଲିକତାରୁ କିଣି ଆଣିଲେ । ଏଥିରେ ଦରକାର ପଡୁଥିବା ଅଲ୍‌ଚିକି ଲିପି ଛାପିବା ପାଇଁ ଲେଟର ବ୍ଲକ୍ ଓ ଛାଂଚମାନ ନିଜେ ରଘୁନାଥ ମୁର୍ମୁ ବନେଇ ଥିଲେ । ଏହି ଛାପାଯନ୍ତ୍ରକୁ ଝାରଖଣ୍ଡ ପ୍ରଦେଶର ଜାମସେଦପୁର, ଟାଟାନଗର ସହର ଅନ୍ତର୍ଗତ କରଣ୍ଡିଠାରେ ଥିବା ଖାସ ମହଲ ଧୁପାଟିଆ ଭବନଠାରେ ସ୍ଥାପନ କଲେ ଏବଂ ଏହାର ନାମ ରଖିଲେ 'ଚାନ୍ଦାନ ପ୍ରେସ୍' । ଚାକିରି ଛାଡିବା ପରଠାରୁ ସେ ବିହାରର ଏହି କରଣ୍ଡିଠାରେ ଘରତୋଳି ରହିଲେ ଏବଂ 'ସାଗେନ୍ ସାକାମ୍' ନାମିତ ଏକ ପତ୍ରିକା ପ୍ରଥମେ ଛାପିଲେ । ଏହି ପତ୍ରିକାକୁ ଅଲ୍‌ଚିକି ଅନଜ୍ଞ ଥିବା ବ୍ୟକ୍ତିବିଶେଷ କିପରି ପଢିବେ ସେଥିପାଇଁ ଏକ ଅଲ୍‌ଚିକି ଲିପି ଶିକ୍ଷା ପାଇଁ ଅଲ୍‌ଚେମେଦ୍' ନାମିତ ଏକ ବହି ମଧ୍ୟ ଛାପି ବାହାର କଲେ । ଏହି ଅଲ୍‌ଚେମେଦ୍' ବହିରେ ଥିବା ସାନ୍ତାଳି ଲିପିକୁ ଜଣେ ଶିକ୍ଷା ଲାଭ କଲେ ତାକୁ ସାଗେନ୍ ସାକାମ୍ ପତ୍ରିକାକୁ ପଢିବାରେ ସାହାଯ୍ୟ କରିଥାଏ । ଏହାପରେ ପଣ୍ଡିତ ରଘୁନାଥ ମୁର୍ମୁ ବିଭିନ୍ନ ପତ୍ରପତ୍ରିକା, ବହି,ଗଳ୍ପ, ଉପନ୍ୟାସ, ନାଟକ ଆଦି ତାଙ୍କ ଜୀବନ କାଳ ମଧ୍ୟରେ ଲେଖି ଓ ଛାପି ପରିପ୍ରକାଶ କରିଥିଲେ ।

ପଣ୍ଡତି ରଘୁନାଥ ମୁର୍ମୁଙ୍କ ଦ୍ୱାରା ବର୍ଣ୍ଣିତ ଓ ପ୍ରକାଶ ପାଇଥିବା ବିଭିନ୍ନ ପୁସ୍ତକମାନଙ୍କ ମଧ୍ୟରୁ ନିମ୍ନୋକ୍ତଗୁଡିକ ମୁଖ୍ୟ ରହିଛି ଯଥା– ୧) ଅଲ୍‌ଚିକି ଶିକ୍ଷା ବହି– ଅଲ୍‌ଚେମେଦ୍, ଞେଲଜଂ ଲାଗିଦ୍ ଅଲ, ଅଲ୍ ଉପୁରୁମ୍ ୨) ଗଣିତ ବହି– ଏଲ୍‌ଖା ପତବ୍ ୩) ସାନ୍ତାଳି ବ୍ୟାକରଣ ବହି– ରନଲ୍ ୪) ନାଟକ ବହି– ବିଦୁ ଚାନ୍ଦାନ, ଖେର୍‌ୱାଲ୍ ବିର୍ ଓ ଦାଳେଗେ ଧନ୍ ୫) ଗଳ୍ପ ବହି– ପାର୍‌ସି ପହା ୬) ଗୀତ ବହି– ଲାକ୍‌ଚାର୍ ସେରେଞ୍ଜ୍, ହର୍ ସେରେଞ୍ଜ୍, ବାହା ସେରେଞ୍ଜ୍, ଝାରଖାଣ୍ଡ ସେରେଞ୍ଜ୍ ଏବଂ ଆଦିବାସୀ ରାଃ ଆନ୍ଦୁଳ ସେରେଞ୍ଜ୍ ୭) ହିତ ବାଣୀ ବହି– ହିତାଲ ୮) ମନ୍ତ୍ର ବହି– ବାଖେଣ ୯) ସଂଗ୍ରାମ ବହି– ଶିଦ–କାହ୍ନୁ ହୁଲ୍ ୧୦) ଉତ୍ପତ୍ତି ଓ ଲିପି ଜ୍ଞାନର ବହି– ପାର୍‌ସି ଅପାଦ୍ , ପାର୍‌ସି ଇତୁନ ଏବଂ ପାର୍‌ସି ପହା ଓ ୧୧) ପତ୍ରିକା– ସାଗେନ୍ ସାକାମ୍ ଇତ୍ୟାଦି । ପଣ୍ଡିତ ରଘୁନାଥ ମୁର୍ମୁ ଏକାଧାରରେ ଜଣେ ଦକ୍ଷ ଶିକ୍ଷକ, ଉଦ୍ଭାବକ, ଗାଳ୍ପିକ, ନାଟ୍ୟକାର, ବିଶିଷ୍ଟ କବି, ଦିଗ୍‌ଦର୍ଶନବିତ୍, ପାଣ୍ଡିତିଜ୍ଞ, ଗାଣିତିକ, ଶାସ୍ତ୍ରବିତ୍ ଏବଂ ନିପୁଣ କାରିଗର ଅଟନ୍ତି । ବିଭିନ୍ନ ଶିକ୍ଷା କ୍ଷେତ୍ରରେ ତାଙ୍କର ଗଭୀର ପାଣ୍ଡିତ୍ୟ ଥିଲା । ତେଣୁ ସେ ପଣ୍ଡିତ ଆଖ୍ୟାରେ ବିଶେଷ ଭାବରେ ପରିଚିତ । ତାଙ୍କରି ମତରେ ଶିକ୍ଷା ହେଉଛି ମଣିଷର ପ୍ରଥମ କର୍ତ୍ତବ୍ୟ, ଶିକ୍ଷାଲାଭ କଲେ ଭାଷା ଓ ଧର୍ମ ଅର୍ଜନ କରିପାରିଥାଏ, ଶିକ୍ଷା ନ ହେଲେ ମନୁଷ୍ୟ ତା'ର ଭାଷା ଓ ଧର୍ମକୁ ହରାଇ ବସେ ଏବଂ କାଳକ୍ରମେ ସେ ନିଜକୁ ମଧ୍ୟ ହରାଇଥାଏ । ତାଙ୍କରି ଭାଷାରେ–

ଅଲ୍ ମେନାଃ ତାମା, ରଲ୍ ମେନାଃ ତାମା,  
ଧରମ୍ ମେନାଃ ତାମା ଆମ୍ ହଁ ମେନାମ୍  
ଅଲ୍ ଏମ୍ ଆଦ୍ ଲେରେ, ରଲ୍ ଏମ୍ ଆଦ୍ ଲେରେ,  
ଧରମ୍ ଏମ୍ ଆଦ୍ ଲେରେ ଆମ୍ ହମ୍ ଆଦଃ ...।

ପଣ୍ଡିତ ରଘୁନାଥ ମୁର୍ମୁଙ୍କର ଏହି ହିତବାଣୀରୁ ଜଣାଯାଏ ଯେ, ଶିକ୍ଷା ମନୁଷ୍ୟ ପାଖରେ ଥିଲେ, ଭାଷା ଓ ଧର୍ମ ପାଖରେ ଥାଏ । ଯଦି ମନୁଷ୍ୟ ଶିକ୍ଷା ହରାଇ ବସେ ତା'ହେଲେ ଭାଷା ଓ ଧର୍ମକୁ ହରାଇ କାଳକ୍ରମେ ନିଜକୁ ମଧ୍ୟ ହଜାଇ ଥାଏ । ବାସ୍ତବରେ ମଣିଷ ଯେକୌଣସି ଭାଷାରେ ଶିକ୍ଷାଲାଭ କରିଥାଉନା କାହିଁକି, ଯଦି ସେ ଏହାର ଠିକ୍ ସଦ୍‌ବ୍ୟବହାର ନ କରେ ତା'ହେଲେ, ସେହି ଭାଷାର ବିକାଶ ହୋଇପାରିବ ନାହିଁ ଓ କାଳକ୍ରମେ ଭାଷାର ବିକାଶ ନ ଘଟିଲେ ଧର୍ମର କି ଜାତିର ବିକାଶ ସମ୍ଭବପର ନୁହେଁ ଏବଂ ପରିଶେଷରେ ମନୁଷ୍ୟ ଜୀବନର ନିଜର ମୂଲ୍ୟବାନ ଅସ୍ତିତ୍ୱକୁ ହରାଇ ବସିଥାଏ ।

ପଣ୍ଡିତ ରଘୁନାଥ ମୁର୍ମୁଙ୍କର ଚର୍ଚ୍ଚା ଓଡିଶା ପ୍ରଦେଶରେ କେବଳ ସୀମିତ ନଥିଲା, ତାଙ୍କର ଦେଶ ଭ୍ରମଣ (ଦିଶମ ଦାଣାନ୍) ବିଷୟରେ ଆଲୋଚନା କଲେ ଜଣାଯାଏ, ନିଜ ସାନ୍ତାଳି ଜାତିମାନଙ୍କର ଜୀବନୀରେ ଉନ୍ନତି ଘଟୁ ଏବଂ

ସମାଜରେ ଅନ୍ୟ ଉଚ୍ଚ ଜାତି ସମ୍ପ୍ରଦାୟର ଲୋକମାନଙ୍କ ପରି ଏମାନେ ଜୀବିକାର୍ଜନ କରି ସୁଖରେ କାଳାତିପାତ କରନ୍ତୁ, ସେଥିପାଇଁ ପଣ୍ଡିତ ରଘୁନାଥ ମୁର୍ମୁ ଓଡିଶା ସମେତ ବିହାର ଓ ପଶ୍ଚିମ ବଙ୍ଗମାନଙ୍କରେ ଥିବା ସନ୍ତାଳି ସମ୍ପ୍ରଦାୟର ଲୋକମାନଙ୍କୁ ଜାତି, ଧର୍ମ, ସମାଜ, ସଂସୃତି, ଭାଷା–ସାହିତ୍ୟ ଓ ଅଲ୍‌ଚିକି ଲିପି ଶିକ୍ଷା ବିଷୟରେ ଅବଗତ, ପ୍ରଚାର ଓ ପ୍ରସାର କରିବା ଦିଗରେ ସାନ୍ତାଳିବହୁଳ ଅଂଚଳମାନ ପଦଯାତ୍ରା କରିଥିଲେ । ସନ୧୯୬୩ ମସିହାରେ ପଣ୍ଡିତ ରଘୁନାଥ ମୁର୍ମୁ ସାନ୍ତାଳି ଭାଷା ସାହିତ୍ୟ ଓ ଲିପିର ପ୍ରସାର ଓ ପ୍ରଚାର କରିବା ପାଇଁ ବିଦେଶ ଭ୍ରମଣରେ ବାହାରି ଥିଲେ । ତା:୧–୧୨–୧୯୬୩ ରିଖ ଦିନ ପ୍ରାତଃ ସକାଳୁ ଉଠି ପଣ୍ଡିତ ରଘୁନାଥ ମୁର୍ମୁ, ମାନସିଂ ମୁର୍ମୁ ଏବଂ ସିଧଲାଲ ମୁର୍ମୁ (ବଡପୁଅ) କାପିବୁରୁ ପାହାଡ ପାଖରେ ଥିବା ବଡ ପୋଖରୀରେ ଗାଧୋଇ ସେମାନେ ତିନିଜଣ ଯାକ ‘କାପିବୁରୁ ବାଙ୍ଗାଥାନ’ ପୂଜାସ୍ଥଳୀକୁ ଗଲେ ଏବଂ ତାଙ୍କର ବିଦେଶ ଭ୍ରମଣ ଓ ପ୍ରଚାର କାମ ଶୁଭ ଓ ଫଳପ୍ରଦ ହେବା ପାଇଁ କାପିବୁରୁ ଦେବତାଙ୍କ ପାଖରେ ପୂଜାପାଠ କରି ଦଣ୍ଡାୟମାନ ହୋଇ ପ୍ରାର୍ଥନା କଲେ । ଏହାପରେ ସେମାନେ ଘରକୁ ଫେରି ସଜଭାତ ଖାଇ ବିଦେଶ ଭ୍ରମଣ କାମରେ ଅତିଶୀଘ୍ର ବାହାରି ଗଲେ । ସେମାନେ ପାଦ ଚଲା ବାଟରେ ଅଂଳାଯଡି ରେଳଷ୍ଟେସନରେ ପହଂଚି ଟିକେଟ କାଟି ଟାଟା–ବାଦାମ ପାହାଡ (T-B Down Train) ରେଳଗାଡିରେ ଚଢ଼ି ବିହାର ପ୍ରଦେଶର ଟାଟା ନଗରକୁ ବିଦେଶ ଗସ୍ତ କଲେ । ବିହାରକୁ ଦେଶଭ୍ରମଣ କଲାବେଳେ ତାଙ୍କ ସାଥିରେ ତାଙ୍କରି ଚେଲାମାନେ ଥିଲେ, ସେମାନେ ହେଲେ– ମାନସିଂ ମୁର୍ମୁ, ବିରସିଂ ମୁର୍ମୁ, କୁମାରୀ ଅପର୍ଣ୍ଣା ମୁର୍ମୁ, କୁମାରୀ ପାନ କିସ୍କୁ ଏବଂ କୁମାରୀ ଚୁଡାମଣି ମୁର୍ମୁ । ସାଥୀରେ ଯାଇ ଏମାନେ, ପଣ୍ଡିତ ରଘୁନାଥ ମୁର୍ମୁଙ୍କ ପ୍ରଚାର କାମରେ ସାହାଯ୍ୟ କରିଥିଲେ ଏବଂ ଲୋକଙ୍କୁ ସଚେତନ କରିଥିଲେ । ବିହାରରେ କିଛି ସାନ୍ତାଳି ଗ୍ରାମଗୁଡିକରେ ପ୍ରଚାର କଲାପରେ, ପଣ୍ଡିତ ରଘୁନାଥ ମୁର୍ମୁ ତାଙ୍କ ସାଥିମାନଙ୍କୁ ଉପଦେଶ ଦେଇ କହିଲେ– ‘ଆମ୍ଭମାନଙ୍କର ପ୍ରଚାର କାମ ବହୁତ ଭଲରେ ହେଲା, ଲୋକମାନେ ଆମକୁ ଆଦର କଲେ, ଆମେ ଯାହାସବୁ ପ୍ରଚାର କଲେ ତାହାକୁ ସେମାନେ ଆପଣେଇ ନେଲେ । ମୁଁ ଏବେ ଉମେଶ ବାବୁଙ୍କ ସାଥୀରେ ବେଙ୍ଗଲକୁ ଯିବି, ଆପଣମାନେ ନିଜ ନିଜ ଘରକୁ ଫେରିଯାଆନ୍ତୁ । ଯେଉଁ ଜାଗାମାନ ଆମ୍ଭେମାନେ ବୁଲି ନାହାନ୍ତି ସେହିସବୁ ଜାଗାକୁ ଆପଣମାନେ ଯାଇ ପ୍ରଚାର କରନ୍ତୁ ଏବଂ ଲୋକମାନଙ୍କୁ ସାନ୍ତାଳି ଭାଷା, ସାହିତ୍ୟ, ସଂସ୍କୃତି, ଧର୍ମ, ଅଲ୍‌ଚିକି ଓ ଏକ ନୂତନ ସଂଘର ପ୍ରତିଷ୍ଠା କରିବା ପାଇଁ ଦରକାର ପଡୁଥିବା ଅର୍ଥ ବିଷୟରେ ଆମରି ସାନ୍ତାଳି ଭାଇ–ଭଉଣୀମାନଙ୍କୁ ଗାଁ ଗାଁ ବୁଲି ବୁଝାଇବା କାମ ଚାଲୁରଖନ୍ତୁ । ଓଡିଶାର ସମସ୍ତ ଭାଇ–ଭଉଣୀମାନେ ବିହାରରୁ ପ୍ରଚାର କାମ ସାରିଲା ପରେ ତା.୧୨–୧୨–୧୯୬୩ରିଖ ଦିନ ନିଜ ଭିଟାମାଟି ମୟୂରଭଞ୍ଜର ଗାଁକୁ ଫେରିଯାଇ ଥିଲେ ।

ଏହାପରେ ପଣ୍ଡିତ ରଘୁନାଥ ମୁର୍ମୁଙ୍କ ତାଙ୍କର ନିଜ ଶଶୁର ଗାଁ ଜାମଜଳାର ସମ୍ପର୍କୀୟ ଲୋକ ଶ୍ରୀଯୁକ୍ତ ଉମେଶ ବାସ୍କେଙ୍କ ସହିତ ବିହାରର କିଛି ଅଂଚଳ ପ୍ରଚାର କଲା ପରେ ସେମାନେ ପଶ୍ଚିମବଙ୍ଗକୁ ପ୍ରଚାର କାମରେ ଚାଲିଗଲେ । ଟାଟାନଗରରୁ ସେମାନେ ସୁବର୍ଣ୍ଣରେଖା ନଦୀ କୂଳେ ଥିବା ପାହାଡ ତଟବର୍ତ୍ତୀ ସାନ୍ତାଳି ଲୋକ ବସବାସ କରୁଥିବା ଗ୍ରାମଗୁଡିକରେ ପ୍ରଚାର କଲେ । ସନ୧୯୬୩ ମସିହା ଶେଷ ଭାଗର ପୌଷମାସ ବେଳକୁ ପୁଖୁରଡିହା, ଭାଉଁଟିଆ ଗାଁକୁ ଯାଇ ପହଂଚି ଥିଲେ । ଭାଉଁଟିଆ ଗ୍ରାମର ‘ଆନନ୍ତ ଟୁଡୁ’ ନାମକ ଜଣେ ସମାଜ ସେବୀ ବ୍ୟକ୍ତି ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ସୁବର୍ଣ୍ଣରେଖା ନଦୀ କୂଳେ ଅବସ୍ଥିତ ବେନାଗାଡିଆ ଗ୍ରାମରେ ପହଂଚାଇ ଦେଇଥିଲେ ।

ଏହି ବେଣାଗଡିଆ ଗ୍ରାମରେ ପଣ୍ଡିତ ରଘୁନାଥ ମୁର୍ମୁ ସାନ୍ତାଳି ଧର୍ମ, ଭାଷା, ଜାତି, ସମାଜ, ସଂସ୍କୃତି, ସଭ୍ୟତା ଓ ଅଲ୍‌ଚିକି ଲିପି ଶିକ୍ଷା ପ୍ରଚାର କରିବା ସହିତ ଏକ ଆଦିବାସୀ ସମାଜ–ଶିକ୍ଷା ଓ ସାଂସ୍କୃତିକ ସଂଘ ବିଷୟରେ ଲୋକମାନଙ୍କୁ ବୁଝେଇ ଥିଲେ । ଏହିକ୍ଷଣି ବେଣାଗଡିଆ ଗ୍ରାମର ଜଣେ ସମାଜ ସେବୀ ଭଦ୍ରବ୍ୟକ୍ତି ଶ୍ରୀଯୁକ୍ତ ଗୋପାଳ ଟୁଡୁ ପଣ୍ଡିତ ରଘୁନାଥ ମୁର୍ମୁଙ୍କ ସହିତ ‘ସଙ୍ଗାତ’ ମଧ୍ୟ ବସିଥିଲେ । ଏହି ଭଦ୍ରବ୍ୟକ୍ତି ଜଣକ ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ସୁବର୍ଣ୍ଣରେଖା ନଦୀକୁ ପାର କରିଦେଇ ଥିଲେ । ଏହା ପରେ ନଦୀ ଆରପାରି ‘ବହଳାଗୁଡା ପିଢ଼’ରେ ଥିବା ବିଭିନ୍ନ ସାନ୍ତାଳି ଗାଁଗୁଡିକରେ ରୀତିମତ ପ୍ରଚାର କରିଥିବା ଗ୍ରାମଗୁଡିକ ହେଲା– ମୁଟୁର, ଜଳାବୁନି, ଡାବ୍ରାଡାହି



ଆଦି ଗାଁ । ଏହାପରେ ପଣ୍ଡିତ ରଘୁନାଥ ମୁର୍ମୁ ଏବଂ ଗୋପାଳ ଟୁଡୁ ଚାକୁଲିୟା ପିଢରେ ପଶିଲେ ଓ ସାନ୍ତାଳି ଗାଁଗୁଡିକରେ ପୁଣି ପ୍ରଚାର କାମ ଚାଲୁ ରଖିଲେ । ଶେଷରେ ଏହି ଚାକୁଲିୟା ପିଢ଼ର ଦୁଧିଆସୋଳ ଗ୍ରାମରେ ପ୍ରଚାର କଲାପରେ ତା. ୩୦–୧–୧୯୬୪ରିଖ ଦିନ 'କିଡୁକଚା' ଗ୍ରାମରେ ଯାଇ ପହଂଚିଥିଲେ । ସେଠାରେ ସେମାନେ ଯେଉଁ ଘରେ ରହିଲେ, ସେହି ଘରର କାନ୍ଥରେ ପଣ୍ଡିତ ରଘୁନାଥ ମୁର୍ମୁ ଦୁଇଟି ଗୀତ ଲେଖିଥିଲେ, ଯାହା ଏବେ ସୁଦ୍ଧା ମହଜୁଦ ରହିଛି । ସେହି ଦୁଇଟି ଗୀତ ହେଲା –

ଖାୟାରବାଣି, ଦୁଖନାସୋଳ, କୁଟୁସୋଳ ପ୍ରଭୃତି । କୁଟୁସୋଳ ଗାଁଆରେ ଏକ ଛୋଟ ସଭାଟିଏ କଲାବେଳେ ଲୋକମାନେ ତାଙ୍କୁ ଅନେକ ପ୍ରଶଂସା କରିଥିଲେ ଏବଂ ସାନ୍ତାଳି ସମାଜ ଓ ଜାତି ପାଇଁ ସେ ଦେଇଥିବା ଉପଦେଶଗୁଡିକ ଲୋକମାନେ ଆଗ୍ରହର ସହିତ ଶୁଣିଥିଲେ । ଏହାପରେ ସେ ଏକ ପାଖ ଗାଁ ଢ଼ିଲାହାରାରେ ରାତ୍ରଯାପନ କରିଥିଲେ । ସକାଳେ ଏହିଠାରେ ପ୍ରଚାର କରି ସେ ପୁଣି ତାଙ୍କର ଯାତ୍ରା ଆରମ୍ଭ କଲେ ଓ ସେ ଦିଘି ଗାଁ ରେ ପହଂଚିଲେ, ସେହି ସମୟରେ ଏହି ଦିଘି ଗାଁରେ କାଳିରାମ ସୋରେନ ନାମକ ଜଣେ ଭଲ ଡାକ୍ତର ଥିଲେ ।

ପଣ୍ଡିତ ରଘୁନାଥ ମୁର୍ମୁ ତାଙ୍କର ଏହି ମହତ ବାଣୀ ଗୀତକୁ

(1) [illegible]
[illegible]
[illegible]
[illegible] ।

(2) [illegible]
[illegible]
[illegible] ।
[illegible]
[illegible]
[illegible] ।

– *(Pandit Raghunath Murmu- 30/1/1964)*

ଯୁବପିଢିମାନେ ଯେପରି ଯୁଗ ଯୁଗ ଧରି ମନେ ପକେଇବେ, ସେଥିପାଇଁ ସେ ଏହି 'କିଡୁକଚା' ଗ୍ରାମର କାନ୍ଥରେ ଲେଖି ଇତିହାସ ରଚନା କରିଦେଲେ । ଏଥିରୁ ବେଶ୍ ଜଣାପଡୁଛି ପଣ୍ଡିତ ରଘୁନାଥ ମୁର୍ମୁ ତାଙ୍କ ଜୀବାନକାଳ ଭିତରେ ଯେଉଁ ସ୍ଥାନ, ଗାଁ ଗଣ୍ଡା, ସହର, ସଭା, ସମିତି ଓ ଶିକ୍ଷା ଅନୁଷ୍ଠାନମାନ ଯାତ୍ରା କରିଛନ୍ତି ସେସବୁ ଜାଗାମାନଙ୍କରେ କିଛିନା କିଛି କିମ୍ବଦନ୍ତୀ ସାନ୍ତାଳି ସମ୍ପ୍ରଦାୟର ଲୋକମାନଙ୍କ ପାଇଁ ଛାଡିଦେଇଛନ୍ତି । ଏହି କିଡୁକଚା ଗ୍ରାମରେ ରହି ପଣ୍ଡିତ ରଘୁନାଥ ମୁର୍ମୁ ବୁଲିଥିବା ଆଖପାଖ ସାନ୍ତାଳି ଗାଁଗୁଡିକ ହେଲା– ରାଙ୍ଗାମାଟିଆ,

ସେ ତାଙ୍କର ନିଜ ବୃତ୍ତିକାମରେ ରୋଗୀ ସେବା କରିବା ସହିତ ସାନ୍ତାଳି ସମାଜର ମଙ୍ଗଳ କାମ ମଧ୍ୟ କରୁଥିଲେ । ପଣ୍ଡିତ ରଘୁନାଥ ମୁର୍ମୁଙ୍କର ଦେଶ ଭ୍ରମଣ ପଦଯାତ୍ରା ଓ ସାନ୍ତାଳି ଭାଷା ପ୍ରଚାର କଥା ଶୁଣିଲା କ୍ଷଣି ତାଙ୍କ ସହିତ ସାକ୍ଷାତ କରିବା ପାଇଁ ଭଦ୍ରବ୍ୟକ୍ତି ଦୌଡି ଆସିଥିଲେ ଏବଂ ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ । ଏହା ପରେ ସେ ନିମ୍ଡି ନାମକ ଏକ ଗ୍ରାମକୁ ଯାଇଥିଲେ, ଏହିଠାରେ ମଧ୍ୟ ତାଙ୍କର ଯୋଜନା ମୁତାବକ ପ୍ରଚାର କଲେ ଓ କିଛି ଦିନ ରହିଲା ପରେ, ସେ ବାଳେଡି ଗାଁକୁ ଗଲେ । ସେହି ସମୟରେ ଶ୍ରୀଯୁକ୍ତ ଶଭାନାଥ

ବେସ୍ରା ନାମକ ଜଣେ ଶିକ୍ଷକ ତାଙ୍କ ଗ୍ରାମ–ନିରାମିସ୍ରି, ବାଳେଡି ଗାଁରେ ଶିକ୍ଷକତା କରୁଥିଲେ, ସେ ଭଦ୍ରବ୍ୟକ୍ତି ଏହା ଶୁଣିବା ମାତ୍ରକେ ଅତିଶୀଘ୍ର ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ସାକ୍ଷାତ କରିବା ପାଇଁ ଦୌଡିକି ଗଲେ ଏବଂ ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ପ୍ରଣାମ କରି ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ । ଏହାପରେ ତାଙ୍କଠୁ ସାନ୍ତାଳି ଭାଷା, ଅଲ୍‌ଚିକି ଲିପି ଶିକ୍ଷା, ସାମାଜ ସେବା ଏବଂ ସଂଘ ତିଆରି ବିଷୟରେ ବୁଝିଥିଲେ । ଏହି ବାଳେଡି ଗ୍ରାମରେ ରହି ଆଖପାଖ ସାନ୍ତାଳି ଗ୍ରାମଗୁଡିକ ପ୍ରଚାର କାମରେ ପଣ୍ଡିତ ରଘୁନାଥ ମୁର୍ମୁ ବୁଲି, ଏହିଠାରେ ମଧ୍ୟ କିଛିଦିନ ରହିଯାଇ ଥିଲେ । ଏହାପରେ ସେ ବେଙ୍ଗଲ ସୀମାଂଚଳ ଗାଁ ଜୟନଗରକୁ ଚାଲିଯାଇ ଥିଲେ । ପଶ୍ଚିମବଙ୍ଗ ସୀମାଂଚଳବର୍ତ୍ତୀ ଗ୍ରାମ ଜୟନଗରଠାରେ ପଣ୍ଡିତ ରଘୁନାଥ ମୁର୍ମୁ ପ୍ରଚାର କାର୍ଯ୍ୟ ଶେଷ କଲାପରେ ସେ, ପଶ୍ଚିମ ବଙ୍ଗ ରାଜ୍ୟ ଭିତରକୁ ଏହି ଜୟନଗର ଗାଁ ଦେଇ ପ୍ରବେଶ କରିଥିଲେ । ଏହାପରେ ସିଆଲଦାର କେତେକ ସାନ୍ତାଳି ବହୁଳ ମୁଖ୍ୟ ଗାଁଗୁଡିକ ଯାଇ ପହଂଚି ଥିଲେ ଏବଂ ସାନ୍ତାଳି ଗାଁଗୁଡିକର ଲୋକମାନଙ୍କୁ ସଚେତନ କରାଇ ସାନ୍ତାଳ ଜାତି, ଧର୍ମ, ସମାଜ, ସଂସ୍କୃତି, ସଂଘ, ଭାଷା, ସାହିତ୍ୟ ଏବଂ ଅଲ୍‌ଚିକି ବିଷୟରେ ପ୍ରଚାର କରିଥିଲେ ବୋଲି କିମ୍ବଦନ୍ତୀମାନ ରହିଛି । ଏହି ସିଆଲ୍‌ଦା ଅଂଚଳରେ ପଦଯାତ୍ରାରେ ପ୍ରଚାର କାମ ସମାପ୍ତ କଲାପରେ ପଣ୍ଡିତ ରଘୁନାଥ ମୁର୍ମୁ ନିଜ ମାତୃଭୂମି ଡାଣ୍ଡବୁସ ଗ୍ରାମକୁ ଫେରି ଆସିଥିଲେ ।

ଓଡିଶା, ବିହାର(ଝାଡଖଣ୍ଡ) ଓ ପଶ୍ଚିମ ବଙ୍ଗ ରାଜ୍ୟମାନଙ୍କୁ ପଦଯାତ୍ର କରି ପ୍ରଚାର କାର୍ଯ୍ୟ ସାରିବା ପରେ, ପ୍ରଚାର କାମରେ ନିୟୋଜିତ ହୋଇଥିବା ସମାଜ ସେବକ ଓ ସେବିକାମାନଙ୍କ ସହିତ ଆଲୋଚନା ପାଇଁ ବିଜାତଳାଠାରେ ଏକ ବୈଠକ କରି ତାଙ୍କର ବିଦେଶ ଗସ୍ତ ଓ ପ୍ରଚାର ବିଷୟରେ ବିଶେଷ ଭାବରେ ଆଲୋଚନା କରିଥିଲେ । ବିଭିନ୍ନ ରାଜ୍ୟର ସାନ୍ତାଳି ଗାଁମାନ ବୁଲି ସେ ବହୁତଗୁଡିଏ ଜିନିଷ ଦେଖିଲେ, ଲୋକଙ୍କ ସହିତ ମିଶିଲେ ତାଙ୍କ ସହିତ ଆଳାପ କଲେ, ତାଙ୍କର ଦୁଃଖ ସୁଖ ଭଲ ମନ୍ଦ କଥା ବୁଝିଲେ, ସେମାନେ ଯାହାଦେଲେ ସେ ଖାଇଲେ, ପିଇଲେ ଓ ଶୋଇଲେ । ପଣ୍ଡିତ ରଘୁନାଥ ମୁର୍ମୁ ଭଲଭାବରେ ଜାଣିଥିଲେ ଲୋକଙ୍କ ସହିତ ନ ମିଶିଲେ, ଦେଶ ନ ବୁଲିଲେ ଲୋକଙ୍କ ବିଷୟରେ କିଛି ଜାଣିହେବ ନାହିଁ ଏବଂ ଲୋକମାନେ ମଧ୍ୟ ତାଙ୍କ ସାନ୍ତାଳି ସମ୍ପ୍ରଦାୟର ଭଲମନ୍ଦ, ଆଚାର ବ୍ୟବହାର, ସାହିତ୍ୟ, ସଂସ୍କୃତି, ସେବା, ଜାତି, ଧର୍ମ, ବ୍ୟକ୍ତିବିଶେଷର କର୍ତ୍ତବ୍ୟ, ସଭ୍ୟତାର ଇତିହାସ, ଆଗାମୀ ଦିନର ଭବିଷ୍ୟତ ଇତ୍ୟାଦି ବିଷୟରେ କିଛି ଜାଣିପାରିବେ ନାହିଁ । ପଣ୍ଡିତ ରଘୁନାଥ ମୁର୍ମୁ ତିନୋଟିଯାକ ପ୍ରଦେଶ ଭ୍ରମଣ କରିଲା ପରେ ସେ ଭଲଭାବରେ ସମସ୍ତ ବିଷୟରେ ଅଧ୍ୟୟନ କରି ଦେଖିଲେ । ଏସବୁକୁ ଆଖି ଆଗରେ ରଖି ସେ ଏକ ସାଂସ୍କୃତିକ ସଂଘର ପ୍ରତିଷ୍ଠା କରିବା ଦରକାର ପଡୁଛି ବୋଲି ମନେ କଲେ । ଏହାପରେ, ସେ ଓଡିଶାରେ ଏକ ସାନ୍ତାଳି ସମାଜ ପାଇଁ ସଂଘ ରେଜିଷ୍ଟ୍ରେସନଭୁକ୍ତ କଲେ ଏବଂ ଅନ୍ୟ ପଡୋଶୀ ରାଜ୍ୟଗୁଡିକରେ ଏହାର ଶାଖା କାର୍ଯ୍ୟାଳୟମାନ ପ୍ରତିଷ୍ଠିତ କରିବା ପାଇଁ ସେ ପଦକ୍ଷେପମାନ ନେଲେ । ପଣ୍ଡିତ ରଘୁନାଥ ମୁର୍ମୁଙ୍କ ଦ୍ୱାରା ପ୍ରତିଷ୍ଠିତ ଆଦିବାସୀ ସାଂସ୍କୃତିକ ସଂଘ, ରାଇରଙ୍ଗପୁର ସରକାରଙ୍କ ନିକଟରୁ ତା: ୧–୬–୧୯୬୪ରିଖ ଦିନ ସ୍ୱୀକୃତିଲାଭ ପାଇଥିଲା । Adivasi Socio-Educational & Cultural Association, Rairangpur, Mayurbhanj, Odisha ଭାବରେ ପ୍ରତିଷ୍ଠିତ ହେଲା । ଯାହାର ମୂଳ ପ୍ରତିଷ୍ଠାତା ହେଉଛନ୍ତି ନିଜେ ପଣ୍ଡିତ ରଘୁନାଥ ମୁର୍ମୁ । ଏହାପରେ ବାରିପଦା ସଦର ସବ୍‌ଡିଭିଜନର ରାଙ୍ଗାମାଟିଆଠାରେ ଏକ ଶାଖା କାର୍ଯ୍ୟାଳୟ ଏବଂ ପାଂଚପିଢ ସବ୍‌ଡିଭିଜନର ନାଦୁଆପାଳଠାରେ ଏକ ଶାଖା କାର୍ଯ୍ୟାଳୟ ଖୋଲାହେଲା, ଯାହା A.S.E.C.A, Rairangpur ଆଦିବାସୀ ସମାଜ–ଶିକ୍ଷା ଓ ସାଂସ୍କୃତିକ ସଂଘ ରାଇରଙ୍ଗପୁର ଅଧୀନରେ କାର୍ଯ୍ୟକଲା ।

A.S.E.C.A, Rairangpur ସରକାରୀ ସ୍ୱୀକୃତି ପାଇଲା ମାତ୍ରକେ ୧୯୬୫ ମସିହାରେ ହିଁ ସଂଘ ନାମରେ ଏକ ପ୍ରେସ୍ ସ୍ଥାପନ କରାଗଲା ଏବଂ ସାଗେନ ସାକାମ୍ ନାମକ ମାସିକିଆ ଖବରକାଗଜ ପତ୍ରିକାକୁ ଛାପି ଦେଶବାସୀଙ୍କ ଅଧ୍ୟୟନ ପାଇଁ ପ୍ରସାର କରାଗଲା । ଏହା ପରେ ବିହାରରେ ୧୯୬୬ ମସିହାରେ A.S.E.C.A, Bihar ପ୍ରତିଷ୍ଠା କରାଗଲା ଏବଂ ୧୯୬୭ ମସିହାରେ A.S.E.C.A, West Bengal ପ୍ରତିଷ୍ଠା କରାଗଲା । ଏହା ପରେ ଆସାମରେ A.S.E.C.A, Assam ଏବଂ ୧୯୮୧ ମସିହାରେ A.S.E.C.A, New Delhi ପ୍ରତିଷ୍ଠିତ କରାଯାଇଅଛି । ଓଡିଶା ସମେତ ବିହାର ଓ ପଶ୍ଚିମବଙ୍ଗ ରାଜ୍ୟର




ସାନ୍ତାଳି ବହୁଳ ଅଂଚଳମାନଙ୍କରେ ପଣ୍ଡିତ ରଘୁନାଥ ମୁର୍ମୁ ବିଭିନ୍ନ ସଂଘ ଓ ସମିତିମାନ ପ୍ରତିଷ୍ଠା କଲେ ଏବଂ ଏହାପରେ ବିଭିନ୍ନ ସମୟରେ ଏହାରି ବିଭିନ୍ନ ସଭା, କାର୍ଯ୍ୟକାରୀ କମିଟି ଓ ବାର୍ଷିକ ଉତ୍ସବମାନଙ୍କରେ ଯୋଗଦାନ କରି ସାନ୍ତାଳି ସମାଜର ଭାଷା ସାହିତ୍ୟ ଅଭିଭାଷଣ ଓ ଅଲ୍‌ଚିକି ଲିପି ଶିକ୍ଷାର ଚର୍ଚ୍ଚା କରି ଅବଶେଷରେ ତା:୧–୨–୧୯୮୨ରିଖ ମାଘ ସପ୍ତମୀ ଦିନ ସକାଳ ୮ଟା ବେଳେ ପଣ୍ଡିତ ରଘୁନାଥ ମୁର୍ମୁ ଏହି ଧରାପୃଷ୍ଠରୁ ବିଦାୟ ନେଲେ । ସେ ମୃତ୍ୟୁକୁ ବରଣ କଲେ ସତ, ମାତ୍ର ଆଦିବାସୀ ସାନ୍ତାଳି ସମ୍ପ୍ରଦାୟର ଅଲ୍‌ଚିକି ଲିପିର ଉଦ୍ଭାବକ ଭାବରେ ପଣ୍ଡିତ ରଘୁନାଥ ମୁର୍ମୁ ଏ ପୃଥିବୀର ମାନବ ସଭ୍ୟତା ଇତିହାସ ପୃଷ୍ଠାରେ ସର୍ବଦା  ଜୀବିତ ହୋଇ ଚିରକାଳ ଅମର ହୋଇ ରହିଛନ୍ତି । ଆଦିବାସୀ ସାନ୍ତାଳି ସମ୍ପ୍ରଦାୟ ଏବଂ ଓଡିଶାବାସୀମାନଙ୍କ ପାଇଁ ପଣ୍ଡିତ ରଘୁନାଥ ମୁର୍ମୁଙ୍କର ତ୍ୟାଗପୂର୍ଣ୍ଣ ସଂଘର୍ଷ ଜୀବନ ଅତୁଳନୀୟ । ପ୍ରକୃତରେ ପଣ୍ଡିତ ରଘୁନାଥ ମୁର୍ମୁ ଜଣେ ମହାତ୍ମା ଓ ଯୁଗପୁରୁଷ । ଦେଶବାସୀ ତାଙ୍କରି ଏହି ମହାନ କାମ ପାଇଁ ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ଅଲ୍‌ଚିକି ଉଦ୍ଭାବକ, The Founder of Olchiki Alphabet. The Architecture of Olchiki Script Pandit Raghunath Murmu ଆଦି ଆଖ୍ୟା ଦେଇଛନ୍ତି । ସାନ୍ତାଳି ସମ୍ପ୍ରଦାୟର ଲୋକମାନେ ତାଙ୍କ ସାନ୍ତାଳି ଭାଷାରେ ଅଲ୍‌ଚିକି ଉନୁଦୁଗିୟା, ଅଲ୍‌ଚିକି ବାଡହି, ପାରସି ସିଞ୍ଜଚାନ୍ଦ, ଅଲ୍ ଗୁରୁ, ଗୁରୁ ବାବା, ଗୁରୁ ଗମ୍‌କେ ପଣ୍ଡିତ ରଘୁନାଥ ମୁର୍ମୁ ଆଦି ସୁ–ସମ୍ମାନିତ ସହ ଆଖ୍ୟା ଦେଇ ହୃଦୟର ଅନ୍ତର ଆତ୍ମାରେ ପୂଜା କରୁଛନ୍ତି ।

ବରିଷ୍ଠ ଅର୍ଥନୈତିକ ଅନୁସନ୍ଧାନକାରୀ
ଯୋଜନା ଓ ସଂଯୋଜନ ବିଭାଗ
ରାଜ୍ୟ ସଚିବାଳୟ, ଭୁବନେଶ୍ୱର

# ଶରତ ଆସିଛି

**ବିଦ୍ୟାଧର ବାରିକ**

ଶରତ ଋତୁରେ ନିର୍ମଳ ଆକାଶ
ପାରବଣ ମାଡି ଆସିଲା
ମା' ଆଗମନେ ଗ୍ରାମ ସାହି ପଲ୍ଲୀ
ଭେରି ତୂରୀ ଶଙ୍ଖ ବାଜିଲା ।

ବାଡି ବଗିଚାରେ ପନିପରିବା ଯେ
ଫୁଲ ଫଳେ ହସି ଉଠିଲା
ନଈବନ୍ଧ ତଳେ କାଶତଣ୍ଡୀ ଫୁଲ
ଧଳାହଂସ ପରି ଦିଶିଲା ।

ଗୋଳିଆ ପାଣି ଯେ ପରିଷ୍କାର ହୋଇ
କାଚ କେନ୍ଦୁ ପରି ଦିଶିଲା
ଭଳି ଭଳି ଢଙ୍ଗେ ତୋରଣମାନ ଯେ
ଭକତମାନଙ୍କୁ ଟାଣିଲା ।



ଶରତ ଋତୁରେ ଜହ୍ନମାମୁଁଙ୍କର
ନିର୍ମଳ କିରଣ ପଡିଲା
ଚିଲିକା ହ୍ରଦରେ ଦେଶ ବିଦେଶର
ପକ୍ଷୀ କୋଳାହଳ ଶୁଭିଲା ।

ସପ୍ତମୀ ଅଷ୍ଟମୀ ନବମୀ ଦଶମୀ
ଦେବୀଙ୍କର ପୂଜା ହୋଇଲା
ଘରେ ଘରେ ବନ୍ଧୁମାନଙ୍କ ମେଳରେ
ଆନନ୍ଦରେ ଦିନ ବିତିଲା ।

କାଇମାଟିଆ ପାଟଣା
ଯାଆଁଳା, ଖୋର୍ଦ୍ଧା

# ମୁକୁଟ ବିହୀନ ସମ୍ରାଟ ସୁରେନ୍ଦ୍ର ସାଏ

**ସୌମିତ୍ର କୁମାର ଚାଟାର୍ଜୀ**

ଦୁଃସାହସିକତା ଯୌବନର ସ୍ୱାଭାବିକ ଧର୍ମ । ଯୁବକର ପ୍ରାଣରେ ଭରିରହିଛି ଦୁର୍ବାର ଉନ୍ମାଦନା । ବିପଦ ମଧ୍ୟରେ ଗତି କରିବା ହିଁ ତା'ର ପ୍ରକୃତି । ଏହାକୁ ମର୍ମେ ମର୍ମେ ଉପଲବ୍ଧି କରିଥିଲେ ଆମ ଓଡ଼ିଶାର ଜଣେ ଯୁବକ, ମାତ୍ର ଅଠର ବର୍ଷ ବୟସରେ । ସେଇଥିପାଇଁ ସେ ଆରମ୍ଭ କରିଥିଲେ ବିପ୍ଳବ ଇଂରେଜ ଶାସନ ବିରୁଦ୍ଧରେ । ପରେ ଏହା ଏକ ଜାତୀୟ ସଂଗ୍ରାମର ରୂପ ନେଇଥିଲା । ଏହି ଯୁବକ ଜଣକ ଆଉ କେହି ନୁହଁନ୍ତି, ଆମର ଚିର ସ୍ମରଣୀୟ ବୀର ସୁରେନ୍ଦ୍ର ସାଏ ।

୧୮୦୯ ମସିହା ଜାନୁଆରୀ ୨୩ ତାରିଖ । ଆଜମିରର ପବିତ୍ର ବୀର ଚୌହାନ୍ ରାଜବଂଶରେ ତାଙ୍କର ଜନ୍ମ । ବାଲ୍ୟାବସ୍ଥାରେ ସେ ଅତ୍ୟନ୍ତ ବିଚକ୍ଷଣ ଓ ସାହସୀ ଥିଲେ । ଖୁବ୍ ଅଳ୍ପ ବୟସରେ ମାମୁଁଙ୍କଠାରୁ ସେ ଅଶ୍ୱାରୋହଣ ତଥା ମଲ୍ଲଯୁଦ୍ଧ ଶିକ୍ଷା କରିପାରିଥିଲେ । ସେ ନିଜେ ପାହାଡି ଦଳ ଗଠନ କରି ସେମାନଙ୍କୁ ଗରିଲା ଯୁଦ୍ଧ ଶିଖାଇ ଥିଲେ । ୧୮୨୭ ମସିହାରୁ ୧୮୬୪ ମସିହା ପର୍ଯ୍ୟନ୍ତ ଦୀର୍ଘ ସଇଁତିରିଶ ବର୍ଷ କାଳ ଇଂରେଜ ସରକାରଙ୍କ ବିରୁଦ୍ଧରେ ବିପ୍ଳବ ଚାଲୁ ରଖିବାକୁ ସେ ସମର୍ଥ ହୋଇପାରିଥିଲେ ।

୧୮୫୭ରେ ଭାରତରେ ପ୍ରଥମ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେବାର ତିରିଶ ବର୍ଷ ପୂର୍ବରୁ ବୀର ସୁରେନ୍ଦ୍ରଙ୍କ ନେତୃତ୍ୱରେ ସମ୍ବଲପୁର ଜିଲ୍ଲାରେ ଏହି ସଂଗ୍ରାମର ପ୍ରଥମ ଝଲକ ଦେଖାଦେଇଥିଲା । ୧୮୫୭ରେ ବିପ୍ଳବର ଏହି ଅଗ୍ନିଶିଖା କ୍ରମେ କୁହୁଳି କୁହୁଳି ପ୍ରଥମ ସ୍ୱାଧୀନତା ସଂଗ୍ରାମ ରୂପେ ସମଗ୍ର ଉତ୍ତର ଭାରତରେ ଇଂରେଜ ଶାସନର ମୂଳଦୁଆକୁ ଦୋହଲାଇ ଦେଇଥିଲା ।

ସମଗ୍ର ଭାରତବର୍ଷରେ 'ସବ୍ ଲାଲ ହୋଗୟା' ଚହଳ ପଡିଥିବା ସମୟରେ ଓଡ଼ିଶାର ପାର୍ବତ୍ୟ ଇଲାକାରେ ସଂଗ୍ରାମର ନେତୃତ୍ୱ ନେଇଥିଲେ ବୀର ସୁରେନ୍ଦ୍ର ସାଏ । ସମ୍ବଲପୁରକୁ ପ୍ରତ୍ୟକ୍ଷ ଶାସନାଧୀନରେ ରଖିବା ନିମନ୍ତେ ରାଜା ମହାରାଜା ସାଏଙ୍କ ମୃତ୍ୟୁ ପରେ ଇଂରେଜ ସେନାପତି ଉଇଲ୍‌କିନ୍‌ସନ୍ ଚକ୍ରାନ୍ତ କରି ରାଣୀ ମୋହନ କୁମାରୀଙ୍କୁ ସିଂହାସନରୂଢା କରାଇଥିଲେ । ମାତ୍ର ସେ ଅପୁତ୍ରିକ ଥିବାରୁ ପରେ ବାମଣ୍ଡାର ନାରାୟଣ ସିଂହଙ୍କୁ ମଧ୍ୟ ସେ ଗାଦିରେ ବସାଇବାକୁ ପଶ୍ଚାତ୍‌ପଦ ହୋଇ ନଥିଲେ । ମାତ୍ର ଜଣେ ନାରୀ ସିଂହାସନରେ ବସିବା ଚୌହାନ ରାଜବଂଶର ପରମ୍ପରା ବିରୋଧୀ ଥିବାରୁ ସମଗ୍ର ଜନତା ବିଦ୍ରୋହର ସ୍ୱର ଉତ୍ତୋଳନ କରିଥିଲେ । ରାଣୀ ନିର୍ବାସିତା ହେବା ସଙ୍ଗେ ସଙ୍ଗେ ପରେ ଦୁର୍ବଳ ନାରାୟଣ ସିଂହ ସୁଚାରୁ ରୂପେ ଶାସନ ଦାୟିତ୍ୱ ତୁଲାଇ ନପାରିବାରୁ ପୂର୍ବ ପରିକଳ୍ପିତ ଯୋଜନା ଅନୁଯାୟୀ ୧୮୪୯ରେ ସମ୍ବଲପୁରକୁ ଇଂରେଜମାନେ ଖାସ ଦଖଲକୁ ନେଇଯାଇଥିଲେ । କିନ୍ତୁ ସୁରେନ୍ଦ୍ର ସାଏ ଇଂରେଜମାନଙ୍କର କୁଟିଳ ଚକ୍ରାନ୍ତ ସମ୍ବନ୍ଧରେ ଅବଗତ ହୋଇ ସେମାନଙ୍କୁ ନିଜ ଜନ୍ମଭୂମିରୁ ବିତାଡିତ କରିବା ନିମନ୍ତେ ବିପ୍ଳବର ଆହ୍ୱାନ ଦେଇଥିଲେ । ଗାଁ ଗାଁରେ ଜନସାଧାରଣ ଏହି ବିପ୍ଳବର ଅଗ୍ନିରେ ଡେଇଁ ପଡିବା ଲାଗି ଆଗେଇ ଆସିଲେ । ଏହା ଦେଖି ଇଂରେଜମାନେ ଅମାନୁଷିକ ଅତ୍ୟାଚାର ଓ ଲୁଟତରାଜ ଆଦି କରି ନିରୀହ ଜନସାଧାରଣଙ୍କୁ ଦମନ କରିବାକୁ ଶତଚେଷ୍ଟା କରି ସୁଦ୍ଧା ବିଫଳ ହେଲେ । ସେତେବେଳକୁ ଦେଶୀୟ ରାଜାମାନେ ବ୍ରିଟିଶ ସରକାରଙ୍କର ଏହି ରାଜ୍ୟ ଲୋଲୁପ ନୀତି ଓ ହୀନ ଚକ୍ରାନ୍ତକୁ ବେଶ୍ ଭଲଭାବରେ ହୃଦୟଙ୍ଗମ କରି

ସାରିଥିଲେ । ପାଟଣାଗଡ ଏବଂ ଖଡିଆଳର ରାଜା ଏଥିପାଇଁ ଇଂରେଜମାନଙ୍କ ବିରୁଦ୍ଧରେ ଷଡଯନ୍ତ୍ର କରୁଥିଲେ । ଏହି ସୁଯୋଗରେ ସୁରେନ୍ଦ୍ରଙ୍କର ବିପ୍ଳବର ଆହ୍ୱାନ ଅପୂର୍ବ ଜନସମର୍ଥନ ଲାଭ କଲା । ସୁରେନ୍ଦ୍ରଙ୍କର ବିଚକ୍ଷଣ ଗରିଲା ବାହିନୀ ଇଂରେଜମାନଙ୍କୁ ଅତର୍କିତଭାବେ ବାରମ୍ବାର ଆକ୍ରମଣ କରିବାରୁ ସେମାନେ ଏହି ବାହିନୀର ସମ୍ମୁଖୀନ ହେବା ନିମନ୍ତେ ଅକ୍ଷମ ହୋଇପଡିଲେ ।

ସିପାହୀ ବିଦ୍ରୋହର ନିଆଁ ପ୍ରଥମେ ଦେଖାଦିଏ ମିରଟରେ ୧୮୫୭ ମସିହା ମେ ମାସରେ । କ୍ରମେ ତାହା ଦିଲ୍ଲୀ, ଲକ୍ଷ୍ନୌ, ଆଲିଗଡ, କାନପୁର, ହଜାରିବାଗ ଇତ୍ୟାଦି ଅନ୍ୟାନ୍ୟ ବହୁ ସ୍ଥାନକୁ ପ୍ରସାରିତ ହୋଇଥିଲା । ହଜାରିବାଗ ସେସମୟରେ ବିପ୍ଳବର ଅନ୍ୟତମ ପ୍ରଧାନ କେନ୍ଦ୍ର ରୂପେ ପରିଗଣିତ ହେଉଥିଲା । ବିଦ୍ରୋହୀମାନେ ହଜାରିବାଗ ଜେଲ ଫାଟକ ଭାଙ୍ଗି ବିଦ୍ରୋହୀମାନଙ୍କୁ ଜେଲରୁ ମୁକ୍ତ କରିଦେବା ପରେ ସୁରେନ୍ଦ୍ର ସାଏ ଓ ଭ୍ରାତା ଉଦନ୍ତ ସାଏଙ୍କ ନେତୃତ୍ୱରେ ସମ୍ବଲପୁର ଅଞ୍ଚଳରେ ଆରମ୍ଭ ହୋଇଗଲା ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ । ଜେଲରୁ ମୁକ୍ତ ହୋଇ ସୁରେନ୍ଦ୍ର ସାଏ ବ୍ରିଟିଶ ବିରୁଦ୍ଧରେ ଦୀର୍ଘ ଛଅବର୍ଷ କାଳ ପର୍ଯ୍ୟନ୍ତ ବିଦ୍ରୋହକୁ ବଞ୍ଚାଇ ରଖିଲେ । ଆଧୁନିକ ଅସ୍ତ୍ରଶସ୍ତ୍ର ସଜ୍ଜିତ ବ୍ରିଟିଶ ସୈନ୍ୟଙ୍କ ସହ ଲୁଚିଛପି ସମ୍ବଲପୁରର ଖଡପାଟ ପର୍ବତ, ଡେବିଗ୍ରେଡ, ସିଙ୍ଗରୋଘାଟୀ ଇତ୍ୟାଦି ଅଞ୍ଚଳରେ ତୁମୁଳ ସଂଗ୍ରାମ କରିବାକୁ ସକ୍ଷମ ହୋଇଥିଲେ ସୁରେନ୍ଦ୍ର ସାଏ ।

୧୮୫୮ ମସିହା । ପ୍ରଥମ ସ୍ୱାଧୀନତା ସଂଗ୍ରାମ ଶେଷ ହେବା ପରେ ମହାରାଣୀ ଭିକ୍‌ଟୋରିଆ ବିଦ୍ରୋହୀମାନଙ୍କୁ କ୍ଷମା ଦେବା ନିମନ୍ତେ ଘୋଷଣାପତ୍ର ପ୍ରକାଶ କରନ୍ତେ ଚତୁର୍ଦ୍ଦିଗ କ୍ରମଶଃ ଶାନ୍ତ ପଡିଆସିଥିଲା । ହେଲେ ସୁରେନ୍ଦ୍ର ସାଏଙ୍କ ଲାଗି ସଂଗ୍ରାମ ଶେଷ ହୋଇନଥିଲା । ଏକ ସମୟରେ ଏଭଳି ପରିସ୍ଥିତି ସୃଷ୍ଟି ହେଲା ଯେ ଇଂରେଜ ସୈନ୍ୟବାହିନୀ ତାଙ୍କୁ ଦମନ କରିବା ବା ଜୀବନ୍ତ ବା ମୃତ ଭାବରେ ଗିରଫ କରିବା ଲାଗି ନାନା କୌଶଳମାନ ଅବଲମ୍ବନ କରି ମଧ୍ୟ ଅକୃତକାର୍ଯ୍ୟ ହୋଇଥିଲେ । ଦୟାନିଧି ମେହେର ନାମକ ଜଣେ ବିଶ୍ୱାସଘାତକ ବନ୍ଧୁ ତାଙ୍କର ଆତ୍ମୀୟ ନାରାୟଣ ସିଂହ ସ୍ୱାର୍ଥର ବଶବର୍ତ୍ତୀ ହୋଇ ଇଂରେଜମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ପଶ୍ଚାତପଦ ହୋଇନଥିଲେ । ଇତ୍ୟବସରରେ ଇଂରେଜ ସରକାର ତାଙ୍କର ଦମନ ନୀତି ପ୍ରତ୍ୟାହାର କରିବାରୁ ସୁରେନ୍ଦ୍ର ସାଏ ନାଗପୁରର ଚିଫ୍ କମିଶନର ଇମ୍ପେଲଙ୍କ ସହିତ ଆପୋଷ ଆଲୋଚନା ପରେ ୧୮୬୪ ମସିହା ଜାନୁଆରୀ ୨୩ ତାରିଖ ରାତ୍ରି ଏଗାରଟା ସମୟରେ ଆତ୍ମସମର୍ପଣ କଲେ । କିନ୍ତୁ ବିଶ୍ୱାସଘାତକ ଇଂରେଜମାନେ ପୁନର୍ବାର ତାଙ୍କୁ ବନ୍ଦୀ କରିଥିଲେ । ଜିଲ୍ଲାପାଳ ତାଙ୍କୁ ଆଜୀବନ କାରାଦଣ୍ଡ ଆଦେଶ ଦେଇଥିଲେ । ଜୁଡିସିଆଲ କମିଶନରଙ୍କ କୋର୍ଟରେ ଅପିଲ କରିବାରୁ ନାଗପୁରଠାରେ ସେ ଖଲାସ ହେଲେ ସିନା କିନ୍ତୁ ପୁନର୍ବାର ତାଙ୍କୁ ୧୮୧୮ର ତୃତୀୟ ରେଗୁଲେସନ ଅନୁସାରେ ବନ୍ଦୀ କରାଯାଇ ରାୟପୁର ଜିଲ୍ଲାର ଆସିରଗଡ ଦୁର୍ଗରେ ରଖାଯାଇଥିଲା । ଦୀର୍ଘ ସଇଁତିରିଶ ବର୍ଷକାଳ ହଜାରିବାଗ ଏବଂ ଆସିରଗଡ ଜେଲରେ ବନ୍ଦୀ ଜୀବନ କଟାଇ ୧୮୮୪ ମସିହା ଫେବୃଆରୀ ଅଠେଇଶ ତାରିଖ ଦିନ ପଞ୍ଚସ୍ତରୀ ବର୍ଷ ବୟସରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ବିପ୍ଳବୀ ବୀର ସୁରେନ୍ଦ୍ର ସାଏଙ୍କର ଏହି ଦୀର୍ଘ ସଂଗ୍ରାମ ଯୋଗୁଁ ତତ୍କାଳୀନ ବ୍ରିଟିଶ ସରକାର ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ ଯେ ଭାରତର ସମ୍ବଲପୁର ହେଉଛି ଶେଷ ଜିଲ୍ଲା, ଯେଉଁଠାରେ ୧୮୫୭ ବିଦ୍ରୋହର ଶେଷ ବହ୍ନିଶିଖା ନିର୍ବାପିତ ହୋଇଥିଲା । ବ୍ରିଟିଶ ଶାସନ ବିରୁଦ୍ଧରେ ତାଙ୍କର ସଂଗ୍ରାମ ସମଗ୍ର ଭାରତବର୍ଷରେ ସର୍ବାପେକ୍ଷା ଅଧିକ ଦିନ ବ୍ୟାପୀ ଚାଲୁ ରହିଥିଲା । ତାଙ୍କର ବୈପ୍ଳବିକ ଜୀବନର ଦୁଃସାହସିକ କାହାଣୀ ଏବଂ ଅପୂର୍ବ ସଂଗଠନ ଶକ୍ତିର ପରାକାଷ୍ଠା ପ୍ରତ୍ୟେକ ଜାତୀୟତାପ୍ରେମୀ ପ୍ରାଣରେ ଜାଗରଣ ସୃଷ୍ଟି କରେ । କେବଳ ଓଡ଼ିଶାରେ ନୁହେଁ, ସମଗ୍ର ଭାରତବର୍ଷରେ ବୀର ସୁରେନ୍ଦ୍ର ସାଏ ସ୍ୱାଧୀନତା ସଂଗ୍ରାମର ସେନାପତି ରୂପେ ସ୍ମରଣୀୟ । ସେ ରାଜସିଂହାସନରେ ବସି ରାଜମୁକୁଟ ପିନ୍ଧି ନାହାନ୍ତି ସତ, ତଥାପି ସେ ଅଗଣିତ ଦେଶବାସୀଙ୍କ ହୃଦୟ ସିଂହାସନରେ ଜଣେ ମୁକୁଟବିହୀନ ସମ୍ରାଟ ରୂପେ ସବୁଦିନେ ପୂଜା ପାଉଥିବେ ।

ଚଣ୍ଡିକୁଟୀର, ଶେଖବଜାର (ଗଉଡସାହି)
କଟକ- ୭୫୩୦୦୮

# ଏକତାର ରଜ୍ଜୁ

**ତାପସ କୁମାର ସାହା**

ମଣିଷ ଏକ ସାମାଜିକ ପ୍ରାଣୀ । ଏହି ସମାଜରେ ତା'ର ଜନ୍ମ ହୁଏ । ପ୍ରକୃତିର ପାଣି ପବନରେ ସେ ବଢ଼େ, ସମାଜରେ ତା'ର କର୍ତ୍ତବ୍ୟ ସମ୍ପାଦନ କରି ପୁଣି ସମାଜରୁ ଦିନେ ବିଦାୟ ନିଏ । ତେଣୁ ସମାଜରେ ଚଳିବାକୁ ହେଲେ ସମାଜରେ ବାସ କରୁଥିବା ସଦସ୍ୟମାନଙ୍କ ସହିତ ଏକତା ଓ ସମନ୍ୱୟ ଜୀବନଯାପନ କରିବାକୁ ପଡ଼େ । ଏହାକୁ ଆମେ ସମାଜ କହିଥାଉ । ଏକତ୍ର ବାସ କରିବା ଫଳରେ ଏକ ସୁସ୍ଥ ସମାଜ ଗଠନ ହୋଇଥାଏ । ଯେତେଦିନ ସମାଜରେ ବାସ କରୁଥିବା ନରନାରୀ ଏକତା ରଜ୍ଜୁରେ ବଂଧା ସେତେଦିନ ସମାଜର ଅଭିବୃଦ୍ଧି ଓ ବିକାଶ ଘଟିଥାଏ । ଯେଉଁଦିନ ମଣିଷ ସମାଜଠାରୁ ଅଲଗା ହୋଇଯିବାକୁ ଚିନ୍ତା କରେ ସେହିଦିନ ହିଁ ସେ ଧ୍ୱଂସ ପଥରେ ପାଦ ବଢ଼ାଇଛି ବୋଲି ବୁଝିବାକୁ ହେବ । ଭାରତୀୟ ସଂସ୍କୃତି ବ୍ୟକ୍ତିଗତ ପରିଚୟ ଅପେକ୍ଷା ସାମାଜିକ ଏକାତ୍ମ ଉପରେ ସର୍ବଦା ଗୁରୁତ୍ୱ ଦେଇ ଆସିଛି । ମଣିଷ ଚାହିଁଲେ ବେଶୀଦିନ ଏକୁଟିଆ ରହିପାରିବ ନାହିଁ । ମାଛ ଯେମିତି ଜଳ ବିନା ବଞ୍ଚି ପାରିବ ନାହିଁ, ଠିକ୍ ସେହିପରି ମଣିଷ ଏକ ସାମାଜିକ ପ୍ରାଣୀ ହୋଇଥିବାରୁ ସମାଜ ବ୍ୟତିରେକେ ତା'ର ସ୍ଥିତି ଦୋଦୁଲ୍ୟମାନ ଓ ଅସମ୍ଭବ । ଅପର ପକ୍ଷରେ ସମାଜରେ ରହି ସମାଜର ପ୍ରଗତିରେ ପ୍ରୟାସ କରିବା ସହିତ ଭାଗିଦାର ହୋଇପାରିଲେ ସେ ପ୍ରକୃତ ସୁଖ ଓ ଶାନ୍ତି ଲାଭ କରିପାରିବ । ତେଣୁ ସୃଷ୍ଟିର ପୁରାକାଳରୁ, ଇତିହାସ ରଚିତ ହେବା ଦିନଠାରୁ ମଣିଷ ଏକତା ସୂତ୍ରରେ ବାନ୍ଧି ହୋଇ ସମାଜରେ ବାସ କରିବା ପାଇଁ କୁହାଯାଇଛି । ସନାତନ ଧର୍ମରେ 'ବସୁଧୈବ କୁଟୁମ୍ବକମ୍' ଉକ୍ତିଟି ସମସ୍ତ ମଣିଷ ଜଗତକୁ ଏକ ବିରାଟ ସଂସାର ରୂପକ ରଜ୍ଜୁରେ ବାନ୍ଧି ରଖିବା ପାଇଁ ଉପଦେଶ ଦେଇଛି । ଏ ସାରା ବିଶ୍ୱ ବ୍ରହ୍ମାଣ୍ଡ ମୋର ପରିବାର । ଏହି ମନୋଭାବ ମନୁଷ୍ୟ ମନରେ ଜାଗ୍ରତ କରାଇ ପାରିଲେ ମଣିଷ ଜୀବନ ସୁଖ ଶାନ୍ତିରେ ଭରି ଉଠେ । ଏକତା ମଣିଷକୁ ସନ୍ତୋଷ ଆଡ଼କୁ ନେଇଯାଏ ଏବଂ ମାନବ ଜୀବନକୁ ପବିତ୍ର ଓ ଦିବ୍ୟକରି ଗଢ଼ି ତୋଳେ । ମାତ୍ର ଏକତାର ଅଭାବ ଓ ଅସନ୍ତୋଷ ଅନେକ ସମସ୍ୟା ଆଡ଼କୁ ଠେଲି ଦିଏ । ଏକତାର ହ୍ରାସ ଓ ଏକାତ୍ମତାର ଅଭାବରେ ଯେ କୁପରିଣତି ହୋଇପାରେ ଏବଂ ଏହା କିପରି ମଣିଷ ସମାଜକୁ ଧ୍ୱଂସମୁଖକୁ ପ୍ରେରିତ କରେ, ତାହାର ବହୁ ଉଦାହରଣ ମାନବ ଇତିହାସରେ ଲେଖାହୋଇ ରହିଛି । ଅତୀତରେ ଏକତାର ଅଭାବରୁ ସମଗ୍ର ଭାରତବର୍ଷ ଏବଂ ଭାରତବାସୀଙ୍କୁ ଅନେକ ଥର ପରାଧୀନତାର ଶିକାର ହେବାକୁ ପଡ଼ିଥିଲା । ଭାରତରେ ବହୁ ଭାଷାଭାଷୀ, ଜାତି, ଧର୍ମ, ବର୍ଣ୍ଣ ସଂପ୍ରଦାୟର ଲୋକମାନେ ବାସ କରନ୍ତି । ପ୍ରାଗ୍ ଐତିହାସିକ ଯୁଗରୁ ପୃଥିବୀର ବିଭିନ୍ନ କୋଣରୁ ବିଭିନ୍ନ ଜାତିର, ଧର୍ମର ଓ ବିଭିନ୍ନ ଭାଷାର ଲୋକମାନେ ଭାରତବର୍ଷକୁ ଆସିଛନ୍ତି । ଭାରତବର୍ଷ ସେମାନଙ୍କୁ ଅତି ଆଦରରେ ଆପଣେଇ ନେଇଛି । ଭାରତର ପ୍ରତ୍ୟେକ ରାଜ୍ୟର ଲୋକମାନଙ୍କ ଚାଲିଚଳଣି, ଆଚାର-ବ୍ୟବହାର, ଖାଦ୍ୟାଭ୍ୟାସ, କର୍ମାଭ୍ୟାସ ଓ ଈଶ୍ୱର ବିଶ୍ୱାସ ପୃଥକ୍ ପୃଥକ୍ ଏବଂ ଏକ ଅନ୍ୟଠାରୁ ଭିନ୍ନ ହୋଇଥିଲେ ହେଁ ଆମେ ସମସ୍ତେ ଏକ । ମାତ୍ର ଆମେ ସମସ୍ତେ ଭାରତୀୟ । ଏହି ଭାରତୀୟ ଭାବନାର ରଜ୍ଜୁରେ ଆମେ ବନ୍ଧା । ସ୍ୱାଧୀନତା ଲାଭ ପରଠାରୁ ଏବଂ ନୂତନ ସମ୍ବିଧାନ ପ୍ରଣୟନଠାରୁ ସମସ୍ତ ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳ ଏକ ସଂଘୀୟ ବ୍ୟବସ୍ଥା ଅନୁଯାୟୀ ବନ୍ଧା ଏବଂ ଆମର କେବଳ ଗୋଟିଏ ପରିଚୟ, ଆମେ ସମସ୍ତେ ଭାରତୀୟ । ଅତୀତରେ ଆକୁମାରୀ ହିମାଳୟ ପର୍ଯ୍ୟନ୍ତ ବ୍ୟାପ୍ତ ଭାରତରେ ଅସଂଖ୍ୟ ଛୋଟବଡ଼ ରାଜ୍ୟର ସ୍ୱାଧୀନ ଅସ୍ତିତ୍ୱ ସତ୍ତ୍ୱେ ଏହି ଭୂଖଣ୍ଡ ଭାରତ ନାମରେ ସାରା ବିଶ୍ୱରେ ପରିଚିତ ଥିଲା ।




ଇତିହାସ ରଚନା ପରଠାରୁ ବିଭିନ୍ନ ନୃପତିମାନେ ଭାରତ ଭୂଖଣ୍ଡକୁ ଏକ ଶାସନାଧୀନ କରିବାର ପ୍ରୟାସ କରିଛନ୍ତି । ଅଷ୍ଟମ ଶତାବ୍ଦୀରେ ଜଗତଗୁରୁ ଶଙ୍କରାଚାର୍ଯ୍ୟ ପାଦରେ ଚାଲି ଚାଲି ସାରା ଭାରତ ଭୂଖଣ୍ଡ ପରିଭ୍ରମଣ କରି ହିନ୍ଦୁ ଧର୍ମର ଅଭ୍ୟୁତ୍ଥାନ କରିଥିଲେ । ସେସମୟରେ ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ରାଜାମାନଙ୍କର ସାର୍ବଭୌମତ୍ୱ ଥିବା ସତ୍ତ୍ୱେ ସେ ଭାରତର ଚାରି ଦିଗରେ ଚାରିଟି ପୀଠ ସ୍ଥାପନ କରି ନିଜର ପ୍ରିୟ ଶିଷ୍ୟମାନଙ୍କୁ ଅବସ୍ଥାପିତ କରିବାକୁ ସକ୍ଷମ ହୋଇଥିଲେ । ଯାହା ଆଜି ପବିତ୍ର ଶଙ୍କରାଚାର୍ଯ୍ୟ ପୀଠ ଭାବରେ ପରିଚିତ । ବିଶାଳ ଭାରତ ଭୂଖଣ୍ଡକୁ ଏକତା ରଜ୍ଜୁରେ ବାନ୍ଧିବାର ଏହା ବୋଧହୁଏ ପ୍ରଥମ ଏବଂ ସଫଳତମ ପ୍ରୟାସ ବୋଲି କୁହାଯାଇପାରେ । ଭାରତର ଧର୍ମଧାରଣା ଓ ସାମାଜିକ ଚଳଣି ଓ ଈଶ୍ୱର ବିଶ୍ୱାସ ମଣିଷକୁ ଏକତାର ରଜ୍ଜୁରେ ବାନ୍ଧି ହେବା ପାଇଁ ଯୁଗେ ଯୁଗେ ଉପଦେଶ ଦେଇ ଆସିଛି । ମାତ୍ର ପରିତାପର ବିଷୟ ଏହି ଯେ ଭାରତବର୍ଷ ଯେତେବେଳେ ଇଂରେଜ ଶାସନାଧୀନ ହେଲା ସେତେବେଳେ ସେମାନେ Divide & Rule ନୀତି ଆପଣାଇ ଭାରତର ଲୋକଙ୍କ ମନରେ ବିଭେଦତାର ବିଷ ମଞ୍ଜି ବୁଣି ଦେଲେ । ବିଭାଜନ କର ଏବଂ ଶାସନ କର ନୀତି ଆପଣାଇ ସେମାନେ ଦୀର୍ଘ ୨୦୦ ବର୍ଷ ଧରି ଭାରତକୁ ପରାଧୀନତାର ଶୃଂଖଳରେ ବାନ୍ଧି ଦେବାକୁ ସକ୍ଷମ ହୋଇଥିଲେ । ତେବେ କେବଳ ଲୌକିକ ବିଷୟରେ ନୁହେଁ ନୀତିଶାସ୍ତ୍ର, ଧର୍ମ ଓ ଆଧ୍ୟାତ୍ମିକତା କ୍ଷେତ୍ରରେ ମଧ୍ୟ ଅନେକ ବିଭାଜନ ରହିଛି, ଯାହାର କୁପରିଣାମ ମାନବ ସମାଜକୁ ଭୋଗିବାକୁ ପଡୁଛି । ଏହି ବିଭାଜନ ନୀତିଦ୍ୱାରା ମଣିଷ ମଧ୍ୟରେ ଏକତାର ବିଲୟ ଘଟୁଛି ଓ ବିଚ୍ଛିନ୍ନତାବାଦୀ ଶକ୍ତି ମୁଣ୍ଡ ଟେକୁଛି । ଯାହାକୁ ପ୍ରତିହତ କରିବା ପାଇଁ ସର୍ବାଗ୍ରେ ଉଦ୍ୟମ ହେବା ଆବଶ୍ୟକ । ଏହି ମାଟିର ମହାନ୍ ସନ୍ଥ ସ୍ୱାମୀ ବିବେକାନନ୍ଦ ଯିଏ କି ଆମେରିକାର ଚିକାଗୋ ସହରରେ ୧୮୯୩ ମସିହାରେ ଅନୁଷ୍ଠିତ ଧର୍ମ ମହାସଭାରେ ଉପସ୍ଥିତ ଶ୍ରୋତାମଣ୍ଡଳୀଙ୍କୁ ପ୍ରଥମ ଉଦ୍‌ବୋଧନରେ 'ହେ ଆମେରିକାବାସୀ ଭଗିନୀ ଓ ଭ୍ରାତୃବୃନ୍ଦ' ସମ୍ବୋଧନ କରି ସମଗ୍ର ବିଶ୍ୱ ସମ୍ମୁଖରେ ଏକ ଅବିଶ୍ୱସନୀୟ ସମ୍ଭାଷଣ ଉପସ୍ଥାପନ କଲେ । ସେହି ମାଟିରେ ସାଂପ୍ରଦାୟିକ ହିଂସା, ଜାତିଆଣ ବିଦ୍ୱେଷ, ଧନୀଦରିଦ୍ର ଭେଦଭାବ, ହିଂସା, ପରଶ୍ରୀକାତରତା ଆଦି ଦୁର୍ଗୁଣରେ ଜର୍ଜରିତ ହେବା ନିଶ୍ଚିତ ରୂପେ ବେଦନାଦାୟକ ଥିଲା । ତେଣୁ ବିବେକାନନ୍ଦ ସେତେବେଳର ପରାଧୀନ ଭାରତବାସୀଙ୍କ ଉଦ୍ଦେଶ୍ୟରେ ବଜ୍ର କଣ୍ଠରେ ଉଦ୍‌ଘୋଷଣା କରିଥିଲେ–''ହେ ଭାରତବାସୀ ଭୁଲ ନାହିଁ – ତୁମର ବିବାହ, ତୁମର ଧର୍ମ, ତୁମର ଜୀବନ, ଇନ୍ଦ୍ରିୟସୁଖ ନିଜର ବ୍ୟକ୍ତିଗତ ସୁଖ ପାଇଁ ନୁହେଁ, ଭୁଲ ନାହିଁ– ତୁମେ ଜନ୍ମଠାରୁ ମା'ଙ୍କ ପାଇଁ ବଳି ପ୍ରଦତ୍ତ, ଭୁଲ ନାହିଁ – ତୁମର ସମାଜ ବିରାଟ ମହାମାୟାଙ୍କ ଛାୟା ମାତ୍ର, ଭୁଲ ନାହିଁ– ନୀଚ ଜାତି, ମୂର୍ଖ, ଦରିଦ୍ର, ଅଜ୍ଞ, ମୋଚି, ମେହେନ୍ତର ତୁମର ରକ୍ତ, ତୁମର ଭାଇ ! ସାହସ ଅବଲମ୍ବନ କର, ସଦର୍ପେ କହ– ମୁଁ ଭାରତବାସୀ, ଭାରତବାସୀ ମୋର ଭାଇ । କୁହ– ମୂର୍ଖ ଭାରତବାସୀ, ଦରିଦ୍ର ଭାରତବାସୀ, ବ୍ରାହ୍ମଣ ଭାରତବାସୀ, ଚଣ୍ଡାଳ ଭାରତବାସୀ ମୋର ଭାଇ ।'' ସ୍ୱାମୀ ବିବେକାନନ୍ଦ ଭାରତବର୍ଷରେ ଦୈନ୍ୟ ଅବସ୍ଥାରେ ବିଚଳିତ ହୋଇ ଭାରତମାତାର ଅତୀତ ଗୌରବ ଫେରାଇ ଆଣିବା ପାଇଁ ସାରା ଭାରତ ଭୂଖଣ୍ଡ ଯାତ୍ରା କରିଥିଲେ । ଏଥି ସହିତ ପରାଧୀନ ଭାରତର ସ୍ୱାଧୀନତା ପାଇଁ ସେ ସନ୍ନ୍ୟାସୀ ହୋଇ ମଧ୍ୟ ତେଜୋଦୀପ୍ତ କଣ୍ଠରେ ଯେଉଁ ଉଦ୍‌ଘୋଷଣା କରିଥିଲେ ତାହା ପରବର୍ତ୍ତୀ କାଳରେ ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ, ଋଷି ଅରବିନ୍ଦ, ଜବାହରଲାଲ ନେହେରୁ, ବାଘା ଯତୀନ୍, ରବୀନ୍ଦ୍ରନାଥ ଠାକୁର, ଚକ୍ରବର୍ତ୍ତୀ ରାଜଗୋପାଳଚାରୀ, ବାଲ ଗଙ୍ଗାଧର ତିଳକ, ଆନି ବେସାନ୍ତ ଆଦି ସ୍ୱାଧୀନତା ଆନ୍ଦୋଳନର ପୁରୋଧାମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ବିବେକାନନ୍ଦଙ୍କ ବାଣୀ ସେମାନଙ୍କ ମନରେ ଓ ପ୍ରାଣରେ ଭରି ଦେଇଥିଲା ଏକ ଅପୂର୍ବ ପ୍ରେରଣା ଓ ଏକତା ସୂତ୍ରରେ ବାନ୍ଧି ହୋଇ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିବାରେ ସାହସ ଯୋଗାଇଥିଲା । ମଣିଷ କାଳେ କାଳେ ଦିବ୍ୟ ଓ ଉଦାର ଭାବନାରେ ବିକଶିତ ହେବା ଉଚିତ୍ । ଏଥିପାଇଁ ଏକତା ଓ ଏକତ୍ୱ ଭାବ ଅତି ଆବଶ୍ୟକ । ଆମ ଭିତରେ ଯେତେ ପ୍ରଭେଦ, ଯେତେ ବିଦ୍ୱେଷ ଭାବ ଥାଉ ନା କାହିଁକି, ଯଦି ଆମ ଭିତରୁ କାହାର ଉପରକୁ ବାହ୍ୟ କ୍ଷେତ୍ରରୁ ବିପଦ ଦେଖାଦିଏ, ତେବେ ଆମେ ସମସ୍ତେ ଏକ ହୋଇ ତାହାର ମୁକାବିଲା କରିବା ଆବଶ୍ୟକ । ଏଠାରେ ମହାଭାରତର ଏକ ଅତି ଉପାଦେୟ ଆଲେଖ୍ୟର ଅବତାରଣା କରାଯାଇପାରେ । ଧର୍ମରାଜ ଯୁଧିଷ୍ଠିରଙ୍କ ମତରେ, ''ଆମେ ପାଞ୍ଚ ଭାଇ ନୋହୁଁ, ଆମେ ୧୦୫ ଭାଇ । ଆମ ଭିତରେ ପାର୍ଥକ୍ୟ ଓ ବିଭେଦ ସୃଷ୍ଟି

ହେବା ବେଳେ ଆମେ ପଞ୍ଚୁପାଣ୍ଡବ ୫ ଭାଇ ଓ ସେମାନେ ୧୦୦ ଭାଇ କୌରବ, କିନ୍ତୁ ଯଦି ଅନ୍ୟ କେହି ଆମକୁ ଆକ୍ରମଣ କରେ ତେବେ ଆମେ ୧୦୫ ଭାଇ'' । ଏହିପରି ଭାବରେ ସବୁ ଭାରତୀୟ ଏକତ୍ୱ ଭାବନାରେ ଜିଇଁବା ଦରକାର । ସେମାନେ ସମସ୍ତେ ଗୋଟିଏ ଜାତି, ଗୋଟିଏ ପରମ୍ପରା, ଗୋଟିଏ ଐତିହ୍ୟ, ଗୋଟିଏ ସଂସ୍କୃତି ଓ ଗୋଟିଏ ରାଷ୍ଟ୍ରର ସନ୍ତାନ । ଜାତି, ଧର୍ମ, ବର୍ଣ୍ଣ, ଲିଂଗ ଓ ଅଧୁନା ଅତି କୁତ୍ସିତ ଭାବରେ ସମାଜରେ ମୁଣ୍ଡ ଟେକିଥିବା ଦଳୀୟ ଭାବନା ନିର୍ବିଶେଷରେ ଆମେ ଏକ, ଏକଥା କଦାପି ଭୁଲିବା ଉଚିତ୍ ନୁହେଁ । ଯେତେବେଳେ ଭୁଲିଯିବା, ସେତେବେଳେ ଭୁଲ ହୋଇଯିବ । ଏ ଭୁଲ ଅତୀତରେ ବହୁବାର ହୋଇଛି ଏବଂ ଏଥିପାଇଁ ଆମକୁ ଅନେକ ମୂଲ୍ୟ ଦେବାକୁ ପଡ଼ିଛି । ଇତିହାସ ତା'ର ସାକ୍ଷୀ । ଆମେ ଏକ ଭାରତମାତାର ସନ୍ତାନ । ଏ ସତ୍ୟକୁ ଭୁଲି ଯାଇ ଲୋକମାନେ ଆମେ ଭିନ୍ନ ତୁମେ ଭିନ୍ନ ବୋଲି କହି କିଛି ଲୋକ ସବୁ ପ୍ରକାର ପାର୍ଥକ୍ୟ ବଢ଼ାଉଛନ୍ତି । ଏହାଦ୍ୱାରା ସମାଜରେ ବିଭାଜନ ସୃଷ୍ଟି ହେଉଛି ଏବଂ ବିଭେଦକାରୀ ଶକ୍ତିମାନେ ବଳଶାଳୀ ହେଉଛନ୍ତି । ଏଥିରେ ଭାରତବର୍ଷର ପବିତ୍ରତା କ୍ଷୁଣ୍ଣ ହେଉଛି । ଜଣେ ଯେକୌଣସି ଦଳର, ଯେ କୌଣସି ଧର୍ମର, ଯେକୌଣସି ସମ୍ପ୍ରଦାୟର ବା ଯେକୌଣସି ରାଜ୍ୟର ହୋଇପାରେ କିନ୍ତୁ ସବୁ ଭାରତୀୟ ଏକ । ଏହି ଏକତ୍ୱ ଭାବର ସହ ସବୁ ଆହ୍ୱାନର ସମ୍ମୁଖୀନ ହେବା ଏବଂ ଦେଶର ସୁରକ୍ଷା କରିବା ପାଇଁ ସଦା ପ୍ରସ୍ତୁତ ରହିବା ଆବଶ୍ୟକ । ବ୍ୟକ୍ତିଗତ ସ୍ୱାର୍ଥ ଓ ବ୍ୟକ୍ତିଗତ ପାର୍ଥକ୍ୟ ଥାଇପାରେ, ମାତ୍ର ରାଷ୍ଟ୍ରର ହିତ ପାଇଁ ଏବଂ ସମାଜର ମଙ୍ଗଳ ପାଇଁ ସବୁ ପ୍ରକାର ସ୍ୱାର୍ଥ ଓ ପାର୍ଥକ୍ୟକୁ ପଛକୁ ଠେଲି ଦେଇ ସମାଜର ହିତ ପାଇଁ ଆଗେଇ ଆସିବା ଉଚିତ୍ । ରାଷ୍ଟ୍ରୀୟ ସ୍ୱାର୍ଥ ବିପଦରେ ପଡ଼ିଲେ ସମସ୍ତେ ଏକ ହେବା ଉଚିତ୍ । ଏକତା ହିଁ ବଳ । ଖଣ୍ଡିଏ ଘାସରେ ଗୋଟିଏ ଛୋଟିଆ ପ୍ରାଣୀକୁ ମଧ୍ୟ ବାନ୍ଧି ହେବ ନାହିଁ, କିନ୍ତୁ ବହୁ ସଂଖ୍ୟାରେ ଘାସରେ ତିଆରି ଏକ ଦଉଡ଼ିଦ୍ୱାରା ଏକ ବିଶାଳକାୟ ହାତୀକୁ ମଧ୍ୟ ବାନ୍ଧି ହେବ । ତେଣୁ ସମସ୍ତ ଭାରତୀୟଙ୍କ ମଧ୍ୟରେ ଏହି ଏକତ୍ୱର ଭାବ ବିକଶିତ କରି ପାରିଲେ ଭାରତୀୟ ଜନ ଜୀବନରେ ଦେଖା ଯାଉଥିବା ସଂକଟ ସହଜରେ ଏଡ଼ାଇ ଦେଇ ହେବ । ତେଣୁ ଏକତାର ମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ରାଷ୍ଟ୍ର ଗଠନରେ ସମସ୍ତେ ବ୍ରତୀ ହେଲେ ଏଇ ଭାରତଭୂମି ଅଚିରେ ସୁନାର ଭାରତବର୍ଷରେ ପରିଣତ ହୋଇପାରିବ ।

ସୂଚନା ଅଧିକାରୀ
ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର

# ଜୟ ମା' ମହିଷାମର୍ଦ୍ଦିନୀ

ଉର୍ମିଳା ମିଶ୍ର

ମହିଷା ମର୍ଦ୍ଦିନୀ ଦୁର୍ଗତିନାଶିନୀ
ମାଆ ଶକ୍ତି ସ୍ୱରୂପିଣୀ
ଚୈତନ୍ୟରୂପିଣୀ ପାପ ବିନାଶିନୀ
ସତ୍ୟଶାନ୍ତି ପ୍ରଦାୟିନୀ ।
ଆଦ୍ୟାଶକ୍ତି ଜଗଦମ୍ବା ଯୋଗେଶ୍ୱରୀ
ଶୁଭମୟୀ କ୍ଷମାମୟୀ
ଅଗ୍ନିବାୟୁ ସୂର୍ଯ୍ୟ ତେଜର ଆଧାର
ତ୍ରିନୟନା ଦୟାମୟୀ ।

ଦେବୀ ଦଶଭୁଜା ଉଡୁଛି ତୋ ଧ୍ୱଜା
କୃପା ନେତ୍ରେ ଚାହିଁଥାଅ
ଜଗତପାଳିନୀ ଭୁବନ ମୋହିନୀ
କୃପାବାରି ଢାଳି ଦିଅ ।
କାକଟପୁରରେ ନାମ ତୋ ମଙ୍ଗଳା
ତାଳଚେରରେ ମା' ହିଙ୍ଗୁଳା
ବଡମ୍ବାରେ ତୋର ନାମ ଭଟ୍ଟାରିକା
ପୁରୀରେ ମା' ବିମଳା ।

ମନଫୁଲ ହାରେ କରୁଛି ଅର୍ଚ୍ଚନା
ଭକତିର ଅର୍ଘ୍ୟ ଢାଳି
ଆଖିର ଲୁହରେ ତୋର ପାଦପଦ୍ମ
ଦେଉଛି ମାଆ ପଖାଳି ।
କରୁଣା ଭଣ୍ଡାରୁ କରୁଣାର ଧାରା
ପଡୁଥାଉ ବାରେ ଝରି
ବିଶ୍ୱବ୍ରହ୍ମାଣ୍ଡରୁ ସକଳ କଳୁଷ
ଯାଉ ମାଆ ଅପସରି ।

ମାର୍ଫତ୍– ଶ୍ରୀଚରଣ ମିଶ୍ର ଗ୍ରା/ପୋ– ମହୁଲିଆ, ଭାୟା– ବଡମ୍ବା, ଜିଲ୍ଲା– କଟକ

# ଜାତୀୟକବି ବୀରକିଶୋର

**ଅଧ୍ୟାପକ ଚିନ୍ତାମଣି ଭାରତୀ**

ଜଗତ୍‌ସିଂହପୁର ଜିଲ୍ଲା ଅନ୍ତର୍ଗତ ଅଳକା ନଦୀ ତଟରେ ସହକାର ବନବେଷ୍ଟିତ, କାକକୋକିଳ –କୁଜନ–ମୁଖରିତ ପୂର୍ଣ୍ଣ ଗ୍ରାମର ନୈସର୍ଗିକ ପରିବେଶରେ ନଭେମ୍ବର ୨୩ ତାରିଖ ୧୮୯୬ ମସିହାରେ ଜମିଦାର ଗୋପାଳବଲ୍ଲଭ ଦାସଙ୍କ ଔରସରୁ ଜନ୍ମ ନେଇଥିଲେ ବୀରକିଶୋର ଦାସ । ଶୈଶବରେ ତାଙ୍କର ମାତୃବିୟୋଗ ଘଟିଲା । ଗ୍ରାମ ଚାଟଶାଳୀରେ ପ୍ରାରମ୍ଭିକ ଶିକ୍ଷା ସମାପ୍ତ କରି କଟକ ପ୍ୟାରିମୋହନ ଏକାଡେମୀରେ ଅଧ୍ୟୟନ ସମୟରେ ସ୍କୁଲ ସମ୍ପାଦକ ଭକ୍ତ କବି ମଧୁସୂଦନ ରାଓଙ୍କ ଇଂରାଜୀ ଶ୍ରେଣୀରେ ଏକ ପ୍ରଶ୍ନର ଉତ୍ତରରେ ସେ କହିଥିଲେ ଯେ ତାଙ୍କୁ ସବୁଜ ରଙ୍ଗ ଭଲ ଲାଗେ । ଭକ୍ତ କବି ଭବିଷ୍ୟବାଣୀ ଶୁଣାଇଥିଲେ ଯେ ସେହି ପିଲା ଦିନେ କବି ହେବ । ଡାଫୋଡିଲ ଫୁଲକୁ ସେ କାଠଯୋଡି କୂଳର ଅଗରାଫୁଲ ସହ ତୁଳନା କରି ମଧୁସୂଦନଙ୍କୁ ଚମତ୍କୃତ କରାଇ ଦେଇଥିଲେ । କୈଶୋରରେ ସେ ଅନୁବାଦ କବିତା, ରୋମାଣ୍ଟିକ ଭାବାବେଗ ସମ୍ପନ୍ନ ପଲ୍ଲୀ–ପ୍ରକୃତି ମୂଳକ ତିନିଶତରୁ ଊର୍ଦ୍ଧ୍ୱ ଗୀତିକବିତା ରଚନା କରିଥିଲେ । ବିଶିଷ୍ଟ କବି ନାରାୟଣ ମୋହନ ଦେ’ଙ୍କ ସାହଚର୍ଯ୍ୟ ତାଙ୍କୁ ଏ ଦିଗରେ ଉତ୍ସାହିତ କରିଥିଲା । ଏ ରୁଚିର ତାଙ୍କ ଲେଖନୀର ଏକ ନମୁନା –

ଫୁଟି ପଡେ ଜ୍ୟୋସ୍ନାଫୁଲ ତୋଳି ରଖେ ଧରା
ହସୁଛନ୍ତି ଲକ୍ଷେ ତାରା ହୋଇ ଆତ୍ମହରା
ସୁନୀଳ ଗଗନ ତଳେ । ଚକ୍ରବାକ ଦଳେ ଦଳେ
ଉଡି ଉଡି ପିଉଛନ୍ତି ନବଜ୍ୟୋତି ଧାରା
କୁମୁଦିନୀ ଘରେ ଆଜି ମହୋତ୍ସବ ପରା ।

(ଅଗ୍ନିଉତ୍ସବ)

ସ୍ୱାଧୀନତା ଆନ୍ଦୋଳନର ରଣଦୁନ୍ଦୁଭି ଆକୁମାରୀ ହିମାଚଳ ଭାରତବର୍ଷର ସର୍ବତ୍ର ପ୍ରକମ୍ପିତ ହେଉଥିବା ବେଳେ ଆଇ.ଏ.ଶ୍ରେଣୀର ଛାତ୍ର ବୀରକିଶୋର ଅଧ୍ୟୟନ ପ୍ରତି ଏକନିଷ୍ଠ ହୋଇନପାରି କଲେଜ ତ୍ୟାଗ କଲେ । ଋଷ୍ୟଶୃଙ୍ଗଙ୍କୁ ଦୂରତା ଆଣିଲା ପରି ସ୍ୱାଧୀନତା ତାଙ୍କୁ ଭୁଲାଇ ଆଣିଲା । ଏହି ସମୟରେ ସେ ଲେଖିଥିଲେ :

ରଣ ସମୟରେ ବହି ଘୋଷିବାକୁ
ମୋତେ ଆଉ ତୁମେ ବଳାନା
ଛାତିର ରକତ ତାତି ଉଠେ ମୋର
ବାଜିବାରୁ ଯୁଦ୍ଧ ବାଜଣା ।

ପ୍ରଭାବଶାଳୀ ପିତା ତାଙ୍କୁ ଏସ୍‌.ଡି.ଓ. କାର୍ଯ୍ୟାଳୟ, କମିଶନର କାର୍ଯ୍ୟାଳୟ, କେନାଲ ରାଜସ୍ୱ କାର୍ଯ୍ୟାଳୟ, ଡାକଘରେ କିରାଣି, ପ୍ୟାରିମୋହନ ଏକାଡେମୀରେ ଶିକ୍ଷକ, ପୂର୍ତ୍ତ ବିଭାଗରେ ଟ୍ରାଫିକ୍ ଆସିଷ୍ଟାଣ୍ଟ ଭାବେ ନିଯୁକ୍ତ କରାଇଥିଲେ ମଧ୍ଯ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ବୀରକିଶୋର ଏ କ୍ଷୁଦ୍ର ଚାକିରି ମୋହ ପରିହାର କରି ଗାନ୍ଧିଜୀଙ୍କ ଆହ୍ୱାନରେ ୧୯୨୨ ମସିହାରେ କଂଗ୍ରେସରେ ଯୋଗ ଦେଲେ । ଏହି ଅବସରରେ ସେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ ଓ ଗୋପବନ୍ଧୁ ଚୌଧୁରୀଙ୍କ ସାନ୍ନିଧ୍ୟଲାଭ କରି ମୁକ୍ତ କଣ୍ଠ ବୈତାଳିକ ପରି ସ୍ୱାଧୀନତା ସଂଗ୍ରାମର ସମର ସଙ୍ଗୀତମାନ ରଚନା କରି ସଂଗ୍ରାମୀମାନଙ୍କୁ ଉତ୍ସାହ ଓ ପ୍ରେରଣା ପ୍ରଦାନ କରୁଥିଲେ । ଗୋପବନ୍ଧୁଙ୍କ ଆଦର୍ଶକୁ ଦର୍ଶାଇବା ପାଇଁ ସେ ଗାଇଥିଲେ –

ନଥିଲେ ତ କେହି ତୁମ୍ଭ ଦେଶବନ୍ଧୁ
ଜୀବନ ପ୍ରଦୀପ ଜାଳି ଗୋପବନ୍ଧୁ
ଦେଶଲାଗି ଦେଲା ପ୍ରତି ରକ୍ତ ବିନ୍ଦୁ
ନିଜ ସ୍ୱାର୍ଥ ଲାଗି ଜାତ ନୁହେଁ ହିନ୍ଦୁ
କହିଗଲା ଆଜି ଚେତରେ
ଭାରତ ମୁକତି ଗଙ୍ଗା ଅନୁସରି ଥିଲା ସେ ଭଗୀରଥରେ ।

୧୯୨୩ ମସିହାରେ ତାଙ୍କ ପିତା ପୁତ୍ରଙ୍କୁ ଏ କାର୍ଯ୍ୟରୁ ନିବୃତ୍ତ କରାଇବା ପାଇଁ ବିବାହ ସୂତ୍ରରେ ଆବଦ୍ଧ କରିଥିଲେ ମଧ୍ୟ ଜାତୀୟ ଭାବରେ ଉନ୍ମାଦ ବୀରକିଶୋର ଅଧିକ ଉତ୍ସାହରେ ତାଙ୍କ ଉଦ୍ୟମ ଅବ୍ୟାହତ ରଖିଲେ । ଅସହଯୋଗ ଆନ୍ଦୋଳନଠାରୁ ୧୯୪୭ ମସିହାରେ ଦେଶ ସ୍ୱାଧୀନ ହେବାଯାଏଁ ତାଙ୍କ ଅମର ଲେଖନୀରୁ ନିଃସରି ଆସିଲା 'ମୋହନ ବଂଶୀ', 'ମୋହନ ବେଣୁ', 'ମହାତ୍ମା ଗାନ୍ଧୀଙ୍କ ବିଲାତ ଯାତ୍ରା', 'ବିଦ୍ରୋହୀ–ବୀଣା', 'ବିଜୟୀ ବୀଣା', 'ରଣଦୁନ୍ଦୁଭି', 'ରଣଭେରୀ', 'ଫୁଲଚନ୍ଦନ', 'ସବୁଜସାଥୀ', 'ସ୍ମୃତିକଣିକା', ସାତଦୀପ ଓ ଶାନ୍ତିଦୂତ, ମୋହନ କି କଲ ମୋହନ ଆଦି ବିପ୍ଳବୀ କବିତା ସଂକଳନ ସମୂହ ୧୯୨୨ରୁ ୧୯୨୯ ମଧ୍ୟରେ ରଚିତ ତାଙ୍କର ଅଧିକାଂଶ ରଚନା ବ୍ରିଟିଶ ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଥିଲା । ମସୀବଳରେ ଅସିକୁ ଶକ୍ତିଶାଳୀ କରିବା ଥିଲା ତାଙ୍କର ଲକ୍ଷ୍ୟ । ୧୯୩୦ରେ ରଣ ଦୁନ୍ଦୁଭି ଓ ରଣଭେରୀ ପାଇଁ ତାଙ୍କୁ ୨ ବର୍ଷ ଓ ୧୯୩୩ରେ ବିଦ୍ରୋହୀ ବୀଣା ପାଇଁ ଏକବର୍ଷ ଜେଲଦଣ୍ଡ ଭୋଗିବାକୁ ପଡିଥିଲା । ହଜାରିବାଗ ଜେଲରେ ରାଜେନ୍ଦ୍ର ପ୍ରସାଦ, ସୀମାନ୍ତ ଗାନ୍ଧୀ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନନ୍ଦକିଶୋର ଦାସ ଆଦି ନେତାମାନଙ୍କ ସହ ବନ୍ଦୀ ଜୀବନଯାପନ କରୁଥିବା ବେଳେ ତାଙ୍କ ଚାରଣ କବିତାରେ ଉଦ୍‌ବୁଦ୍ଧ ହୋଇ ସଂଗ୍ରାମୀ ବାନର ସେନାମାନେ ବ୍ରିଟିଶ ଅତ୍ୟାଚାରକୁ ଭୃକ୍ଷେପ କରୁନଥିଲେ । ବିଶେଷତଃ ଅଦ୍ୱୈତ ବଲ୍ଲଭ ରାୟଙ୍କ କଣ୍ଠରେ ବୀରକିଶୋରଙ୍କ ମାର୍ଚ୍ଚିଂ କବିତାର ଯାଦୁକରୀ ସ୍ପର୍ଶରେ ଜାତୀୟତାରେ ଉଦ୍‌ବୁଦ୍ଧ ଜନତାଙ୍କ ନେତ୍ର ଅଶ୍ରୁସଜଳ ହୋଇଉଠୁଥିଲା । ସେହିଭଳି କେତେକ ପ୍ରତିନିଧିସ୍ଥାନୀୟ ରଚନାର ଦୃଷ୍ଟାନ୍ତ:

୧) ବଜାଇ ବାଦ୍ୟ ସଜାଇ ସୈନ୍ୟ ହଜାଇ ଶତ୍ରୁ ବୁଦ୍ଧି
ଭାରତ ଦୁର୍ଗ ଦଖଲ କରିବା ପାଷାଣ ପାଚେରି ଭେଦି ।
ସତ୍ୟାଗ୍ରହର ଖଡ୍‌ଗ ଧାରରେ ଚାଲିବା ବିଜୟ ଯାତ୍ରୀ
ରକ୍ତ ଜବାର ଅଞ୍ଜଳି ଦେବା ପୂଜିବା ଜନମଦାତ୍ରୀ ।
୨) ସାନ ସାନ ପିଲା ଖାଉଛନ୍ତି ବେତ
ଥପ ଥପ ବହି ପଡଇ ରକତ
ଜୀବନ ବିକଳେ ଆଖି ଛଳ ଛଳ
ଆଖିରେ ଏହାକି ଦେଖିବା
ମରିବା ତ ଦିନେ ମରିବା
ଛେଳି ମେଣ୍ଢାପରି ପାଞ୍ଚଣକୁ ଡରି ଘୁଷୁରି ପରିକି ଚରିବା ।
୩) ଅରି ଫେରିନାହିଁ ଯୁଦ୍ଧ ସରିନାହିଁ
ଆସ ମୋ ଶିବିରେ ଆସ ଭାଇ
ହିମାଚଳ ଶିରୁ ଶବଦ ଶୁଭଇ ଡର ନାହିଁ ଆଉ ଡେରି ନାହିଁ ।
ମାନବ ମୁକତି ଗଙ୍ଗା ଆସୁଛନ୍ତି
ଧୀରେ ଭଗୀରଥ ନେବ ବାହି।
୪) ତୁମେ କେତେ ଜଣ ଜୀବନକୁ
ପାଣି ଛଡାଇ ନଦେଲେ ଚଳିବ କି ?
ଦଧୀଚିର ହାଡ ଉଜାଡି ନଦେଲେ
ଏ ଜାତିର ଭାଗ୍ୟ ଫେରିବ କି ?

**ନେତାଜୀଙ୍କ ଚରମପନ୍ଥୀ ଚିନ୍ତାଧାରା ମଧ୍ୟ ତାଙ୍କ କବିତାରେ ଆତ୍ମପ୍ରକାଶ କରିଥିଲା:**

କହ କେଉଁ ଜାତି ପାଇଛି ମୁକତି
କରି ହୁରି ହାରି ଗୁହାରୀ
କହ ପାଇଛି କେ ସୁଖ ଲିଭାଇଛି ଦୁଃଖ
ମାଗି ମାଗି ପଥ ଭିକାରି ।

**ସୂର୍ଯ୍ୟାସ୍ତ ହେଉନଥିବା ବ୍ରିଟିଶ ସାମ୍ରାଜ୍ୟର ପତନ ଚିନ୍ତା ତାଙ୍କୁ ଦିବସ ରଜନୀ ବ୍ୟାକୁଳ କରୁଥାଏ –**

ଦିନରାତି ମୋର ସେହି ଚିନ୍ତା ବନ୍ଧୁ ସେହି ଚିନ୍ତା
ସରକାର ଶବ ଦାହ ହେବ କେବେ
ଦେଖିବି ମୁଁ ତାର ଶେଷ ଚିତା ।

ସମକାଳୀନ କବିମାନଙ୍କୁ ଅନ୍ୟାନ୍ୟ କବିତା ରଚନାରୁ ନିବୃତ୍ତ ରହି ଯୁଗର ଆବଶ୍ୟକତା ଅନୁଯାୟୀ ବିଦ୍ରୋହୀ କବିତା ରଚନାରେ ବ୍ରତୀ ହେବା ପାଇଁ ସେ ଆହ୍ୱାନ ଦେଇଥିଲେ–

କବି, ବାଜେ କବିତା ବନ୍ଦ କର
କମାଣ ପରାଏ କଲମ ଧର




ଥରେ ବଜା ନବ ସମର ଭେରୀ
ତରୁଣ ଯେତେ ସେଇ ସଙ୍କେତେ
ଆସନ୍ତୁ ତତେ ସ୍ୱାର୍ଥେ ଘେରି ।

ଭାରତଛାଡ ଆନ୍ଦୋଳନରେ ଯୋଗଦେଇ ସେ ବ୍ରହ୍ମପୁର ଜେଲରେ ୩ ବର୍ଷ ବନ୍ଦୀ ଜୀବନଯାପନ କରିଥିଲେ । ତାଙ୍କ ବିଚାର ବେଳେ କର୍ମୀମାନେ କୋର୍ଟ ଘେରାଉ କରୁଥିଲେ । ତାଙ୍କ କବିତାରେ ଗାନ୍ଧୀଦର୍ଶନ, ଅସହଯୋଗ ଆନ୍ଦୋଳନ, ସ୍ୱଦେଶୀ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ପ୍ରଜାମେଳି, ଭାରତଛାଡ ଆନ୍ଦୋଳନ, ଭାଷା ଆନ୍ଦୋଳନ ଓ ଧର୍ମନିରପେକ୍ଷବାଦର ସ୍ପଷ୍ଟ ମୁଦ୍ରାଙ୍କମାନ ରହିଛି ।

ସ୍ୱାଧୀନୋତ୍ତର କାଳରେ ମହାତ୍ମା ଗାନ୍ଧୀଙ୍କ ବିଲୟ ପରେ ତାଙ୍କ ପରିକଳ୍ପିତ ରାମରାଜ୍ୟ ପ୍ରତିଷ୍ଠା ବିଫଳ ହେବାରୁ ସେ ଭଗ୍ନ ମନୋରଥ ହୋଇ ଜଳଦକାଳ କୋକିଳବତ୍ ମୂକ ହୋଇପଡିଲେ । ତାଙ୍କର ଶେଷ ଅର୍ଘ୍ୟ ସମର ଯୁଗର ଅମର ସଙ୍ଗୀତ– ୧୯୭୨ରେ ଆତ୍ମପ୍ରକାଶ କଲା । ଭଗ୍ନଜାନୁ ଦୁର୍ଯ୍ୟୋଧନ ପରି ସେ ଅସହାୟ ଭାବେ ବିଳାପ କରିଛନ୍ତି ।

ଯାହା ଲେଖିବାର ଲେଖି ସାରିଛି ମୁଁ
ଆଉ ପାରୁନାହିଁ କିଛି ମୁଁ ଲେଖି
ଦେଖିବାର ଯାହା ଦେଖି ସାରିଛି ମୁଁ
ଆଉ ପାରୁନାହିଁ କିଛି ମୁଁ ଦେଖି
ଜୀବନଟା ଯାକ ଅନୁଭବ କଲି
ସାରା ଦୁନିଆଟା କେବଳ ଫାଙ୍କି ।

୧୯୫୯ ମସିହାରେ ଓଡ଼ିଶା ବିଧାନ ସଭାର ସଦସ୍ୟ, ୧୯୬୨ ମସିହାରେ ପୁସ୍ତକ ଜାତୀୟ କରଣ କମିଟିର ସମ୍ପାଦକ, କଟକ ଲୋକାଲ ବୋର୍ଡର ଚେୟାରମ୍ୟାନ ଭାବେ ସେ ବହୁକାଳ କାର୍ଯ୍ୟରତ ଥିଲେ । ଏହି ଅବସରରେ କବିତାର ସ୍ୱର ପରିବର୍ତ୍ତନ କରି ସେ ରାଶି ରାଶି ଶିଶୁକବିତା ରଚନା କରିବା ସଙ୍ଗେ ସଙ୍ଗେ ଶିଶୁ ସାହିତ୍ୟର ପ୍ରଚାର ଓ ପ୍ରସାର ଦିଗରେ ମନୋନିବେଶ କରିଛନ୍ତି । ୧୯୭୩ ମସିହା ଏପ୍ରିଲ ୨୮ ତାରିଖରେ ଏହି ଜାତୀୟ କବିଙ୍କର ମହାପ୍ରୟାଣ ଘଟିଲା । ତାଙ୍କୁ ବଙ୍ଗଳାର ଜାତୀୟ କବି କାଜିନଜରୁଲ ଇସଲାମ୍‌ଙ୍କ ସହ ତୁଳନା କରାଯାଇପାରେ ।

# ଦୁର୍ଗେ ଦୁର୍ଗତି ନାଶିନୀ

କୁନ୍ତଳତା ତ୍ରିପାଠୀ

ଦୁର୍ଗେ ଦୁର୍ଗତି ନାଶିନୀ ମହିଷାସୁର ମର୍ଦ୍ଦିନୀ
ସଙ୍କଟମୋଚନୀ ମା’ ଶକ୍ତି ସ୍ୱରୂପିଣୀ
ମଙ୍ଗଳମୟୀ ଜନନୀ ଶାରଦେ ବର ଦାୟିନୀ
ବ୍ରହ୍ମା ଶଙ୍କର ସେବିନୀ ବିଶ୍ୱବନ୍ଦିନୀ
ମା’ ଭବ ଭୟ ବିମୋଚନୀ
ଶୁଭଙ୍କର ହୁଅ ମା’ ଆନନ୍ଦଦାୟିନୀ ।

ନାନା ଅସ୍ତ୍ରେ ସୁଶୋଭିତା ଦେବାସୁର ପୂଜିତା
ପଶୁତ୍ୱ ବିନାଶ ପାଇଁ ସର୍ବ ଅର୍ଚ୍ଚିତା
ମାଗୋ ଅଯୋନି ସମ୍ଭୂତା ସଦା ନୃତ୍ୟରତା



ନାନାଳଙ୍କାର ଶୋଭିତା ବିଶ୍ୱବିଦିତା
ଅପାର ମହିମା ତୋହର
କେ ବର୍ଣ୍ଣି ପାରିବ ମାଗୋ ଏହି ସଂସାର ।

ଶୁମ୍ଭ ନିଶୁମ୍ଭ ନାଶିନୀ ସକଳ ଦର୍ପ ହାରିଣୀ
ମାଗୋ ପତିତପାବନୀ ବିଶ୍ୱ ତାରିଣୀ
ଭୀମକାନ୍ତ ସ୍ୱରୂପିଣୀ ମା’ ହିମବନ୍ତ ନନ୍ଦିନୀ
ସତୀ, ଉମା, ପାର୍ବତୀ ଗୋ ଶିବଙ୍କ ଘରଣୀ
ତୁହି ଚଉଷଠୀ ଯୋଗିନୀ
ତୁହି ସତ୍ୟ ସନାତନୀ ସଦା ମୁକ୍ତି କାରିଣୀ ।

ଦୁର୍ନୀତି ନିବାରଣ ନିର୍ଦ୍ଦେଶାଳୟ, କଟକ-୧

# ଆମ ସାଂସ୍କୃତିକ ଧାରାରେ ତ୍ରି–ଗୟା

**ପଣ୍ଡିତ ସୂର୍ଯ୍ୟମଣି ଖୁଣ୍ଟିଆ**

ଭାରତୀୟ ସଂସ୍କୃତି ଏକ ମିଶ୍ରସଂସ୍କୃତି । ଏହି ବିଶାଳ ଦେଶର ବିଭିନ୍ନ ପ୍ରାନ୍ତରେ ସଂସ୍କୃତିର ବିଭିନ୍ନ ରୂପ ଦେଖାଯାଉଥିଲେ ମଧ୍ୟ କେତେକ କ୍ଷେତ୍ରରେ ହିନ୍ଦୁ ସଂସ୍କୃତିର ଏକରୂପତା ଦେଖାଯାଏ । ଯେମିତି ପୂର୍ବପୁରୁଷମାନଙ୍କୁ ପିଣ୍ଡଦାନ କରିବା । ସାରା ଭାରତବର୍ଷର ହିନ୍ଦୁମାନେ ବିଶ୍ୱାସ କରନ୍ତି ଯେ ପିଣ୍ଡଦାନ କଲେ ଆରପାରିକୁ ଯାଇଥିବା ପୂର୍ବପୁରୁଷମାନେ ସନ୍ତୁଷ୍ଟ ହୁଅନ୍ତି । ଏହି ପିଣ୍ଡ ବର୍ଷକୁ ଥରେ ମୃତ୍ୟୁତିଥିରେ ପ୍ରଦାନ କରାଯାଇଥାଏ । ଏହା ଏକ ପ୍ରବହମାନ ସାଂସ୍କୃତିକ ପରଂପରା । ବିଶେଷକରି ପୁତ୍ରମାନେ ଏହି ପିଣ୍ଡଦାନ କରନ୍ତି । ଏହି ବାର୍ଷିକ ପିଣ୍ଡଦାନକୁ ଛାଡ଼ିଦେଲେ କେତେକ ସ୍ୱତନ୍ତ୍ର ତୀର୍ଥସ୍ଥାନରେ ମଧ୍ୟ ସ୍ୱତନ୍ତ୍ର ପିଣ୍ଡଦାନ କରାଯାଏ । ଯେପରି ଗୟା, ପାଦଗୟା, ନାଭିଗୟା । ପ୍ରୟାଗ, ବାରଣାସୀ, ହରିଦ୍ୱାର, କୋଲକାତାର ହୁଗୁଳି ତୀର ଘାଟ ସମୂହ, ପୁରୀର ମହୋଦଧି, ବାଇଶିପାହାଚ ଓ ଆହୁରି ଅନେକ ପବିତ୍ର ତୀର୍ଥ ।

ପିଣ୍ଡଦାନ ପାଇଁ ଉଦ୍ଦିଷ୍ଟ ଥିବା ଏ ସମସ୍ତ ପବିତ୍ର ସ୍ଥାନମାନଙ୍କ ମଧ୍ୟରେ ଗୟା ହେଉଛି ସର୍ବଶ୍ରେଷ୍ଠ ସ୍ଥାନ । ଗୟାରେ ପିଣ୍ଡଦାନ କରିବା ପରେ ପୂର୍ବପୁରୁଷମାନେ ମୁକ୍ତି ପାଇଯାଆନ୍ତି ବୋଲି ବିଚାର କରାଯାଏ । କେତେକ ହିନ୍ଦୁ ଗୟାତୀର୍ଥରେ ପିଣ୍ଡଦାନ କରିବା ପରେ ପୂର୍ବପୁରୁଷମାନଙ୍କୁ ଆଉ ପିଣ୍ଡଦାନ କରନ୍ତି ନାହିଁ । ବାର୍ଷିକ ଶ୍ରାଦ୍ଧ ପ୍ରଦାନ କରନ୍ତି ନାହିଁ । ସେମାନେ ବିଶ୍ୱାସ କରନ୍ତି ଯେ ଗୟାରେ ପିଣ୍ଡଦାନ ପରେ ଆଉ ପିଣ୍ଡଦାନର ପ୍ରୟୋଜନ ନାହିଁ । ବାର୍ଷିକ ଶ୍ରାଦ୍ଧର ଆବଶ୍ୟକ ନାହିଁ । କିନ୍ତୁ ତାହା ଠିକ୍ ନୁହେଁ । ଗୟାତୀର୍ଥରେ ପିଣ୍ଡଦାନ କରିବା ପରେ ମଧ୍ୟ ପିତୃପୁରୁଷଙ୍କୁ ପିଣ୍ଡଦାନ କରାଯାଇପାରେ ।

ତେବେ ଗୟାତୀର୍ଥକୁ ପିଣ୍ଡଦାନ ପାଇଁ କାହିଁକି ଶ୍ରେଷ୍ଠସ୍ଥାନ ବୋଲି ବିଚାର କରାଯାଇଛି, ସେ ବିଷୟରେ ଆମେ ସଠିକ୍ ଭାବରେ ଜାଣୁ କି ? ପୁଣି ଗୟା ଗୋଟିଏ, ଦୁଇଟି ବା ତିନିଟି ସେ ବିଷୟରେ ସାଧାରଣ ଲୋକେ ବେଶି ଜାଣନ୍ତି କି ? ସାଧାରଣ ଲୋକଙ୍କୁ ଅସଲ କଥାଟିକୁ ଜଣାଇବା ପାଇଁ ଏ ଆଲୋଚନାରେ ପ୍ରୟାସ କରାଯାଇଛି ।

'ଗୟା' ନାମଧାରୀ ତିନିଗୋଟି ସ୍ଥାନକୁ ଚିହ୍ନିତ କରାଯାଇଛି । ବିହାର ପ୍ରଦେଶର ଫଲ୍‌ଗୁ ନଦୀର ତୀରଦେଶରେ ଅବସ୍ଥିତ ତୀର୍ଥନଗରକୁ ଶିରୋଗୟା କୁହାଯାଏ । ଦ୍ୱିତୀୟ ଗୟା ହେଉଛି ପାଦ–ଗୟା । ଗୋଦାବରୀ ନଦୀ ତୀରରେ ମହେନ୍ଦ୍ରପର୍ବତର ପାଦ ଦେଶରେ ପିଠାପୁରଠାରେ ଏ କ୍ଷେତ୍ର ଅବସ୍ଥିତ । ତୃତୀୟ ହେଉଛି ନାଭିଗୟା । ବୈତରଣୀ ନଦୀ ତୀରରେ ପ୍ରାଚୀନ ନଗର ଯାଜପୁରସ୍ଥ ବିରଜା ମନ୍ଦିରକୁ ଲାଗି ରହିଥିବା ସୁଗଭୀର କୂପ । ଏହା ଗୁପ୍ତଗଂଗା ସହିତ ଜଡ଼ିତ । ଏହି ସ୍ଥଳକୁ ନାଭିଗୟା କୁହାଯାଏ ।

ତେବେ ଗୟା ଶବ୍ଦକୁ କେନ୍ଦ୍ରକରି ଏପରି ତିନିଗୋଟି 'ଗୟା'ର ପରିକଳ୍ପନା କରାଯାଇଛି କାହିଁକି ? ବିଭିନ୍ନ ପୁରାଣରେ ବିଭିନ୍ନ କଥା କୁହାଯାଇଛି । ତେବେ ଏ କଥା ସମସ୍ତ ପୁରାଣ ସ୍ୱୀକାର କରନ୍ତି ଯେ 'ଗୟାସୁର'ର ତିନିଗୋଟି ଅବୟବ ଯଥା– ଶିର, ନାଭି ଓ ପାଦ ଯେଉଁ ଯେଉଁ ସ୍ଥାନରେ ପଡ଼ିଥିଲା, ସେହି ସେହି ସ୍ଥାନମାନଙ୍କୁ ପବିତ୍ରସ୍ଥାନ ବୋଲି ବିଚାର କରାଯାଇଛି ଓ ସେହି ସ୍ଥାନମାନଙ୍କରେ ପିଣ୍ଡଦାନ କରିବା ପାଇଁ ବ୍ୟବସ୍ଥା ରହିଛି । ହିନ୍ଦୁ ମଣିଷ ଛୁଟି ଚାଲିଛନ୍ତି ସେହି ପବିତ୍ରସ୍ଥାନମାନଙ୍କୁ ପିଣ୍ଡଦାନ କରିବା ପାଇଁ ।

ତ୍ରିଗୟାଙ୍କର ତତ୍ତ୍ୱ ବହୁ ପୁରାଣ ଶାସ୍ତ୍ରରେ ବର୍ଣ୍ଣନା କରାଯାଇଛି । ବିଶେଷକରି ବ୍ରହ୍ମାଣ୍ଡ ପୁରାଣର 'ବିରଜାକ୍ଷେତ୍ର ମାହାତ୍ମ୍ୟ' ଖଣ୍ଡର ସପ୍ତଦଶ (୧୭) ଅଧ୍ୟାୟରେ ଗୟାସୁର ଚରିତ ଓ ଗୟାକ୍ଷେତ୍ରମାନଙ୍କର ପରିଚିତି ଦିଆଯାଇ କୁହାଯାଇଛି –

ପୁରାକଳ୍ପେ ଗୟଚାସୀଦ୍ ଦୈତ୍ୟପରମଧାର୍ମିକଃ,
ମହାବଳୋ ମହାକାୟଃ ଶୁଭଗଃ ଶୁଭକାରକଃ ।

(ବି.ମା, ୧୭/୧୯)

ଅର୍ଥାତ୍ ପୂର୍ବକାଳରେ ଗୟ ନାମକ ଗୋଟିଏ ଅସୁର ଥିଲା । ସେ ବଡ଼ ଧାର୍ମିକ, ମହାବଳଶାଳୀ, ବିଶାଳ ଶରୀର, ସୁନ୍ଦର ଓ ମଂଗଳ କାର୍ଯ୍ୟମାନଙ୍କର କର୍ତ୍ତା ସାଜିଥିଲା । ସେ ଏ ପୃଥିବୀରେ ଲୋକହିତକର କାର୍ଯ୍ୟ କରିବା ପାଇଁ ସବୁବେଳେ ଲାଗି ରହିଥିଲା ।

ସେଇଥିପାଇଁ ଲୋକେ ତାକୁ ଧର୍ମଙ୍କ ସହିତ ତୁଳନା କରୁଥିଲେ । ଲୋକଙ୍କର ମନେହେଉଥିଲା ସତେ ଯେମିତି ଧର୍ମ ଲୋକଙ୍କର ମଙ୍ଗଳ କରିବା ପାଇଁ 'ଗୟ' ରୂପରେ ଜନ୍ମ ହୋଇଛନ୍ତି । କଠୋର ତପସ୍ୟା ଓ ବେଦପାଠ କରିବାରେ ସେ ସଦାସର୍ବଦା ଆସକ୍ତ ଥିଲା । ଗୟର ଚରିତ୍ର ସଂପର୍କରେ କହିବାକୁ ଯାଇ ବ୍ରହ୍ମାଣ୍ଡ ପୁରାଣ କହନ୍ତି,

ବିନୀତ ସର୍ବଭୂତେଷୁ ଦୈତ୍ୟାଚାର ବିବର୍ଜିତଃ,
ତେଜସା ସୂର୍ଯ୍ୟସଂକାଶଃ କ୍ଷମୟା ପୃଥିବୀସମଃ ।

(ବି.ମା, ୧୭/୧୧)

ସମଗ୍ର ପ୍ରାଣୀମାନଙ୍କ ମଧ୍ୟରେ ସେହି ଶିକ୍ଷିତ ଅସୁର, ଅସୁରପରି ଆଚରଣ କରୁନଥିଲା । ସେ ସୂର୍ଯ୍ୟଙ୍କ ପରି ମହାତେଜସ୍ୱୀ ଓ ସହିଷ୍ଣୁତା ଗୁଣରେ ପୃଥିବୀପରି ଥିଲା ।

ଗୟାସୁରର ରୂପକାନ୍ତି ଓ ଚରିତ୍ରକୁ ବିସ୍ତାରିତ କରିବା ପାଇଁ ଆଉ ତିନିଗୋଟି ଶ୍ଳୋକପ୍ରଦତ୍ତ ହୋଇଛି, ଯଥା–

କାନ୍ତ୍ୟା ଚନ୍ଦ୍ରଇବାହ୍ଲାଦୀ ଦାନଶୌଣ୍ଡଃ ପ୍ରତାପବାନ୍,
ଶସ୍ତ୍ରେ ଚାସ୍ତ୍ରେ ଚ ଶାସ୍ତ୍ରେ ଚ ତମନୁ ପ୍ରଯଯୁନହି ।୧୨।
ଉପପନ୍ନୋ ଗୁଣୈଃ ସର୍ବୈଃ ସୂର୍ଯ୍ୟାଣାଂ ଦ୍ୟୁତିମାଦଧୌ,
ତେଜାଂସି ତସ୍ୟ ଦୃଷ୍ଟ୍ୱା ଚ ସର୍ବେ ସୁରଗଣାସ୍ତଦା ।୧୩।
ଇନ୍ଦ୍ରୋ–ବହ୍ନି–ଯମୋବାୟୁଃ କୁବେରୋ ଦିନନାୟକଃ,
ଅପାଂ–ପତି–ର୍ନଗେଶୋ ବୈ ବାଗୀଶେନାନ୍ୱମନ୍ତ୍ରୟନ୍ ।୧୪।

(ବି.ମା, ୧୭/୧୨–୧୪)

ଏହି ତିନିଗୋଟି ଶ୍ଳୋକରେ କୁହାଯାଇଛି ଯେ, ସେ କାନ୍ତିରେ ଚନ୍ଦ୍ରମାପରି ଆନନ୍ଦଦାୟକ, ମହାଦାନୀ, ପ୍ରତାପଶାଳୀ, ଶସ୍ତ୍ରବିଦ୍ୟା, ଅସ୍ତ୍ରବିଦ୍ୟା ଓ ନାନାଶାସ୍ତ୍ରରେ ପ୍ରବୀଣ ହୋଇଥିଲା । ଲୋକମାନେ ତା'ର ଗୁଣମାନଙ୍କୁ ଅନୁକରଣ କରିବାକୁ ଅକ୍ଷମ ହେଉଥିଲେ । ଏହିପରି ସକଳଗୁଣର ଆଧାର ହୋଇ ଅସୁର ଦ୍ୱାଦଶ ସୂର୍ଯ୍ୟଙ୍କର ତେଜକୁ ଧାରଣ କହିଥିଲା । ଚନ୍ଦ୍ର, ଅଗ୍ନି, ଯମ, ବାୟୁ, କୁବେର, ସୂର୍ଯ୍ୟ, ବରୁଣ ଓ ଅନନ୍ତ ପ୍ରଭୃତି ଦେବତାମାନଙ୍କର ମନରେ ମହାଭୟ ଜାତ ହେବାରୁ ସେମାନଙ୍କର ବର୍ଣ୍ଣ ମଳିନ ହୋଇଯାଇଥିଲା ।

ଆଶଙ୍କିତ ଦେବଗଣ କ'ଣ କରିବେ ବୋଲି ଦେବଗୁରୁ ବୃହସ୍ପତିଙ୍କ ପାଖକୁ ଯାଇ ପରାମର୍ଶ ଲୋଡ଼ିଛନ୍ତି । ପୁରାଣମାନଙ୍କରେ ଦେଖାଯାଇଛି ଯେତେବେଳେ ମର୍ତ୍ତ୍ୟମଣ୍ଡଳରେ କେହିଜଣେ ବଳଶାଳୀ ହେଇଉଠେ, ସେତେବେଳେ ଦେବତାମାନେ ଭୟକରି ଆଶଙ୍କିତ ହୋଇ ନିଜର ସୁରକ୍ଷା ପାଇଁ ବ୍ୟବସ୍ଥା କରନ୍ତି । ଲକ୍ଷ୍ୟ କଲେ ଦେଖାଯିବ, ଦେବତାମାନେ ନିଜ ସ୍ୱାର୍ଥରକ୍ଷା ପାଇଁ ଅତ୍ୟନ୍ତ ବ୍ୟାକୁଳ ହୋଇଥାଆନ୍ତି । ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଦେବରାଜ ଇନ୍ଦ୍ର ବେଶି ବ୍ୟାକୁଳ ହୋଇଉଠନ୍ତି, କାଳେ ତାଙ୍କର ଦେବରାଜ ପଦ କେହି ନେଇଯିବ କି ? ସ୍ୱର୍ଗ ସିଂହାସନ ତାଙ୍କର ହାତରୁ ଖସି ଯିବ କି ? ଏଥର ମଧ୍ୟ ସେଇଆ ହୋଇଛି । ଦେବତାମାନେ ସମସ୍ତେ ଏକାଠି ହୋଇ କାଶୀଧାମକୁ ଯାଇଛନ୍ତି । ସେଠାରେ ସର୍ବଦା ବିରାଜମାନ କରନ୍ତି ଗରୁଡ଼ଧ୍ୱଜ ହରି ଓ ବୃଷଧ୍ୱଜ ଶ୍ରୀହର ।

କାଶ୍ୟାଂ ଚୈବ ସମାସୀନୌ ବୈନତେୟ–ବୃଷଧ୍ୱଜୌ ।

(ବି.ମା, ୧୭/୧୬–୧/୨)

ଦେବତାମାନେ ଶ୍ରୀହରିଙ୍କୁ ପ୍ରାର୍ଥନା କରି କିଛି ପ୍ରତିକାର କରିବା ପାଇଁ ଅନୁରୋଧ କରିଛନ୍ତି । ଦେବତାମାନଙ୍କର ଅନୁରୋଧ ଶୁଣି ଶ୍ରୀହରି କହିଛନ୍ତି,

ସ ଚ ଦୈତ୍ୟୋ ମହାବାହୁସ୍ତପସା ଦୀପ୍ୟତେ ଭୃଶମ୍
ଅଦାସ୍ୟତେ ବୈ ସର୍ବେଷାମଧିକାର ସ୍ୱତେଜସା
ଅହିଂସୟା ବିଶେଷାଦ୍ଧପି ତପଶ୍ଚୋଗ୍ରଂତପସ୍ୟତି ।
(ବି.ମା, ୧୭–୧୮, ୧୯–୧/୨)

ମହାବାହୁ ! ସେହି ଗୟାସୁର ତପସ୍ୟାରେ ଅତ୍ୟନ୍ତ ଦୀପ୍ତିଲାଭ କରିଅଛି । ସେ ନିଜ ତେଜରେ ସମସ୍ତଙ୍କର ଅଧିକାରକୁ ହରଣ କରିବ । ସେ ସଂପୂର୍ଣ୍ଣ ଅହିଂସାବ୍ରତ ଅବଲମ୍ବନ କରି କଠୋର ତପସ୍ୟା କରୁଅଛି ।

ପୁଣି ଶ୍ରୀହରି ଦେବତାମାନଙ୍କୁ କହିଛନ୍ତି –

ସେହି ମହାତ୍ମା ଗୟାସୁରକୁ ଯୁଦ୍ଧରେ ପରାସ୍ତ କରିବାକୁ ଆମ୍ଭେମାନେ ଅସମର୍ଥ । ତେବେ ତାହାର ମୃତ୍ୟୁର ଉପାୟ ଆମ୍ଭମାନଙ୍କୁ କରିବାକୁ ହେବ । ତା'ର ସନ୍ତୋଷ ପାଇଁ ଆମ୍ଭେମାନେ ସମସ୍ତେ ଯାଇ ତାହାର ସ୍ତୁତି କରିବା । ତେବେ ସେ ଶୀଘ୍ର ଦେହତ୍ୟାଗ କରିବ । ଅନ୍ୟଥା ଆଉ କିଛି ଉପାୟ ନାହିଁ ।

ଶ୍ରୀହରିଙ୍କ ପରାମର୍ଶରେ ତାଙ୍କୁ ଆଗରେ ରଖି ଦେବତାମାନେ ପହଂଚିଛନ୍ତି ଗୟାସୁର ନିକଟରେ । ସମସ୍ତେ ମିଶି ଗୟାସୁରର ପ୍ରଶଂସା କରିଛନ୍ତି । ତା'ର ଜୟଗାନ କରିଛନ୍ତି । ଗୟାସୁର ବିଚାର କରିଛି,

କିଂମମାଦ୍ୟ ବିନାଶୋଦ୍ଧସ୍ତି କିଂ ମମାଦ୍ୟ ମହାଘର୍‌ୟତା,
ଭାବିନୀ ଧାତୃବିହିତା ଯତୋ ଦେବାଃ ସମାଗତାଃ ।
(ବି.ମା, ୧୭/୨୪)

ଆଜି ମୋର ବିନାଶକାଳ ଉପସ୍ଥିତ ହେଲା କି ? କିମ୍ବା ମୋର ଏ ଯୋଗ୍ୟ ସମାଦର ଆଜି ମିଳିଲା କି ? ଏହି ବିଚାର କରି ଗୟାସୁର ଅର୍ଘ୍ୟ ଅର୍ପଣ କରି ଦେବତାମାନଙ୍କୁ କହିଛି,

ଅଦ୍ୟମେ ସଫଳଂ ଜନ୍ମ ଅଦ୍ୟମେ ସଫଳଂ ତପଃ
ଅଦ୍ୟମେ ସଫଳା ଋଦ୍ଧିଃ ଅଦ୍ୟମେ ସଫଳାକ୍ରିୟାଃ ।
ଯ ଏବ ଯଜ୍ଞୋ ଯଷ୍ଟା ଚ ଯଜ୍ଞଭୁକ୍ ଯଜ୍ଞସାଧକଃ
ଯଜ୍ଞାନ୍ତକାରୀ ବିଶ୍ୱାତ୍ମା ସ ପୁରସ୍ତୋ ସମାଗତଃ ।
(ବି.ମା, ୧୭/୨୬–୨୭)

ଆଜି ମୋର ଜନ୍ମ ସଫଳ ହୋଇଛି । ଆଜି ମୋର ତପସ୍ୟା କରିବା ସାର୍ଥକ ହୋଇଛି । ଆଜି ମୋର ସଂପଦ ସାର୍ଥକ ହୋଇଛି । ମୋର ସମସ୍ତକର୍ମ ସାର୍ଥକ ହୋଇଛି । ଯେଉଁ ହରି ଯଜ୍ଞପୁରୁଷ, ଯଜ୍ଞକର୍ତ୍ତା, ଯଜ୍ଞାଂଶଭୋଗୀ, ଯଜ୍ଞସଂପଦ ସଂପାଦନକାରୀ, ଯଜ୍ଞାବସାନକର୍ତ୍ତା ଓ ଅନ୍ତର୍ଯ୍ୟାମୀ ପୁରୁଷ – ସେହି ହରି ଆଜି ମୋ ଆଗରେ ଛିଡ଼ା ହୋଇଛନ୍ତି ।

ଗୟାସୁର ବହୁ ଭାବରେ ଶ୍ରୀହରିଙ୍କର ଗୁଣଗାନ କରିଛି ଓ ସମସ୍ତଙ୍କୁ ଆସିବାର କାରଣ ପଚାରିଛି ।

ଅସୁରେଶ୍ୱର ଗୟାସୁରକୁ ଉତ୍ତର ଦେବାକୁ ଯାଇ ଶ୍ରୀହରି କହିଛନ୍ତି, ହେ ଅସୁରରାଜ ! ବାସ୍ତବିକ୍ ତୁମ୍ଭେ ଧନ୍ୟବାଦାର୍ହ । ଯେଣୁ ତୁମେ ଅସୁର କୁଳରେ ଜନ୍ମିଲେ ମଧ୍ୟ ତୁମଠାରେ ଆସୁରିକ ବ୍ୟବହାର ଲେଶମାତ୍ର ନାହିଁ । ସତ୍‌କାର୍ଯ୍ୟରେ ତୁମର ପ୍ରବୃତ୍ତି ଜନ୍ମିଛି । ତେଣୁ ତୁମ ମୁଖରୁ ଏହି ସାଧୁକଥା ବାହାରୁଛି । ହେ ଅସୁରମଣି ! ଆଜି ଆମ୍ଭମାନଙ୍କର ଗୋଟିଏ ମହତ୍‌କାର୍ଯ୍ୟ ଥିବାରୁ ତୁମ୍ଭ ନିକଟକୁ ଆସିଅଛୁଁ । ତୁମ୍ଭେ ସାହାଯ୍ୟ କରିବ ବୋଲି ଆମ୍ଭେମାନେ ଆଶା କରୁଛୁ ।

ଶ୍ରୀହରିଙ୍କ ମଧୁର ବଚନ ଶୁଣି ଗୟାସୁର ଯାହା କହିଛି ତାହା ଯେତିକି ଚମତ୍କାର ସେତିକି ତାତ୍ପର୍ଯ୍ୟପୂର୍ଣ୍ଣ । ଗୟାସୁର କହିଛି –

ଧନାନି ମମ ଯାବନ୍ତି ଦାରାଃ ପୁତ୍ରାଃ ଶରୀରକମ୍,
ନାଦେୟଂ ମମଦେବେଶ ! ତହି ବଦସ୍ୱ ସୁରେଶ୍ୱରଃ ।
ସତ୍ୟଂ ସତ୍ୟଂ ପୁନଃ ସତ୍ୟଂ – ନାଦେୟଂ ଚାସ୍ତି କିଂଚନ,
ଯସ୍ମୈ କିଂଚିତ୍ ପ୍ରଦତ୍ତଂ ତଦନନ୍ତାୟ ପ୍ରକଳ୍ପତେ ।
ଶୀଘ୍ରଂ ବଦ ସୁରଶ୍ରେଷ୍ଠ ନାଦେୟଂ ମମ କିଂଚନ,
ଇତ୍‌ଥମଙ୍ଗୀକୃତଂ ଜ୍ଞାତା ହରିରାହପ୍ରମୋଦୟନ୍ ।
(ବି.ମା, ୧୭/୩୭–୩୮)

ହେ ସୁରେଶ୍ୱର ! ମୋର ଯେତେ ସଂପଦ ଅଛି ତାହା ସବୁ, ମୋର ସ୍ତ୍ରୀ ପୁତ୍ର ଏବଂ ମୋର ଏ ଶରୀର ପର୍ଯ୍ୟନ୍ତ ଆପଣଙ୍କୁ ସମର୍ପଣ କରିବାକୁ ପ୍ରସ୍ତୁତ ଅଛି । ଆପଣଙ୍କୁ ନଦେବାର ପଦାର୍ଥ ମୋର କିଛି ନାହିଁ । ଆପଣଙ୍କର କ'ଣ ଆବଶ୍ୟକ କୁହନ୍ତୁ । ଯାହାଙ୍କୁ ସାମାନ୍ୟ କିଛି ଦାନଦେଲେ ତାହା ଯଥା ସମୟରେ କୋଟିଗୁଣରେ ଦାତା ନିକଟକୁ ଫେରିଆସେ, ଅର୍ଥାତ୍ ଲୋକ କୋଟିଗୁଣରେ ତାହା ଫେରିପାଏ, ସେହି ପ୍ରଭୁ ଆପଣ ।





ଗୟାସୁରର କଥା ଶୁଣି ଶ୍ରୀହରି ଆନନ୍ଦିତ ହୋଇଛନ୍ତି ଓ କହିଛନ୍ତି,

ମହାଯଜ୍ଞେ ପଶୁତ୍ୱଂ ଭୋ ! ଭାବିନୋଦ୍ଧସୁରସତ୍ତମମ୍ । (ବି.ମା, ୧୭/୪୦–୧/୨)

ହେ ଅସୁରରାଜ ! ତୁମେ ଆମ ମହାଯଜ୍ଞରେ ବଳିପଶୁ ହେବ । ଏତିକିମାତ୍ର ଆମ୍ଭମାନଙ୍କର ପ୍ରୟୋଜନ ।

ଶ୍ରୀହରିଙ୍କ ପ୍ରାର୍ଥନା ଶୁଣି ଅସୁରରାଜ ଗୟାସୁର ରୋମାଂଚିତ ହୋଇଉଠିଛି । ନିଜକୁ ଧନ୍ୟ ମନେକରି କହିଛି, ପ୍ରଭୋ ! ଆଜି ମୋର ଶରୀର ଧନ୍ୟ ହେଲା । ମୁଁ ଆପଣଙ୍କର ଆଦେଶ ପାଳନ ପାଇଁ ପ୍ରାର୍ଥୀ ହୋଇଥିଲି । ଆପଣ ଆଜି ତାହା ପୂରଣ କଲେ । ମୁଁ ଆପଣଙ୍କର ଯଜ୍ଞକାର୍ଯ୍ୟରେ ଏ ଶରୀରକୁ ତ୍ୟାଗ କରିବି । ଏଇଥିପାଇଁ ନିମ୍ନଲିଖିତ ତିନିଗୋଟି ଶ୍ଳୋକକୁ ଉଦ୍ଧାର କରାଯିବା ସମୀଚୀନ ହେବ ।

ଯୁଷ୍ମାଭିର୍ବଚନଂ କାର୍ଯ୍ୟଂ (ଗ୍ରାହ୍ୟଂ) ମମଚୈବ ବିଶେଷତଃ,
ପାଦ ନାଭି ଶିରାଂସ୍ୟେବ ପତିଷ୍ୟନ୍ତି ମହୀତଳେ ।
ଉତ୍ତମାନ୍ୟପି ତୀର୍ଥାନି ତ୍ରୈଲୋକେ ଦୁର୍ଲଭାନି ଚ,
ପିତୃନୁଦ୍ଦିଶ୍ୟ ଯେ ପିଣ୍ଡାଂ ସଂପ୍ରଯଚ୍ଛନ୍ତିତତ୍ର ଚ ।
ତେଷାଂ ଚ ପିତରଃ ସ୍ୱର୍ଗଂ ନରକସ୍ଥା ବ୍ରଜନ୍ତିବୈ,
ସ୍ୱର୍ଗସ୍ଥା ବ୍ରହ୍ମସଦନଂ ତସ୍ମାନ୍ମୁକ୍ତିଂ ବ୍ରଜନ୍ତି ବୈ ।
(ବି.ମା, ୧୭/୪୪–୧୬)

ଗୟାସୁର କହିଛି, ହେ ଦେବଗଣ ! ଆପଣମାନଙ୍କ ଆଜ୍ଞା ଅବଶ୍ୟ ପାଳନ କରିବି । ମାତ୍ର ଆପଣମାନଙ୍କ ଛାମୁରେ ମୋର ଗୋଟିଏ ବିଶେଷ ପ୍ରାର୍ଥନା ଅଛି । ଅନୁଗ୍ରହ ପୂର୍ବକ ତାହା ପୂରଣ କରିବେ । ଶରୀର ତ୍ୟାଗ ସମୟରେ ମୋର ପାଦ, ନାଭି ଓ ଶିର ପୃଥିବୀର ଯେଉଁ ଯେଉଁ ସ୍ଥାନରେ ପଡ଼ିବେ, ସେହି ସେହି ତୀର୍ଥସ୍ଥାନମାନଙ୍କରେ ଯେଉଁ ଲୋକମାନେ ପିତୃଗଣଙ୍କୁ ପିଣ୍ଡଦାନ କରିବେ ସେମାନଙ୍କର ପିତୃଗଣ ନରକ ଯନ୍ତ୍ରଣାରୁ ମୁକ୍ତି ଲାଭକରି ସ୍ୱର୍ଗଗାମୀ ହେବେ ଓ ସ୍ୱର୍ଗଲୋକରେ ଯେବେ ଥାଆନ୍ତି ତେବେ ବ୍ରହ୍ମଲୋକକୁ ଯାଇ ମୁକ୍ତିଲାଭ କରିବେ ।

ଅର୍ଥାତ୍ – ଯେତେବେଳେ ଗୟାସୁରର ପତନ ହେଲା, ତାହାର ପାଦଦୁଇଟି ମହେନ୍ଦ୍ର ପର୍ବତରେ ପଡ଼ିଲା । ତେଣୁ ଏହି ସ୍ଥାନଟି ପୁଣ୍ୟତୀର୍ଥରେ ପ୍ରସିଦ୍ଧ ହେଲା । ମହେନ୍ଦ୍ର ପର୍ବତ ଉତ୍ତମ ପିତୃତୀର୍ଥ ହେବାରୁ ମାର୍କଣ୍ଡେୟରାମ (ପର୍ଶୁରାମ) ଏବଂ ଅନ୍ୟାନ୍ୟ ମୁନିବରମାନେ ଅଦ୍ୟାପି ଏହି ସ୍ଥାନରେ ବାସ କରୁଛନ୍ତି । ଏହି ସ୍ଥାନରେ ଯେଉଁମାନେ ଶ୍ରାଦ୍ଧ କରନ୍ତି ସେମାନେ କୋଟି ତୀର୍ଥର ଫଳଲାଭ କରନ୍ତି ।

ଏହି ସ୍ଥାନରେ ପୁରାଣକାର ଗୋଟିଏ ଗୁରୁତ୍ୱପୂର୍ଣ୍ଣ କଥା ଉଲ୍ଲେଖ କରିଛନ୍ତି । ପୁରାଣକାର କହୁଛନ୍ତି – ତିନିକୋଟି ବା ଅର୍ଦ୍ଧକୋଟି ଯେଉଁସବୁ ତୀର୍ଥସ୍ଥାନମାନ ରହିଛି, ତହିଁରେ ସିଂହରାଶିରେ ବୃହସ୍ପତି ଅବସ୍ଥାନ କାଳରେ ଆଦିଗଙ୍ଗା ଗୋଦାବରୀ ନଦୀରେ ପ୍ରବେଶ କରନ୍ତି । ଯେଉଁ ବ୍ୟକ୍ତି ଗୋଦାବରୀରେ ସ୍ନାନକରି ପାଦଗୟା (ଗୋଦାବରୀ ନିକଟସ୍ଥ ପିଠାପୁରେ) ଶ୍ରାଦ୍ଧଦାନ କରନ୍ତି ତାଙ୍କର ୨୧ପୁରୁଷ ପର୍ଯ୍ୟନ୍ତ ପିତୃଗଣମାନେ ମୁକ୍ତିପାଇ ପ୍ରଳୟ ପର୍ଯ୍ୟନ୍ତ ସ୍ୱର୍ଗରେ ବାସ କରନ୍ତି ।

ଶିରୋଗୟା – ସେହି ବିରଜା ମାହାତ୍ମ୍ୟ ୧୭ ଅଧ୍ୟାୟରେ କୁହାଯାଇଛି,

ମାଗଧେଷୁ ଶିରସ୍ତସ୍ୟ ଫଲ୍‌ଗୁତୀର୍ଥ ସମୀପତଃ
ଗଦାଧରଃ ସ୍ୱୟଂଯତ୍ର ତୀର୍ଥଲୋଭାଦ୍ ବସତ୍ୟଥ ।
ରୁଦ୍ରାଷ୍ଟାହଂ ତଥ ଦେବାଃ ସର୍ବେତତ୍ରବସନ୍ତି ବୈ,
ପିତୃ–ମୂର୍ତ୍ତିଧରଃ ସାକ୍ଷାଦ୍ ପିଣ୍ଡମୂର୍ତ୍ତିଃ ଗଦାଧରଃ ।
ସର୍ବଲୋକ ହିତାର୍ଥାୟ କୁରୁତେ ପାଳୟନ୍ ହରିଃ,
ପିତୃନୁଦ୍ଦିଶ୍ୟ ଯେ ପିଣ୍ଡଂ ଗଦାଧରକରେନରାଃ ।
ଉତ୍ତରାୟନ୍ତ ନରକାଦ୍ ପୁରୁଷାନେକବିଂଶତିମ୍ ।

(ବି.ମା, ୧୭/୫୩–୫୬–୧/୨)

ଅର୍ଥାତ୍ ମଗଧ ଦେଶରେ ଫଲ୍‌ଗୁ ତୀର୍ଥ ନିକଟରେ ସେହି ଗୟାସୁରର ଶିର ପଡ଼ିଥିଲା । ତାହାକୁ ଶିରୋଗୟା କହନ୍ତି । ଯେଉଁ ତୀର୍ଥରେ ଲୋଭକରି ସ୍ୱୟଂ ଗଦାଧର ବାସକରି ଅଛନ୍ତି । ସାକ୍ଷାତ୍ ପିତୃରୂପୀ ଗଦାଧର ପିଣ୍ଡମୂର୍ତ୍ତି ଧାରଣ କରି ସକଳ ଲୋକର ହିତ କାମନା ପୂର୍ବକ ବିରାଜମାନ କରିଅଛନ୍ତି । ଯେଉଁଲୋକ ପିତୃଲୋକଙ୍କ ଉଦ୍ଦେଶ୍ୟରେ ଗଦାଧରଙ୍କ ହାତରେ ପିଣ୍ଡଦାନ କରନ୍ତି ସେମାନେ ନିଜର ୨୧ ପୁରୁଷଙ୍କୁ ଉଦ୍ଧାର କରନ୍ତି ।

ପିତୃଗାଥାରେ କୁହାଯାଇଛି ଯେ - ପିତୃଗଣମାନେ ଚାହାଁନ୍ତି ଯେ ତାଙ୍କ ବଂଶରେ ଜାତ କୌଣସି ଜଣେ ବ୍ୟକ୍ତି ଗୟାତୀର୍ଥକୁ ଯାଇ ପିଣ୍ଡଦାନ କରିବ କି ? ଯଅ ଛତୁରେ, ଗହମ ଅଟାରେ କିମ୍ବା ଯଅ ଗହମ ଯାଉରେ ଅଥବା ଇଂଗୁଦୀଫଳ କିମ୍ବା ବରକୋଳି ଫଳରେ ପିଣ୍ଡଦାନ କରିବ ଓ ବ୍ରାହ୍ମଣମାନଙ୍କୁ ଭୋଜନ ଦେବ ସେଇଥିପାଇଁ ବଂଶରେ ଏକ ପୁତ୍ର କାମନା ନକରି ବହୁପୁତ୍ର କାମନା କରିବା ଉଚିତ । କାରଣ ଯଦି ଗୋଟିଏ ପୁତ୍ର ଯାଇନପାରେ ତେବେ କୌଣସି ଗୋଟିଏ ପୁତ୍ର ଯାଇ ଗୟାରେ ପିଣ୍ଡଦାନ କରିବ ଓ ନୀଳବୃଷଭ ଦାନ କରିବ କିମ୍ବା ଅଶ୍ୱମେଧ ଯଜ୍ଞ କରି ପିତୃଗଣଙ୍କୁ ଉଦ୍ଧାର କରିବ ।

ଏବେ ଆସିବା ନାଭିଗୟା ପାଖକୁ । ଗୟାସୁରର ନାଭିପତନ ହୋଇଥିବା ସ୍ଥାନଟି ହିଁ ନାଭିଗୟା । ଏହି ସ୍ଥାନରେ ଅତୀତରେ ଭଗବତୀ ପାର୍ବତୀ ତପସ୍ୟା କରିଥିଲେ । ତାହାକୁ ମୃତ୍ୟୁଂଜୟ ତୀର୍ଥ କୁହାଯାଏ । ଏ ସ୍ଥାନ କେଉଁଠି ?

ବ୍ରହ୍ମାଣ୍ଡ ପୁରାଣ ବିରଜାତୀର୍ଥ ମାହାତ୍ମ୍ୟଖଣ୍ଡ ୧୮ ଅଧ୍ୟାୟ ଦଶମ ଶ୍ଳୋକରେ କୁହାଯାଇଛି,

ମନ୍ଦାକିନୀ ବୈତରଣ୍ୟାବାସାତେ ସର୍ବଦାବହେ,
ଦୃଷ୍ଟିମାତ୍ରାତ୍ ନରାଯାନ୍ତି ମର୍ତ୍ତ୍ୟଲୋକାତ୍ ସୁରାଳୟମ୍ ।

ଅର୍ଥାତ୍, ମନ୍ଦାକିନୀ ବୈତରଣୀ ଏ ଦୁହେଁଯାକ ସେଠାରେ ପ୍ରବାହିତ ହେଉଛନ୍ତି । ଏହି ସ୍ଥାନର ଦର୍ଶନ ମାତ୍ରକେ ଲୋକମାନେ ମର୍ତ୍ତ୍ୟପୁରରେ ନରକ ଯନ୍ତ୍ରଣାରୁ ଉଦ୍ଧାର ପାଇ ସ୍ୱର୍ଗକୁ ଯାଆନ୍ତି ।

ଏହି ନାଭିଗୟା କୂପ ଆକାରରେ ବିଦ୍ୟମାନ । ଏହି କୂପ ସମୀପରେ ଦେବୀ ଭଗବତୀ ପାର୍ବତୀ (ବିରଜା) ଅବସ୍ଥାନ କରନ୍ତି -

ତୀର୍ଥଲୋଭାଦ୍ ଭଗବତୀ ସଂସ୍ଥିତା କୂପସନ୍ନିଧୌ ।

(ଶ୍ଳୋକ, ୯-୧/୨)

ଏହି ନାଭିଗୟା ତୀର୍ଥରେ ଦୈନିକ ବହୁସଂଖ୍ୟକ ଶ୍ରଦ୍ଧାଳୁ ପିତୃଗଣଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରନ୍ତି । ବିଶେଷକରି ପିତୃପକ୍ଷ ଇନ୍ଦ୍ରପୂର୍ଣ୍ଣିମା ପର ପ୍ରତିପଦାଠାରୁ ମହାଳୟା ଅମାବାସ୍ୟା ପର୍ଯ୍ୟନ୍ତ ଭାରତର କୋଣ ଅନୁକୋଣରୁ ହଜାର ହଜାର ଶ୍ରଦ୍ଧାଳୁ ଏହି ପୁଣ୍ୟପୀଠରେ ଉପସ୍ଥିତ ହୋଇ ପିତୃଗଣଙ୍କୁ ପିଣ୍ଡଦାନ କରନ୍ତି ।

ଏହି ସଂକ୍ଷିପ୍ତ ଆଲୋଚନା ମଧ୍ୟରେ ଦେଖାଗଲା ଯେ ହିନ୍ଦୁ ପରଂପରାରେ ପିତୃଗଣଙ୍କୁ ଶ୍ରାଦ୍ଧ ଦେବାର ଗୁରୁତ୍ୱ ଖୁବ୍ ବେଶି । ହିନ୍ଦୁମାନେ ପୁନର୍ଜନ୍ମରେ ବିଶ୍ୱାସ କରନ୍ତି ଏବଂ ବିଶ୍ୱାସ କରନ୍ତି ଯେ ପିତୃଗଣ କେଉଁଠିନା କେଉଁଠି ଅମୋକ୍ଷ ଅବସ୍ଥାରେ ଅଛନ୍ତି । ତାଙ୍କୁ ବର୍ଷକୁ ଥରେ ତାଙ୍କର ମୃତ୍ୟୁ ତିଥିରେ ତ ଶ୍ରାଦ୍ଧ ପ୍ରଦାନ କରାଯାଏ । କିନ୍ତୁ ସେଥିରେ ସେମାନଙ୍କର ମୋକ୍ଷଲାଭ ହୁଏ ନାହିଁ । ଉପରୋକ୍ତ ତ୍ରି-ଗୟା ଅର୍ଥାତ୍ ତିନିଗୋଟି ଗୟା, ଯଥା- ପାଦଗୟା (ମହେନ୍ଦ୍ର ପର୍ବତର ପାଦଦେଶସ୍ଥ ପିଠାପୁର ଗୋଦାବରୀ ଘାଟ), ଶିରୋଗୟା - ମଗଧ ବା ଆଧୁନିକ ବିହାର ପ୍ରଦେଶର ଫଲଗୁତୀରସ୍ଥ ଆଧୁନିକ ଗୟାନଗର (ଏଠାରେ ୪୫ରୁ ଊର୍ଦ୍ଧ୍ୱ ସ୍ଥାନରେ ପିଣ୍ଡଦାନ କରିବାର ବ୍ୟବସ୍ଥା ରହିଛି) ଓ ନାଭିଗୟା ବିରଜାକ୍ଷେତ୍ର ଯାଜପୁର ବିରଜା ମନ୍ଦିରକୁ ଲାଗିରହିଥିବା ନାଭିକୂପ ଓ ବୈତରଣୀର ଦଶାଶ୍ୱମେଧ ଘାଟରେ ପିଣ୍ଡଦାନ କଲେ ପିତୃଗଣ ଉଦ୍ଧାର ପାଆନ୍ତି ଓ ସେମାନଙ୍କୁ ମୋକ୍ଷ ମିଳିଯାଏ ।

ଏ ଆଲୋଚନା କେବଳ ବ୍ରହ୍ମାଣ୍ଡ ପୁରାଣର ବିରଜାକ୍ଷେତ୍ର ମାହାତ୍ମ୍ୟମ୍ ଖଣ୍ଡକୁ ଆଧାରକରି କରାଯାଇଛି । ବହୁ ପୁରାଣରେ ମଧ୍ୟ ଏ ଗୟାସୁରର କାହାଣୀ ଓ ଗୟାତୀର୍ଥର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । ସମସ୍ତେ ଏକମତ ଯେ ଉପରୋକ୍ତ ତ୍ରି-ଗୟା ପିତୃଗଣଙ୍କ ପାଇଁ ମୋକ୍ଷତୀର୍ଥ ।

ବେଗନା, ଧନେଶ୍ୱର
କୋରାଇ, ଯାଜପୁର-୭୫୫୦୨୨



# କନ୍ଧମାଳ ଜିଲ୍ଲାରେ ଦଣ୍ଡନାଟ ପରମ୍ପରା

**ଇତାଶ୍ୱରୀ କୁମୁରା**

ପ୍ରକୃତି ରାଜ୍ୟ ବଣପାହାଡ ଘେରା ଛାଇଛଇଳ ଅଞ୍ଚଳ ମୃଦୁମନ୍ଦ ପବନ ବହିଲେ ସବୁଜ ବୃକ୍ଷର ଶାଖା ପ୍ରଶାଖା ଚଳଚଞ୍ଚଳ ହୋଇଥାଏ । ପକ୍ଷୀ ପକ୍ଷୀଣୀ ବୃକ୍ଷଶାଖାରେ ପରସ୍ପର ନୃତ୍ୟ କରନ୍ତି ବିଭିନ୍ନ ଭଙ୍ଗୀରେ । ଚଳଚଞ୍ଚଳ ବନ ଝରଣା ନୃତ୍ୟ ଛନ୍ଦରେ ଶିଳାଖଣ୍ଡର ଶିର ଚୁମ୍ବନ କରି କୁଳୁ କୁଳୁ ଧ୍ୱନି କରି ବହିଯାଉଥାଏ ଅରଣ୍ୟ ବକ୍ଷରେ । ସଦ୍ୟ ପ୍ରସ୍ଫୁଟିତ କୁସୁମ ସମୀରଣ ସ୍ପର୍ଶରେ ଢଳିଢଳି ମଦମତ୍ତ ଭ୍ରମର ସହିତ ନୃତ୍ୟରେ ମାତିଯାଆନ୍ତି ପ୍ରାଣ ପୁଲକରେ । ପ୍ରକୃତିର ଏହି ଶାଶ୍ୱତ ନୃତ୍ୟଶାଳା ବନ ଭୂମିରେ ବିଚରଣ କରୁଥିବା ଶବର ଶବରୀ, ସାନ୍ତାଳ, ସାନ୍ତାଳୀ, ଆଦିବାସୀ ଦମ୍ପତିଗଣ ପ୍ରାକୃତିକ ପରିବେଶର ପ୍ରେମପୂର୍ଣ୍ଣ ଇଙ୍ଗିତ ପ୍ରଦାନ କରି ବନଭୂମିର ଚଳାପଥରେ ମନଖୋଲା ସଂଗୀତ ଗାନ କରି ହାତ ଧରାଧରି ହୋଇ ଗତି କରିବା ସମୟରେ ନୃତ୍ୟ କରିଥାନ୍ତି ମନ ଆନନ୍ଦରେ । କେବଳ ବନଭ୍ରମଣ ଅବସରରେ ନୁହେଁ, କୃଷି କ୍ଷେତ୍ରରେ, ଶିକ୍ଷାୟତନ ଓ ଫେରନ୍ତି ପଥରେ ମନଖୁସିରେ ରସ ରସିଆ ଗୀତର ମଧୁର ସ୍ୱର ସଂଚାର କରି ନାଚି ନାଚି ଛପର ଛାଉଣୀ କୁଟୀର ମଧ୍ୟରେ ଉପସ୍ଥିତ ହୋଇଥାନ୍ତି । ଆଦିବାସୀ ଜୀବନର ଏହି ନୃତ୍ୟ ଏବଂ ଗୀତର ସମନ୍ୱୟରୁ ସୃଷ୍ଟି ଲୋକନୃତ୍ୟ ଏବଂ ଏହି ଲୋକନୃତ୍ୟର ସୁଦୃଢ ପାଚେରିକୁ ରଖିପାରିଛନ୍ତି ବନ ପାହାଡରେ ବାସ କରୁଥିବା ଓଡିଶାର ଆଦିବାସୀମାନେ । ସେଥିମଧ୍ୟରୁ ଓଡିଶାର କନ୍ଧମାଳ ଜିଲ୍ଲା ଅନ୍ୟତମ । ସବୁଜ ବନାନୀ ଘଞ୍ଚ ଅରଣ୍ୟରେ ଏହା ପରିବେଷ୍ଟିତ । କନ୍ଧମାଳ ଜିଲ୍ଲାର ନୈସର୍ଗିକ ସୌନ୍ଦର୍ଯ୍ୟ, ସୁସ୍ଥ ଜଳବାୟୁ ଘଞ୍ଚ ସବୁଜ ବନାନୀ ମଧ୍ୟରେ ଅଙ୍କାବଙ୍କା ହୋଇ ଲମ୍ବିଯାଇଥିବା ସର୍ପିଳ ପଥ, ପାହାଡିଆ ଅଞ୍ଚଳରେ ଥିବା ଛୋଟବଡ ଘାଟି ହେଉଛି ପର୍ଯ୍ୟଟକମାନଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ । ସେଥିମଧ୍ୟରୁ ଦାରିଙ୍ଗିବାଡି ଓଡିଶାର କାଶ୍ମୀର ଭାବରେ ପ୍ରସିଦ୍ଧ । ଆଦିବାସୀ ଗ୍ରାମ୍ୟ ଜୀବନ ହେଉଛି କନ୍ଧମାଳ ଜିଲ୍ଲାର ପ୍ରାଚୀନ ସ୍ଥିତି । ପରମ୍ପରା, ସଂସ୍କୃତି, ଐତିହ୍ୟ ମନୋମୁଗ୍ଧକର ବିଭିନ୍ନ ପ୍ରକାରର ଆଦିବାସୀ ନୃତ୍ୟ, ଲୋକ ଗୀତ ପର୍ବପର୍ବାଣି, ବେଶ ପୋଷାକ, ଖଦ୍ୟାଭ୍ୟାସ ଓ ବାସଗୃହ ନର୍ମାଣ ଶୈଳୀ ଏହି ଜିଲ୍ଲାର ପ୍ରାଚୀନ ଆଦିବାସୀ ପରମ୍ପରା ଓ ସଂସ୍କୃତିର ଜ୍ୱଳନ୍ତ ଉଦାହରଣ ।

କନ୍ଧ ସଂପ୍ରଦାୟର ଲୋକମାନେ ହେଉଛନ୍ତି କନ୍ଧମାଳ ଜଲ୍ଲାର ପୁରୁଣା ଓ ମୁଖ୍ୟ ଆଦିବାସୀ । ଏଠାକାର ଆଦିବାସୀମାନେ ମାଟିପୂଜା, କାନ୍ଦୁଲ ପୂଜା, ବାଲିଯାତ୍ରା ମକର ଯାତ୍ରା, ରସଯାତ୍ରା, କାଳି ପୂଜା, ଦଶହରା, ରାମଲୀଳା, ଶିବରାତ୍ରୀ, ରଥଯାତ୍ରା, ଲକ୍ଷ୍ମୀପୂଜା, ଠାକୁରାଣୀ ଯାତ୍ରା, ବାରୁଣୀ କେନ୍ଦୁଯାତ୍ରା ଖୁବ ଧୂମଧାମ୍‌ରେ ପାଳନ କରନ୍ତି । ଏହି ପାରମ୍ପରିକ ପର୍ବ ମଧ୍ୟରେ କନ୍ଧମାଳ ଜିଲ୍ଲାର ଦଣ୍ଡଯାତ୍ରା ବେଶ୍ ପ୍ରସିଦ୍ଧ । ପାରମ୍ପରିକ ପର୍ବ ଭାବରେ ଏହି ଦଣ୍ଡନାଟ ଏବେ ମଧ୍ୟ ସ୍ଥିତି ବଜାୟ ରଖିପାରିଛି । ଗ୍ରାମ୍ୟ ବହୁଳ କନ୍ଧମାଳ ଜିଲ୍ଲା ପ୍ରତ୍ୟେକ ଗ୍ରାମର କୋଣ ଅନୁକୋଣେ ଏହି ଦଣ୍ଡନାଟ ପ୍ରସିଦ୍ଧ ହୋଇପାରିଛି । ଏହି ଦଣ୍ଡନାଟରେ ମଧ୍ୟ ଆଦିବାସୀ ଗ୍ରାମ୍ୟ ଜୀବନର ନିଛକ ପ୍ରତିଛବି ଦେଖିବାକୁ ମିଳେ ।

**ଦଣ୍ଡନାଟର ପ୍ରାଚୀନତା**

କନ୍ଧମାଳ ଜିଲ୍ଲାର ଲୋକନାଟ୍ୟ ପରମ୍ପରାରେ ଏହି ଦଣ୍ଡନାଟ୍ୟର ବିଶେଷତ୍ୱ ରହିଛି । ଏହି ନାଟଟି ଏହି ଅଞ୍ଚଳର




ସର୍ବାଧିକ ଲୋକପ୍ରିୟ ଅଟେ । ଏହା ସହିତ ଏହି ଅଞ୍ଚଳର ଏକ ସାଂସ୍କୃତିକ ପରମ୍ପରାରେ ଘନିଷ୍ଠଭାବେ ସଂପୃକ୍ତ । ଗ୍ରାମିଣ ଆଦିବାସୀଙ୍କର ବିଶ୍ୱାସ ରହିଛି ବ୍ୟକ୍ତିର ଅଭୀଷ୍ଟ ପୂରଣ ବା କାମନା ପରିପୂର୍ତ୍ତୀ ଉଦ୍ଦେଶ୍ୟରେ ଏହା ଅନୁଷ୍ଠିତ ହେଉଥିବାରୁ ଏହାକୁ କାମନା ଦଣ୍ଡ ରୂପେ ମଧ୍ୟ ଅଭିହିତ କରାଯାଏ । ଦଣ୍ଡନାଟ ସୃଷ୍ଟି ଇତିହାସ ସହିତ ଓଡିଶାରେ ଶୈବ ଉପାସନାର ଆଧ୍ୟାତ୍ମିକ ପରମ୍ପରା ଘନିଷ୍ଠ ଭାବରେ ସଂପୃକ୍ତ । ଭାରତୀୟ ଆଧ୍ୟାମିକ ପରମ୍ପରାରେ ଶିବ ସଂହାର କର୍ତ୍ତା ରୁଦ୍ରରୂପେ ପରିକଳ୍ପିତ ହେଲେ ହେଁ ସେ ଅଖଣ୍ଡ ବର ପ୍ରଦାନକାରୀ ଓ ମଙ୍ଗଳମୟ ରୂପେ ସର୍ବତ୍ର ପୂଜିତ । ଶିବଙ୍କୁ ସନ୍ତୁଷ୍ଟ କରି ନିଜର ମନସ୍କାମନା ପୂରଣାର୍ଥେ ଏହି ଦଣ୍ଡନାଟ ବିକାଶ ପ୍ରାପ୍ତ ହୋଇଥିବା ବିଶ୍ୱାସ । ଏହି ନାଟର ସୃଷ୍ଟି ଇତିହାସ ସହିତ ବହୁ ପୌରଣିକ ଓ ଲୋକ ବିଶ୍ୱାସ ମଧ୍ୟ ଜଡିତ । ଦଣ୍ଡନାଟର ଉତ୍ପତ୍ତି ସଂପର୍କରେ କବି ଭିକାରୀ ଚରଣ ଦାସ କହିଛନ୍ତି– ସତ୍ୟ ଯୁଗରେ ନୈମିଷାରଣ୍ୟର ଜଣେ ତପସ୍ୱୀଙ୍କ ନିକଟରେ ମାଧୁରୀ ନାମକ ଏକ ବାଳକ ବ୍ରହ୍ମ ଜ୍ଞାନ ଯୋଗ ସାଧନ କରୁଥିଲା । ସମସ୍ତ ବିଦ୍ୟା ସମାପନ କରି ସେ ସେଥିରେ ଦିନେ ଏପରି ଭାବରେ ନିମଗ୍ନ ରହିଲା ଯେ ଗୁରୁଙ୍କର ଭୋଜନ ପ୍ରସ୍ତୁତ କରିବାକୁ ଭୁଲିଗଲା । କ୍ଷୁଧାର୍ଥ ଗୁରୁ ଉପଯୁକ୍ତ ସମୟରେ ପହଞ୍ଚି ଏହା ଦେଖି ଯଷ୍ଟି ଦ୍ୱାରା ପ୍ରହାର କରନ୍ତେ ସେ ପ୍ରତିବାଦ ସ୍ୱରୂପ ଅଘୋରୀ ତପସ୍ୟାରେ ବସି ଦଗ୍ଧ ମନ୍ତ୍ର ଜପ କରିବା ଯୋଗୁଁ ଗୁରୁଙ୍କ ଶରୀର ଜ୍ୱଳନ୍ତ ହେବାକୁ ଲାଗିଲା । ଗୁରୁଦେବଙ୍କ ବିକଳ ଚିତ୍କାର ଶୁଣି ଅନ୍ୟ ମୁନୀ ଋଷିଗଣ ଉପସ୍ଥିତ ହୋଇ ମନ୍ତ୍ରପୂତ ଜଳ ସିଞ୍ଚନପୂର୍ବକ ଗୁରୁଙ୍କୁ ଜ୍ୱାଳାମୁକ୍ତ କଲେ ଏବଂ ମାଧୁରୀଠାରୁ ସମସ୍ତ ପ୍ରକାର ସିଦ୍ଧି ହରଣ କରି କୈଳାସ ପର୍ବତସ୍ଥ ଏକ ଗୁମ୍ଫାରେ ଲୁଚାଇ ଦେଲେ । କଳିଯୁଗରେ ଯେତେବେଳେ ପାପର ମାତ୍ରା ବୃଦ୍ଧି ହେଲା । ସେଥିରୁ ମୁକ୍ତ କରିବା ପାଇଁ ମହେଶ୍ୱର ପ୍ରିୟ ଶିଷ୍ୟ ନନ୍ଦୀ ଓ ଭୃକୁଟୀଙ୍କୁ ଡାକି ସେହି ସିଦ୍ଧି ପ୍ରଦାନ କରି କହିଲେ –

ବୋଇଲେ କଳିରେ ତାଣ୍ଡବ କର
ପାପ ଭାର ସବୁ ହୋଇବ ଦୂର
ଦଣ୍ଡର ଉତ୍ପତ୍ତି ଏହି ।

**ଦଣ୍ଡନାଟର ପାଳନ ବିଧି**

ଦଣ୍ଡନାଟ ଲୋକନାଟକ ଅନ୍ତର୍ଗତ ହେଲେ ବି ଏହାର ମନୋରଞ୍ଜନଧର୍ମୀ ଅଭିନୟ ଅପେକ୍ଷା ଉପାସନାର ପାଳନ ବିଧି ଅଧିକ କଷ୍ଟସାଧ୍ୟ । ତେର ଜଣ ଭକ୍ତ ବା ଭୋକ୍ତା ଏହାର ଉପାସକ । ପଣାସଂକ୍ରାନ୍ତିର ୧୩ ଦିନ ପୂର୍ବରୁ ଦଣ୍ଡନାଟ ପାଳନ ଆରମ୍ଭ । ବୈଶାଖ ମାସର ପ୍ରଥମ ଦିନରେ ଶେଷ ହେଉଥିବା ଏହି ଶୈବ ଉପାସନାର କାରଣ ଦର୍ଶାଇବାକୁ ଯାଇ ଓଡିଆ ଲୋକଗୀତ ଓ ଲୋକ କାହାଣୀର ରଚୟିତା ଡଃ କୁଞ୍ଜବିହାରୀ ଦାସ ବଙ୍ଗଳା ସାହିତ୍ୟ ପତ୍ରିକାରୁ ଉକ୍ତ ମତ ଉଦ୍ଧାର କରି କହିଛନ୍ତି, ବିଷୁବ ସଂକ୍ରାନ୍ତି ଦିନ ବୌଦ୍ଧମାନଙ୍କର ମହାମୁନି ମେଳା ହେଉଥିଲା । ହୁଏତ ତା'ର ପ୍ରଭାବ ପଶ୍ଚିମବଙ୍ଗର ଗମ୍ଭୀରା ଏବଂ ଓଡିଶାର ଚଡକ ପୂଜା ଓ ଦଣ୍ଡନାଟ ପ୍ରଭୃତି ଉପରେ ପଡିଥିବ । ଚୈତ୍ର ବୈଶାଖ ମାସରେ ଉପବାସ କରି ଶିବ ଆରାଧନା କଲେ ଧନଧାନ୍ୟ, ସନ୍ତାନ ଓ ଜାତି ଶ୍ରେଷ୍ଠତା ଲାଭ ହୁଏ ।

ଦଣ୍ଡରେ ତେର ଜଣ ଭୋକ୍ତାଙ୍କର ଦଣ୍ଡ ଠାକୁରଙ୍କ ପ୍ରତି ଭିନ୍ନ ଭିନ୍ନ ସେବା ବିଧି ନିର୍ଦ୍ଦେଶ କରାଯାଇଛି । ମନ୍ଦିରର ବଡପଣ୍ଡା ପରି ଏମାନଙ୍କ ମଧ୍ୟରେ ଥିବା ମୁଖ୍ୟ ଭୋକ୍ତାଙ୍କୁ ପାଟ ଭୋକ୍ତା କୁହାଯାଏ । ତାଙ୍କ ବ୍ୟତୀତ ଅନ୍ୟ ଭୋକ୍ତାମାନେ ଦେଉଳ ପଡିଆ, ଦଣ୍ଡସ୍ୱାମୀ, ନୀଳିଆ ପାତ୍ର, ଚଳିଆ ପାତ୍ର, ଗୋବରିଆ, ଦାନ୍ତକାଠିଆ ପାତ୍ର, ବେତୁଆ ପାତ୍ର, ଧୂପିଆ ପାତ୍ର, ବୀଣାକାର ଓ ପାଟ ଢୋଲିଆ ନାମରେ ପରିଚିତ କେବଳ ପୁରୁଷମାନେ ଦଣ୍ଡନାଟରେ ଅଂଶ ଗ୍ରହଣ କରନ୍ତି । କିନ୍ତୁ ମନସ୍କାମନା ପୂରଣ ଲାଗି ଦଣ୍ଡ ଠାକୁରଙ୍କ ନିକଟରେ ଉଭୟ ସ୍ତ୍ରୀ ଓ ପୁରୁଷ ଗୁହାରିଆ ପଡନ୍ତି । ଦଣ୍ଡୁଆ ଭୋକ୍ତାମାନେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କଠିନ ସଂଯମ ମଧ୍ୟରେ ଗତି କରନ୍ତି । ଦେହରେ ତେଲ ନ ଲଗାଇବା, ମୁଣ୍ଡ ନ କୁଣ୍ଡାଇବା, ଘରକୁ ନ ଯିବା ଏହାର ଅଂଶ ବିଶେଷ । ପାଟଭାକ୍ତା ଶେଷ ଦିନ ପର୍ଯ୍ୟନ୍ତ କେବଳ ଖଇପଣା ଖାଉଥିବା ବେଳେ ଅନ୍ୟ ଭୋକ୍ତାମାନେ ଦିନକୁ ଥରେ ଶିବଙ୍କ ପାଖରେ ନୈବେଦ୍ୟ ଅନ୍ନଭାଗ ଖାଇଥାନ୍ତି ।

ପ୍ରଥମ ଦିନ ଘଟ ପୂଜା ଆରମ୍ଭ ହୁଏ । ଏଥିଲାଗି ଶିବଙ୍କ ମନ୍ଦିର ସାମ୍ନାରେ କାମନା ଘର ନିର୍ମିତ ହୁଏ । ଘଟ ହେଉଛି କାମନା ଦେବୀଙ୍କ ପ୍ରତୀକ । ନୂଆ ଘଟରେ ପୁରୋହିତ ନଦୀ

ବା ପୋଖରୀରୁ ପାଣି ଉଠାନ୍ତି । ସମସ୍ତ ଭୋକ୍ତା ଏଥିରେ ଯୋଗ ଦିଅନ୍ତି । ଢୋଲ, ମହୁରୀ, ଝାଞ୍ଜ ବାଦ୍ୟ ବାଜୁଥାଏ । ମନ୍ଦିରର ଦେହୁରୀ ମଧ୍ୟ ସାଥୀରେ ଥାଏ । ଜଳପୂର୍ଣ୍ଣ ଘଟ କାମନା ଘରେ ସ୍ଥାପିତ ହେବା ପୂର୍ବରୁ ଭୋକ୍ତାମାନଙ୍କ ଗହଣରେ ଗ୍ରାମ ପରିକ୍ରମା ହୁଏ । ପ୍ରଥମେ ବର କିମ୍ବା ଅଶ୍ୱତ୍ଥ ବୃକ୍ଷମୂଳରେ ଘଟ ରଖି ପୂଜା କରାଯାଏ । ଗ୍ରାମର ମାନସିକଧାରୀମାନେ ଲିଆ, ଧୂପ, ଦୀପ, ଝୁଣା, ହଳଦି ଓ ଅକ୍ଷତ ଆଦିପୂଜା ଦ୍ରବ୍ୟ ଯୋଗାଇ ଦିଅନ୍ତି । ଶେଷରେ ଘଟ କାମନା ମନ୍ଦିରରେ ସ୍ଥାପନା ହୁଅନ୍ତି । ଏଥି ସହ ଶିବ ମନ୍ଦିର କିମ୍ବା ଦଣ୍ଡର ସଂକେତ ରୂପେ ପୂଜା ପାଉଥିବା ଦୁଇଟି ଚିଲମ ମଧ୍ୟ ଖଟୁଲି ଉପରେ ରଖି କାମନା ଘରେ ପୂଜା କରାଯାଏ । ଯଜ୍ଞପରି ଏକ କୁଣ୍ଡରେ ସର୍ବଦା ଅଗ୍ନି ଜଳୁଥାଏ ।

### ଦଣ୍ଡନାଟର ବିଭିନ୍ନ ପର୍ଯ୍ୟାୟ

ପ୍ରଥମ ଦିନ କାମନା ମନ୍ଦିରରୁ ଦଣ୍ଡ ଗ୍ରାମକୁ ବାହାରେ । ଢୋଲ, ମହୁରୀ ଓ ଝାଞ୍ଜ ବଜାଇ ବଜାଇ 'କଳାରୁଦ୍ର ମଣିକି ଭଜ ହେ' ଉଚ୍ଚାରଣ ସହ ଭୋକ୍ତାମାନେ ଗ୍ରାମର ପ୍ରଧାନଙ୍କ ଦ୍ୱାରରେ ପହଞ୍ଚନ୍ତି । ସେଠାରେ ଦଣ୍ଡକୁ ଭକ୍ତି ସହକାରେ ପୂଜା କରାଯାଏ । ପ୍ରଧାନଙ୍କ ଦ୍ୱାରରୁ ପୁରୋହିତ ଓ ଶେଷରେ ଦେହୁରୀଙ୍କ ଦ୍ୱାରରେ ଦଣ୍ଡ ପୂଜା ପାଆନ୍ତି । ଦଣ୍ଡୁଆମାନେ ନିକାଞ୍ଚନ ସ୍ଥଳୀରେ ଥିବା ବୃକ୍ଷ ମୂଳରେ ବିଶ୍ରାମ ନିଅନ୍ତି । ସନ୍ଧ୍ୟାବେଳେ ଗ୍ରାମବାସୀଙ୍କ ପ୍ରଦତ୍ତ ଅରୁଆ ଚାଉଳ ଓ ପନିପରିବା ରୋଷେଇ ହୁଏ । ପାଟଭୋକ୍ତା, ପାଣିଦଣ୍ଡୁଆ (କାଳିସୀ) ଏବଂ ଦେହୁରୀ ବ୍ୟତୀତ ଅନ୍ୟ ଭୋକ୍ତାମାନେ ଏହି ଅନ୍ନଭୋଗ ଗ୍ରହଣ କରନ୍ତି । କାମନା ଘର ଅଗ୍ନିକୁଣ୍ଡରୁ ଲଗାଯାଇଥିବା ଦୀପଦ୍ୱାରା ମଶାଲ ପ୍ରଜ୍ୱଳିତ ହୁଏ ଏବଂ ଏଥିରେ ଝୁଣା ମରାଯାଇଥାଏ । ବାଦ୍ୟ ନିନାଦ ଓ 'କଳାରୁଦ୍ର ମଣିକି ଭଜ ହେ' ଧ୍ୱନିରେ ଭୋକ୍ତାମାନେ ଦଣ୍ଡ ଧରି ଗ୍ରାମ ମଧ୍ୟରେ ପ୍ରବେଶ କରନ୍ତି । ଦଣ୍ଡ ସ୍ଥାପନା ପରେ ରାତ୍ରୀରେ ଅଭିନୟ ଆରମ୍ଭ ହୁଏ । ନିରବଛିନ୍ନ ଭାବେ ତେରଦିନ କାଳ ଅନୁଷ୍ଠିତ ଦଣ୍ଡନାଟର ବିଭିନ୍ନ ପର୍ଯ୍ୟାୟ ରହିଛି । କ୍ରମାନୁସାରେ ସକାଳଠାରୁ ରାତ୍ରୀ ପର୍ଯ୍ୟନ୍ତ ଶିବଙ୍କୁ ସନ୍ତୁଷ୍ଟି ଲାଗି ଏହି ପର୍ଯ୍ୟାୟ ଅନୁସାରେ ଦଣ୍ଡ ଉପାସନା ଓ ନାଟ ପ୍ରଦର୍ଶନ କରାଯାଏ । ଦଣ୍ଡନାଟ ପ୍ରଦର୍ଶନରେ ସାଧାରଣତଃ ପାଞ୍ଚ ଗୋଟି ପର୍ଯ୍ୟାୟ ବା ସୋପାନ ରହିଛି । ସେଗୁଡିକ ହେଲା ଧୂଳିଦଣ୍ଡ, ପାଣିଦଣ୍ଡ, ବନଦଣ୍ଡ, ଅଗ୍ନିଦଣ୍ଡ ଏବଂ ନୃତ୍ୟଦଣ୍ଡ ।

ଦ୍ୱିତୀୟ ଦିନ ସକାଳେ ଭୋକ୍ତାମାନେ ଦଣ୍ଡଧରି ବାଜା ବଜାଇ ଓ 'କଳାରୁଦ୍ର ମଣିକି ଭଜହେ' (ଶିବ) ଜୟ ଜୟକାର ଧ୍ୱନି ଦେଇ ନିଜ ଗ୍ରାମ ତ୍ୟାଗ କରି ବରଣ କରିଥିବା ଅନ୍ୟ ଗ୍ରାମ ଅଭିମୁଖେ ଯାତ୍ରା କରନ୍ତି । ତେର ଜଣ ଭୋକ୍ତାଙ୍କ ବ୍ୟତୀତ ଅନ୍ୟ ମାନସିକଧାରୀ ଭକ୍ତମାନେ ମଧ୍ୟ ଏଥିରେ ଯୋଗ ଦିଅନ୍ତି । ସେମାନେ ଗ୍ରାମ ଦାଣ୍ଡରେ ଯାଉଥିବା ସମୟରେ ଯେଉଁ ଗୃହସ୍ଥ ନିଜ ଗୃହ ସମ୍ମୁଖରେ ପାଣିଢାଳ ଦିଏ କିମ୍ବା ଗୋବରରେ ଲିପି ଦିଏ ତା'ରି ଦାଣ୍ଡରେ ଦଣ୍ଡସ୍ଥାପନା କରାଯାଏ । ଗୃହସ୍ଥ ପ୍ରଦତ୍ତ ପୂଜା ସାମଗ୍ରୀକୁ ଦେହୁରୀ ଦଣ୍ଡ ସମ୍ମୁଖରେ ଭୋଗ ଲଗାନ୍ତି । ପୂଜା ପରେ ବୀଣାକାର ଶିବ କିମ୍ବା କାଳିକାଙ୍କ ସ୍ତୁତି ଗାନ କରାଯାଏ । ତା'ପରେ ଭୋକ୍ତା ବା ଦଣ୍ଡୁଆମାନେ ଦଣ୍ଡ ଧରି ବୃକ୍ଷଥିବା ଏକ ନିକାଞ୍ଚନ ସ୍ଥାନରେ ବିଶ୍ରାମ ନିଅନ୍ତି । ଦିନ ଦ୍ୱିପ୍ରହର ବେଳେ ଜଳୁଥିବା ନିଆଁ ବରିଆରେ ଝୁଣା ମାରିମାରି 'କଳାରୁଦ୍ର ମଣିକି ଭଜହେ' କହି କହି ଦଣ୍ଡ ସହ ଗୃହସ୍ଥର ଦ୍ୱାରକୁ ଆସନ୍ତି । ବାଦ୍ୟ ବାଜେ । ଦଣ୍ଡସ୍ଥାପନ ହୁଏ । ଆରମ୍ଭ ହୁଏ ଧୂଳିଦଣ୍ଡ । ଭୋକ୍ତାମାନେ ଦାଣ୍ଡର ଉତ୍ତପ୍ତ ବାଲି ଉପରେ ଗୃହସ୍ଥର ମଙ୍ଗଳ ଉଦ୍ଦେଶ୍ୟରେ ଶିବଙ୍କ ସନ୍ତୁଷ୍ଟି ଲାଗି ବିଭିନ୍ନ ଭଙ୍ଗୀରେ ଦଣ୍ଡ ପ୍ରଦର୍ଶନ କରନ୍ତି ।

ଶିବଭକ୍ତ ହୋଇଥିବାରୁ ଶିବଗଣରୂପେ ସେମାନେ ଶିବଙ୍କ କ୍ଷେତରେ ଚାଷର ଅଭିନୟ କରନ୍ତି । ଭୋକ୍ତାମାନେ ହଳ, ବଳଦ ଓ ହଳିଆ ହୋଇ ତାତିଲା ଭୂଇଁରେ ଶୋଇ, ହାମୁଡେଇ ଭୂମି ହଳ କରନ୍ତି । ଭୋକ୍ତାମାନେ କଷ୍ଟସାଧ୍ୟ ଅଭିନୟ ମାଧ୍ୟମରେ ଶିବଙ୍କ କ୍ଷେତରେ ଚାଷ କରିବାର କାରଣ ହେଲା, ଶିବ ଲୋକ ବିଶ୍ୱାସରେ ଜଣେ ଗୃହୀ କୃଷକ । ପାର୍ବତୀ ତାଙ୍କ ଘରଣୀ । ବାସୁଆ ପବନା ଦୁଇ ବଳଦ । ଉତ୍ତର ବାଲେଶ୍ୱରର ଜଳେଶ୍ୱରଠାରେ ମହାଦେବ ଅଛନ୍ତି । ତାଙ୍କ ମନ୍ଦିର ପ୍ରାଙ୍ଗଣରେ ପଥର ନିର୍ମିତ ବାସୁଆ ପବନା ଏବଂ ପଥର ନିର୍ମିତ ଲଙ୍ଗଳ ରହିଛି । ସାଧାରଣରେ ପ୍ରଚଳିତ ବିଶ୍ୱାସର ରୂପାୟନ ଭୋକ୍ତାମାନଙ୍କ ଧୂଳି ଦଣ୍ଡରେ ଘଟିଥାଏ । ଧୂଳିଦଣ୍ଡ ଶେଷକରି ଭୋକ୍ତାମାନେ ନିକଟବର୍ତ୍ତୀ ଜଳାଶୟକୁ ପାଣିଦଣ୍ଡ ଲାଗି ଯାଆନ୍ତି । କୂଳରେ ଦଣ୍ଡ ସ୍ଥାପନା ହୁଏ । ଭୋକ୍ତାମାନେ ସ୍ନାନ

କରନ୍ତି । ସେମାନଙ୍କ ମଧ୍ୟରୁ ଯାହାଙ୍କଠାରେ ଠାକୁର ପ୍ରସନ୍ନ ହୁଅନ୍ତି ତାଙ୍କୁ କାଳିସୀ କୁହାଯାଏ । ତେର ବୁଡ ପକାଇ ପାଣି ମଧ୍ୟରେ ଭୋକ୍ତାମାନେ ପରସ୍ପର କାନ୍ଧଉପରେ ଠିଆ ହୋଇ ଦେଉଳନିର୍ମାଣ କରନ୍ତି । ପାଣିରେ ବୁଡି ଆଞ୍ଜୁଳାଏ ବାଲୁକା ଶିବ କୂଳରେ ଗଢନ୍ତି । ବାଲୁକା ଛତ୍ରତଳେ ସ୍ଥାପିତ ଦଣ୍ଡକୁ ଗ୍ରାମବାସୀଙ୍କ ଅର୍ପିତ ସାମଗ୍ରୀ ଅର୍ପିତ ହୁଏ । ଝୁଣା ମରାହୋଇ ଅଗ୍ନି ଖେଳ ପ୍ରଦର୍ଶିତ ହୁଏ । କଳା ରୁଦ୍ରମଣୀକି ଜୟ ହେ ଗାଇ ଗାଇ ସେମାନେ ଏକ ନିକାଞ୍ଚନ ବୃକ୍ଷ ସ୍ଥଳୀକୁ ଯାତ୍ରାକରନ୍ତି । ସେଠାରେ ଦଣ୍ଡଙ୍କ ନିକଟରେ ଲିଆପଣା ଖାଇ ଉପାସନା କରନ୍ତି । ପାଟ ଭୋକ୍ତା, କଳିସୀ ଏବଂ ଦେହୁରୀ ତେର ଦିନଯାକ କେବଳ ଲିଆପଣା ଖାଇ ଉପାସନା କରନ୍ତି । ପାଣିଦଣ୍ଡ ପରେ ନିକାଞ୍ଚନ ବୃକ୍ଷବହୁଳ ସ୍ଥାନରେ ଅବସ୍ଥାନକୁ ବନଦଣ୍ଡ ଭାବେ କଥିତ । ପ୍ରତିଦିନ ଗୋଟିଏ ଗୋଟିଏ ଗ୍ରାମର ନିକାଞ୍ଚନ ସ୍ଥାନରେ ଏହା ଅନୁଷ୍ଠିତ ହୁଏ । ମାନସିକ ବିଶ୍ରାମ ଓ ରାତ୍ରୀର ନୃତ୍ୟଦଣ୍ଡ ପାଇଁ ପ୍ରସ୍ତୁତି କାରଣରୁ ବନଦଣ୍ଡର ଆନଶ୍ୟକତା ରହିଛି । ଏହି ସ୍ଥଳୀରେ ଚୂଲି ନିର୍ମିତ ହୁଏ । ଗ୍ରାମବାସୀଙ୍କ ପ୍ରଦତ୍ତ ଅରୁଆ ଚାଉଳ ଏବଂ ପରିବା ଅକଟା ଅବଟା ଓ ତେଲଲୁଣ ନ ପଡି ରୋଷେଇ ହୁଏ । ରାତିର ପ୍ରଥମ ପ୍ରହର ପରେ ଲିଆପଣା ଖାଇଥିବା ତିନିଜଣଙ୍କ ବ୍ୟତୀତ ଅନ୍ୟ ଭୋକ୍ତାମାନେ ଶିବଙ୍କ ପ୍ରସାଦ ସ୍ୱରୂପ ରନ୍ଧା ଅନ୍ନ ଗ୍ରହଣ କରନ୍ତି । ଖାଇବା ପଦର୍ଥରୁ ବାଲି, ଗୋଡି, ଧାନ ବାହାରିଲେ କିମ୍ବା ପ୍ରସାଦ ସେବନ ସମୟରେ ବାହାର ଲୋକଙ୍କ ପାଟି ଶୁଭିଲେ ଭୋକ୍ତାମାନେ ପତରରୁ ଉଠି ଯାଅନ୍ତି । ତେଣୁ ଭୋକ୍ତାମାନଙ୍କ ଖାଦ୍ୟ ଗ୍ରହଣ ବେଳେ ଉଚ୍ଚ ନାଦରେ ବାଜା ବାଜୁଥାଏ । କିଛି ସମୟ ବିଶ୍ରାମ ନେଲାପରେ ଭୋକ୍ତାମାନେ ଦଣ୍ଡସହିତ ଗୃହସ୍ଥ ଭକ୍ତର ଗୃହ ଅଭିମୁଖେ ଯାତ୍ରା କରନ୍ତି । ପାଞ୍ଚଗୋଟି ନିଆଁ ବରିଆରେ ଝୁଣାମରା ଯାତ୍ରାକୁ ଅଗ୍ନିଦଣ୍ଡ କୁହାଯାଏ । ଗୃହସ୍ଥ ଦ୍ୱାରରେ ପାଟ ଦଣ୍ଡୁଆ ଓ ଅନ୍ୟମାନେ ଏହି ଅଗ୍ନିଦଣ୍ଡ ଧରି ବିଭିନ୍ନ ନୃତ୍ୟ ପ୍ରଦର୍ଶନ କରନ୍ତି । ଏହା ପରେ ଆରମ୍ଭ ହୁଏ ଦଣ୍ଡନାଟର ଶେଷ ପର୍ଯ୍ୟାୟ । ଦଣ୍ଡନୃତ୍ୟ ବା ସୁଆଙ୍ଗ ହଜାର ହଜାର ଜନତା ଦର୍ଶକ ଭାବରେ ସମବେତ ହୋଇଥାନ୍ତି । ଏହିପରି ଭାବରେ ପ୍ରଥମ ଦିନରୁ ଆରମ୍ଭ କରି ତେର ଦିନ ପର୍ଯ୍ୟନ୍ତ ଗୋଟିଏ ରୀତିନୀତିରେ ଏହି ନାଟଟି ୧୩ ଦିନ ପର୍ଯ୍ୟନ୍ତ ଚାଲେ ଏବଂ ଅନ୍ତିମ ଅର୍ଥାତ ପଣା ସଂକ୍ରାନ୍ତି ପୂର୍ବ ଦିନକୁ ମେରୁ ଦିବସ ମଧ୍ୟ କୁହାଯାଏ । ସେହିଦିନ ଭୋକ୍ତାମାନେ ନିଜ ଗାଁକୁ ଫେରି ଆସନ୍ତି । ଗାଁ ଦାଣ୍ଡରେ ଧୂଳିଦଣ୍ଡ ଓ ପରେ ପାଣିଦଣ୍ଡ ଶେଷ କରି କାମନା ଗୃହ ସମ୍ମୁଖରେ ରୁଣ୍ଡ ହୁଅନ୍ତି । ଷୋଡଶ ଉପଚାରରେ ଦଣ୍ଡଙ୍କ ପୂଜା ହୁଏ । କାଳିସୀଠାରେ କାମନା ଅବତରନ୍ତି । ସେଠାରେ ଅଧିଆ ପଡିଥିବା ସାଧାରଣ ଭକ୍ତଙ୍କ ମନସ୍କାମନାର ଉପାୟ କାଳିସୀ ବତାଇ ଦିଏ । ବାଦ୍ୟ ବାଜେ ଝୁଣା ଖେଳ ହୁଏ ।କାମନା ମନ୍ଦିର ସମ୍ମୁଖରେ ଦୁଇଟି ଖୁଣ୍ଟ ବା ମେରୁ ପୋତାଯାଏ । ତା ଉପରେ କାଠର ଶେଣି ବନ୍ଧାଯାଏ । ପାଟଭୋକ୍ତାର ଗୋଡ ଦୁଇଟିକୁ ବାନ୍ଧି କାଠର ଶେଣିରୁ ଓଲଟା କରି ଲଟକାଇ ଦିଆଯାଏ । ସମ୍ଭବତଃ କନ୍ଧମାନଙ୍କର ଖୁଣ୍ଟରେ ବନ୍ଧାହୋଇ ମଣିଷ ବଳି ଦିଆଯାଉଥିବା ମେରିଆ ଖୁଣ୍ଟରୁ ଆମ ଦେଶରେ ମେରି ଶବ୍ଦର ପ୍ରଚଳନ । ଏହା ସହିତ ସାଦୃଶ ଥିବାରୁ ଏହି ଖୁଣ୍ଟ ମେରୁ ଖୁଣ୍ଟ ନାମରେ ପରିଚିତ । ପାଟ ଭୋକ୍ତା ଉପରୁ ଓଲଟା ଝୁଲୁଥିବା ବେଳେ ତଳେ ଅଗ୍ନି କୁଣ୍ଡରେ ଝୁଣାମରା ଚାଲିଥାଏ ।

କିଛି ସମୟ ଝୁଲିବା ପରେ ପାଟ ଭୋକ୍ତାକୁ ଶେଣି ଉପରେ ବସାଇ ଦିଆଯାଏ । ସେଇଠି ବସି ସେ ଚତୁର୍ଦ୍ଦିଗକୁ କାମନା ଫଳ ପ୍ରତୀକ ଭାବେ ଆମ୍ବ ଫୋପାଡେ । ଦର୍ଶକମାନେ ଦେବୀଙ୍କ ପ୍ରସାଦ ଭାବରେ ତାହାକୁ ଗୋଟାନ୍ତି । କାମନା ଘରେ ହେଉଥିବା ଭୋଗ ଭୋକ୍ତାମାନେ ଗ୍ରହଣ କରନ୍ତି । ସନ୍ଧ୍ୟାବେଳେ ରନ୍ଧାଯାଇଥିବା ଅରୁଆ ଅନ୍ନ ଗ୍ରହଣ ପରେ ରାତ୍ରିରେ ଗ୍ରାମ ଦାଣ୍ଡରେ ଦଣ୍ଡନାଟର ଶେଷ ଅଭିନୟ ଅନୁଷ୍ଠିତ ହୁଏ । ଏ ଦିନ ଦଣ୍ଡନାଟ ଶେଷ ହୁଏ ।

ଚୈତ୍ର ପୂର୍ଣ୍ଣମୀଠାରୁ ବିଷୁବ ପଣା ସଂକ୍ରାନ୍ତି ପର୍ଯ୍ୟନ୍ତ ଦଣ୍ଡ ଉତ୍ସବ ପାଳନ କରାଯାଏ, କାରଣ ଚୈତ୍ର ଓ ବୈଶାଖ ଏହି ଦୁଇ ମାସକୁ ଶିବ ଉପାସନା ପାଇଁ ପ୍ରକୃଷ୍ଟ ବୋଲି କୁହାଯାଏ । ଏହି ମାସରେ ଶିବ ଆରାଧନା କଲେ ଧନ ଧାନ୍ୟ, ସନ୍ତାନ, ଜାତି ଶ୍ରେଷ୍ଠତା ଲାଭ ହୁଏ ବୋଲି ସଂହିତାରେ ଲିଖିତ । ଦଣ୍ଡନାଟ ମୁଖ୍ୟତଃ ଶାରୀରିକ ନାଟ । ଏଥିରେ ଶରୀର ସଂପୂର୍ଣ୍ଣ ସାଧନା କରାଯାଏ । ଦଣ୍ଡ ଶବ୍ଦର ଅର୍ଥ ହେଲା ସମୟ, ଶାସନ, ଠିଆହେବା, ବ୍ୟାୟାମ, ଶାସ୍ତି, ଚାରିହାତ ବିଶିଷ୍ଟ ପରିମାଣ ଇତ୍ୟାଦି । ଦଣ୍ଡର ଅନ୍ୟ ଏକ ଅର୍ଥ ହେଉଛି ପତାକା ଧ୍ୱଜ । ନାଟ୍ୟଶାସ୍ତ୍ର ରଚନା ହେବା ପୂର୍ବରୁ ଦଣ୍ଡନାଟର ସୃଷ୍ଟି । ପାଟ ଦଣ୍ଡୁଆ ହାତରେ ଯେଉଁ ଦୁଇଟି ମାଟିରେ ତିଆରି ଦଣ୍ଡ ଥାଏ,




ସେଥିରେ ନିଆଁ ସଂଯୋଗ କରି ଦଣ୍ଡୁଆମାନେ ନୃତ୍ୟ । କରନ୍ତି ତାକୁ ମଧ୍ୟ ଦଣ୍ଡ କୁହାଯାଏ । ତେଣୁ ପ୍ରକୃତରେ ନିଜ ଇଚ୍ଛାରେ ନିଜ ଶରୀରକୁ ଦଣ୍ଡିତ କରିବା ସହିତ ଅତି ସଂଯମର ସହ ନାଟ କରିବାକୁ ହିଁ ଦଣ୍ଡନାଟ କୁହାଯାଏ । ଏକ ନିର୍ଦ୍ଦିଷ୍ଟ ନିୟମ ଓ ଶୃଙ୍ଖଳା ଭିତରେ ଭୋକ୍ତାମାନେ ବାନ୍ଧିହୋଇ ଏକ ଉପାସନା କରୁଥାନ୍ତି । ଦଣ୍ଡନାଟରେ ଅଂଶ ଗ୍ରହଣ କରୁଥିବା ପ୍ରତ୍ୟେକ ବ୍ୟକ୍ତି ମହେଶ୍ୱର ଶିବଙ୍କଠାରୁ ବରପ୍ରାପ୍ତି ଆଶାରେ ସଂକଳ୍ପ କରିଥାନ୍ତି । ଗ୍ରାମ୍ୟ ସମାଜରେ ଆଶା ନିରାଶା, ଆକାଂକ୍ଷା, ହସ ପରିହାସ, ବ୍ୟଙ୍ଗ ପ୍ରଭୃତି ଦଣ୍ଡନାଟରେ ରୂପାୟିତ ହେବା ସଙ୍ଗେ ସଙ୍ଗେ ସେହି ଅଞ୍ଚଳରେ ସାଂସ୍କୃତିକ ଜାଗରଣ ଏବଂ ସାମାଜିକ ବିକାଶ ପାଇଁ ଏହା ସହାୟକ ହୋଇଥାଏ । ଏମାନଙ୍କର ଭାବାବେଗରୁ ଆପେ ଯେଉଁ ଗୀତ ସୃଷ୍ଟି ହୁଏ, ତାହାହିଁ ଦଣ୍ଡନାଟର ଅଭିନୟ ମଧ୍ୟରେ ପ୍ରତିଫଳିତ । ଅର୍ଥନୈତିକ, ସାମଜିକ, ଧାର୍ମିକ, ନୈତିକ ଓ କୃଷି ସମସ୍ୟାର ନିଖୁଣ ଚିତ୍ର ଦଣ୍ଡନାଟରେ ଦେଖିବାକୁ ମିଳେ । ଧୂଳିଦଣ୍ଡ ମାଧ୍ୟମରେ ଜମିରେ ହଳ ବୁଲାଇବା, ପାଣିଦେବା, ତଳି ପକାଇବା, ଧାନକଟା, ମନ୍ଦିର ନିର୍ମାଣ କାର୍ଯ୍ୟ ଚାଲିଥିବା ସମୟରେ ଗୀତ ଓ ନୃତ୍ୟ ମଧ୍ୟ ଚାଲିଥାଏ । କନ୍ଧମାଳ ଜିଲ୍ଲାରେ ଅନେକ ଶୈବ ପୀଠ ଦେଖିବାକୁ ମିଳେ । ଟିକାବାଲି ବ୍ଲକ୍ ଚକାପାଦ ଏକ ପ୍ରସିଦ୍ଧ ଶୈବକ୍ଷେତ୍ର । ଏଠାରେ ଶିବଙ୍କୁ ବିରୂପାକ୍ଷ ନାମରେ ଓ ଗଞ୍ଜାମ ଜିଲ୍ଲାର ବ୍ୟାଘ୍ର ବାହିନୀଙ୍କୁ ଶକ୍ତି ରୂପେ ପୂଜା କରାଯାଉଛି । ତେଣୁ ଫୁଲବାଣୀ ଚକାପାଦରୁ ଦଣ୍ଡର ଉତ୍ପତ୍ତି ହୋଇଥିବା ଅନୁମାନ କରାଯାଏ । ଯାହାର ପ୍ରତିଫଳନ ସ୍ୱରୂପ ଏ ଅଞ୍ଚଳରେ ଦେଖିବାକୁ ମିଳିଥାଏ ।

ବାଲିଗୁଡା ଅଞ୍ଚଳର ଅନ୍ୟ ଏକ ଆକର୍ଷଣ ହେଉଛି ଅଷ୍ଟଶମ୍ଭୁ ଯାତ୍ରା । ଏହା ଦଣ୍ଡ ଆରମ୍ଭର ପଞ୍ଚମ ଦିନରେ ଅନୁଷ୍ଠିତ ହୋଇଥାଏ । ଆଠଟି ଗ୍ରାମର ଦଣ୍ଡୁଆ ଏଥିରେ ଅଂଶଗ୍ରହଣ କରନ୍ତି ଏବଂ ଦିନରେ ଧୂଳିଦଣ୍ଡ କରିସାରିବା ପରେ ସଂଧ୍ୟା ସମୟରେ ଅଷ୍ଟଶମ୍ଭୁ ମନ୍ଦିର ସମ୍ମୁଖରେ ଆଳତି ହୁଏ । ପ୍ରତ୍ୟେକ ଗ୍ରାମବାସୀ ସେଠାରେ ଉପସ୍ଥିତ ରୁହନ୍ତି ଏବଂ ଭଗବାନଙ୍କଠାରୁ ଆଶୀର୍ବାଦ ଲାଭ କରନ୍ତି । ପ୍ରକୃତରେ ଅଷ୍ଟଶମ୍ଭୁ ଯାତ୍ରା ପରମ୍ପରାଟି ବେଶ୍ ନିଆରା ।

ଦଣ୍ଡନାଟକୁ ନୀରିକ୍ଷଣ କଲେ ଏଥିରେ ସମାଜ ସଂସ୍କାରର ଅନେକ ବୀଜ ନିହିତ ଥିବା ଲକ୍ଷ୍ୟ କରାଯାଏ । ଏହି ସଂସ୍କାର ସର୍ବଶ୍ରେଷ୍ଠ ଓ ସାଂପ୍ରତିକ ମାନଦଣ୍ଡରେ ଆଧୁନିକ ସମାଜରୁ ଅସ୍ପୃଶ୍ୟତା ଦୂରୀକରଣରେ ଏହାର ଆଦର୍ଶ ସର୍ବଦା ଅନୁକରଣୀୟ । ସଂପ୍ରତି ସମସ୍ତ ସଂପ୍ରଦାୟର ବ୍ୟକ୍ତି ଏଥିରେ ଅଂଶଗ୍ରହଣ କରୁଥିବାରୁ ଏହା ଗଣତନ୍ତ୍ରର ଏକ ଆଦର୍ଶ ନମୁନା । ଈଶ୍ୱରଙ୍କ ସନ୍ତାନ ଭାବରେ ଏହାର ଭୋକ୍ତାମାନେ ନିଜକୁ ପ୍ରତିପାଦିତ କରୁଥିବାରୁ ବିଶ୍ୱ ମୈତ୍ରୀର ସଂଦେଶ ଏଥିରେ ଥାଏ । ଚଢେୟା ଚଢେୟାଣୀ ନୃତ୍ୟ ପ୍ରସଙ୍ଗରେ ବିଧବା ବିବାହ ପ୍ରଥମେ ଦେଖା ଯାଉଛି । ଏହା ଆଧୁନିକ ଯୁଗର ପରିକଳ୍ପନା ନୁହେଁ । ପ୍ରାଚୀନ ଆଦିବାସୀ ପରମ୍ପରାରୁ ଆନୀତ ଆଦିବାସୀ ସମାଜରେ ଛାଡପତ୍ର ପୁନଃ ବିବାହ ଏବଂ ବିଧବା ବିବାହ ସାଧାରଣ ପ୍ରଥା । ସ୍ୱାମୀର ମୃତ୍ୟୁ ପରେ ଦିଅର ସହ ବିବାହ ନିଷିଦ୍ଧ ନୁହେଁ । ଏପରି ବିବାହ ସତ୍ତ୍ୱେ ଉଭୟ ସ୍ତ୍ରୀ ଓ ପୁରୁଷ ଶ୍ରମଜୀବୀ ହୋଇଥିବାରୁ ସେମାନଙ୍କ ପାରିବାରିକ ଜୀବନ ସୁଖମୟ ହୋଇଅଛି ।

ଗବେଷିକା, କିସ୍, କିଟ୍ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର, ପିନ୍– ୭୫୧୦୨୪






# ଓଡ଼ିଆ ଲୋକନାଟକର ଭିନ୍ନ ଭିନ୍ନ ରୂପ

ଡକ୍ଟର ଅକ୍ଷୟ କୁମାର ଗିରି

ଓଡ଼ିଆ ଲୋକନାଟକର ପରିସର ଅତ୍ୟନ୍ତ ବ୍ୟାପକ ତଥା ବିବିଧତାରେ ପରିପୂର୍ଣ୍ଣ । କେବଳ ନୃତ୍ୟ ସଙ୍ଗୀତ, ସଂଳାପ ନୁହେଁ ନାନା ସଂସ୍କାର, ଶୈଳୀ ଏବଂ ସାହଚର୍ଯ୍ୟରେ ଓଡ଼ିଆ ଲୋକନାଟକ ହୋଇଛି ଋଦ୍ଧିମନ୍ତ । ଲୀଳା, ମୋଗଲ ତାମସା, ଇତ୍ୟାଦି ପରି ଅନେକ ପ୍ରକାର ନୃତ୍ୟ ଗୀତ ମଧ୍ୟରେ ଓଡ଼ିଆ ଲୋକନାଟକର ଆତ୍ମିକ ତଥା ଆଙ୍ଗିକ ରୂପ ହୋଇଛି ଅନୁପମ ତଥା ଅତୁଳନୀୟ । ଲୋକନାଟକର ଏହିସବୁ ବିଭବମାନଙ୍କ ମଧ୍ୟରେ ଛଉନାଚ, ପାଲା, ଦାସକାଠିଆ, ପାଟୁଆ ଯାତ୍ରା, ଦଣ୍ଡନାଟ, ଘୋଡ଼ାନାଚ, ଡୁଏଟ୍ ଫାର୍ସ ଇତ୍ୟାଦି ଅନ୍ୟତମ । ସେହି ଶୈଳୀଗୁଡ଼ିକ ପୁଣି ପରସ୍ପର ସହ ଯେତିକି ଜଡ଼ିତ ସେତିକି ବିରୋଧାତ୍ମକ ।

**ଛଉ ନୃତ୍ୟ:** ଓଡ଼ିଆ ଲୋକନାଟକର ଅନ୍ୟ ବିଭବଠାରୁ ଛଉନୃତ୍ୟ ଗୋଟିଏ ନିର୍ଦ୍ଦିଷ୍ଟ କାରଣରୁ ଭିନ୍ନ । ସାଧାରଣତଃ ଲୋକନାଟକଗୁଡ଼ିକରେ ନୃତ୍ୟ, ସଂଳାପ ଏବଂ ଅଭିନୟ ଥିବାବେଳେ, ଛଉନୃତ୍ୟରେ ନୃତ୍ୟ ଓ ଅଭିନୟ ଥାଏ କିନ୍ତୁ ସଂଳାପ ନଥାଏ । ଓଡ଼ିଶାର ବିଭିନ୍ନ ସ୍ଥାନରେ ବିଭିନ୍ନ ଶୈଳୀର ଛଉ ଅଭିନୀତ ହୁଏ । ଛଉରେ ସାଧାରଣତଃ ମୁଖା ବ୍ୟବହାର ହୁଏ, କିନ୍ତୁ ମୟୂରଭଞ୍ଜ ଅଞ୍ଚଳରେ ଅଭିନୀତ ହେଉଥିବା ଛଉରେ ମୁଖା ବ୍ୟବହୃତ ହୁଏ ନାହିଁ । ଏଥିରେ ଅଭିନେତାମାନେ ପଶୁ, ପକ୍ଷୀ, ରାକ୍ଷସ ଇତ୍ୟାଦି ବିଭିନ୍ନ ଭୂମିକାରେ ଅଭିନୟ କରନ୍ତି । ଏହି ନୃତ୍ୟ ସମୟରେ ବୀରତ୍ୱସୂଚକ ବାଦ୍ୟ ପରିବେଷଣ କରାଯାଏ ।

ଏହି ନୃତ୍ୟରେ ବ୍ୟବହୃତ ହେଉଥିବା ବାଦ୍ୟମାନଙ୍କ ମଧ୍ୟରେ ଧୂମ୍ପସା, ଢୋଲ, ଯୋଡ଼ିମହୁରୀ, କାହାଳୀ ଇତ୍ୟାଦି ପ୍ରଧାନ । ଇତିହାସର ଅନୁସନ୍ଧାନରୁ ଜଣାଯାଏ ଯେ, ପୂର୍ବେ ଯୁଦ୍ଧଭୂମିର ଛାଉଣୀରେ ସୈନ୍ୟମାନଙ୍କର ମନୋରଞ୍ଜନ ପାଇଁ ଏହିପରି ବୀରତ୍ୱସୂଚକ ନୃତ୍ୟ ପରିବେଷିତ ହେଉଥିଲା । କ୍ରମେ ଏହା ଓଡ଼ିଆ ଲୋକନାଟକର ଏକ ଅବିଚ୍ଛେଦ୍ୟ ଅଂଶରୂପେ ସମଗ୍ର ପୃଥିବୀରେ ଭିନ୍ନ ଭିନ୍ନ ରୂପରେ ପରିବେଷିତ ହେବାରେ ଲାଗିଛି ।

**ପାଲା:** ପାଲା ଓଡ଼ିଆ ପଲ୍ଲୀଜୀବନର ଏକ ପରିଚିତ ପର୍ଯ୍ୟାୟ । କାହାର ପିଲାଟିଏର ଏକୋଇଶ ଦିନ ପୂଜା ପାଇଁ ହେଉ କିମ୍ବା କୌଣସି ମାନସିକ ପୂରଣ ପାଇଁ ହେଉ, ଏଥିପାଇଁ ସତ୍ୟପୀର ପାଲା ଅନୁଷ୍ଠିତ ହୋଇଥାଏ । ଏହା ଦୁଇଟି ଶୈଳୀରେ ପରିବେଷିତ ହୁଏ । ଗୋଟିଏ ବୈଠକ ପାଲା ଏବଂ ଅନ୍ୟଟି ଠିଆ ପାଲା । ସ୍ଥଳବିଶେଷରେ ବାଦିପାଲା । ପାଲାରେ ଜଣେ ଗାୟକ, ଜଣେ ବାୟକ (ବାଦକ) ଜଣେ ଶ୍ରୀପାଳିଆ ଏବଂ ଅନ୍ୟ ଦୁଇ ବା ତିନିଜଣ ସାଧାରଣ ପାଳିଆ ଥାଆନ୍ତି ।

ପାଲା, ପ୍ରାଥମିକ ଅବସ୍ଥାରେ କେବଳ ସତ୍ୟପୀରଙ୍କର ମାହାତ୍ମ୍ୟ ଜନସମାଜରେ ପ୍ରସାରିତ କରିବା ଲକ୍ଷ୍ୟରେ ପରିବେଷିତ ହେଉଥିଲା । ଗାୟକ ହାତରେ ଚାମର ଧରି ସମସ୍ତ ଦର୍ଶକଙ୍କୁ ସତ୍ୟପୀରଙ୍କର ଆଶୀର୍ବାଦ ନେବାପାଇଁ ସେମାନଙ୍କୁ ଆଧ୍ୟାତ୍ମିକ ବିମଳ ଆନନ୍ଦରେ ରସାପ୍ଲୁତ କରନ୍ତି । କ୍ରମେ ଏହି ପାଲା ଅତୀବ ଲୋକପ୍ରିୟ ହେବାରୁ ଏଥିରେ ସଂସ୍କୃତ ଓଡ଼ିଆ ବିଦଗ୍ଧ ସାହିତ୍ୟରୁ ଅନେକ ରସବନ୍ତ ଅଧ୍ୟାୟ ସମ୍ମିଶ୍ରିତ ହୋଇ ଯାଇଥିଲା । ଏପରିକି ଓଡ଼ିଆ ରୀତିଯୁଗର ଅନେକ ପ୍ରଖ୍ୟାତ କବି ଏହି ପାଲା ଶୈଳୀରେ ସେମାନଙ୍କର କାବ୍ୟକବିତା ସବୁ ରଚନା କରିଥିଲେ । ଏହି ପାଲାରେ ଋତୁ ବର୍ଣ୍ଣନା, ପ୍ରକୃତି ବର୍ଣ୍ଣନା,

ରୂପବର୍ଣ୍ଣନା ଆଦି ଘଟଣାକୁ ଗାୟକ ବିଭିନ୍ନ ବିଦଗ୍ଧ ସାହିତ୍ୟରୁ ଉଦାହରଣ ସଂଗ୍ରହ କରି ପରିବେଷଣ କରିଥାଆନ୍ତି । ଗାୟକ ପୁଣି ସଂସ୍କୃତରୁ ଓ ଓଡ଼ିଆ ବିଦଗ୍ଧ ସାହିତ୍ୟରୁ ନାନା ପ୍ରକାର ପ୍ରାସଙ୍ଗିକ ଛାନ୍ଦ ଚଉପଦୀ ଇତ୍ୟାଦି ଗାନକରି ତାକୁ ସୁନ୍ଦର ବୋଧଗମ୍ୟ ଭାଷାରେ ଜନସାଧାରଣଙ୍କୁ ବୁଝାଇ ଦିଅନ୍ତି । ବାୟକ ମୃଦଙ୍ଗ ବଜାଇ ସଙ୍ଗୀତର ଶ୍ରେଷ୍ଠତ୍ୱ ପ୍ରତିପାଦନ କରନ୍ତି । ଶ୍ରୀପାଳିଆ ଓ ଗାୟକଙ୍କୁ ମଝିରେ ମଝିରେ ବିଶ୍ରାମ ଦେବା ଲକ୍ଷ୍ୟରେ ମଞ୍ଚ ଉପରେ ଗୀତ ବୋଲା ଯାଇଥାଏ । ସାଧାରଣତଃ ଏହି ଗୀତଗୁଡ଼ିକ ଭକ୍ତିରସାତ୍ମକ ତଥା ପ୍ରାଚୀନ ରାଗରାଗିଣୀ ସମ୍ବଳିତ ହୋଇଥାଏ । ଅନ୍ୟ ପାଳିଆମାନେ କେବଳ ଗାୟକ ଗାନ କରୁଥିବା ପଦଗୁଡ଼ିକର ସୁନ୍ଦର ଶୈଳୀରେ ପାଳି ଧରନ୍ତି । ପାଲାର ମଝିରେ ଆବଶ୍ୟକ ହେଲେ, ସେହି ପାଳିଆମାନେ ସ୍ତ୍ରୀ ପୁରୁଷ, ବାଳକ, ଅସୁର ଇତ୍ୟାଦିର ଅଭିନୟ ମଧ୍ୟ କରନ୍ତି । ତେବେ ପାଲାରେ ଅନ୍ୟାନ୍ୟ ଲୋକନାଟ୍ୟ ପରି ଅଭିନୟର ମାତ୍ରା ଖୁବ୍ କମ୍ ।

ଏହାର ମଞ୍ଚ ଏକ ଖୋଲା ପରିବେଶ ମଧରେ ତିଆରି ହୁଏ । ମଞ୍ଚର ଚାରିପଟ ଖୋଲାଥାଏ । ଉପରେ ଚାନ୍ଦୁଆ ବା ଛାମୁଣ୍ଡିଆ ଆବରଣ ଥାଏ । ଗୋଟିଏ କୋଣକୁ ଶ୍ରୀସତ୍ୟପୀରଙ୍କୁ ସ୍ଥାପନା କରାଯାଇଥାଏ । ପ୍ରଥମେ ଶ୍ରୀପାଳିଆ, ବାଦକ ଏବଂ ଅନ୍ୟ ପାଳିଆମାନେ ମଞ୍ଚକୁ ପ୍ରବେଶ କରି ବାଦ୍ୟର ଝଙ୍କାର ଏବଂ ନାନା କୌତୁକ ପରିବେଷଣ କରିବା ପରେ ଗାୟକ ମଞ୍ଚକୁ ଆସି ବିଷୟ ଉପରେ ପରିବେଷଣ କରିଥାଆନ୍ତି । ଓଡ଼ିଆ ଲୋକନାଟକକୁ ପାଲା ସମୃଦ୍ଧ କରିବା ସହ ଓଡ଼ିଆ ପ୍ରାଚୀନ ରାଗିଣୀକୁ ଋଦ୍ଧିମନ୍ତ କରିବାରେ ଯେଉଁ ଅନବଦ୍ୟ ଭୂମିକା ନିର୍ବାହ କରି ଆସିଛି, ତାହାର ପଟ୍ଟାନ୍ତର ନାହିଁ ।

**ଦାସକାଠିଆ:** ଦାସକାଠିଆ ଏକ ବାଦ୍ୟର ନାମ । ଦୁଇଟି କାଠର କାଠିରେ କିଛି ଘୁଙ୍ଗୁର ଲାଗିଥିବା ବାଦ୍ୟଯନ୍ତ୍ରକୁ ଦାସକାଠିଆ କୁହାଯାଏ । ଏଥିରେ ଦୁଇଜଣ ଚରିତ୍ର ଭାଗ ନିଅନ୍ତି । ଜଣେ ମୁଖ୍ୟ ଗାୟକ ଅନ୍ୟ ଜଣେ ପାଳିଆ । ଅଧିକାଂଶ ଭାବରେ ସରଳ ସ୍ୱରରେ ଗୀତ ମାଧମରେ ଏମାନେ ଏକ ବିଷୟ ପରିବେଷଣ କରିଥାଆନ୍ତି । ଦର୍ଶକମାନଙ୍କର ମନୋରଞ୍ଜନ କରିବା ପାଇଁ ବେଳେବେଳେ ସେହି ଦୁଇଜଣ ଚରିତ୍ର ମଧ୍ୟ ବିଭିନ୍ନ ଭୂମିକାରେ ଅଭିନୟ କରିଥାଆନ୍ତି । ହାତରେ ଦାସକାଠିଆ 'ଠକ୍ ଠକ୍' ସ୍ୱରରେ ବଜେଇ ଗାୟକ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟ ଆରମ୍ଭ କରିବା ମାତ୍ରେ ପାଳିଆ ମଧ୍ୟ ଅନୁରୂପ ଭାବେ ଦାସକାଠିଆ ବଜେଇ ସେ ଗୀତର ଅବଶିଷ୍ଟ ଅଂଶ ପୂରଣ କରିଥାଆନ୍ତି । ଦକ୍ଷିଣ ଓଡ଼ିଶା, ବିଶେଷତଃ ଗଞ୍ଜାମ ଅଞ୍ଚଳରେ ଏହାର ପ୍ରସାର ଖୁବ୍ ଅଧିକ । ପାଲାପରି ଏହି ଦାସକାଠିଆ ମଧ୍ୟ ପ୍ରାଚୀନ ଓଡ଼ିଆ ଗୀତ ତଥା ଲୋକନାଟ୍ୟ ପରମ୍ପରାକୁ ବହୁ ଭାବରେ ସମୃଦ୍ଧ କରିଅଛି ।

**ପାଟୁଆ ଯାତ୍ରା:** ଏହି ପାଟୁଆମାନେ ହିଁ ପ୍ରକୃତ ଅର୍ଥରେ ଶୈବ । ଶିବ ପୂଜା ହିଁ ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଏହି ପାଟୁଆ ଯାତ୍ରାର ଉତ୍ପତ୍ତି ସମ୍ପର୍କରେ ଡଃ କୁଞ୍ଜବିହାରୀ ଦାଶ ଲେଖିଛନ୍ତି– ବୌଦ୍ଧତନ୍ତ୍ରର ଆସ୍ୱାଦ ଲୋକେ ଭୁଲି ପାରିଲେ ନାହିଁ । ଏହା ଶୈବଧର୍ମ ଭିତରେ ଶୈବତନ୍ତ୍ରରେ ଦେଖାଦେଲା । ଶୈବଧର୍ମର ନାଗା ସନ୍ନ୍ୟାସୀମାନେ ଶବ କଙ୍କାଳ ଉପରେ ସାଧନା କଲେ । କେତେକ ଉର୍ଦ୍ଧ୍ୱବାହୁ, ଆକାଶମୁଖୀ ହୋଇ, କେତେକ ବା ବୃକ୍ଷ ଶାଖାରେ ପଦ ଦୁଇ ବନ୍ଧନ କରି ଯଜ୍ଞକୁଣ୍ଡରେ ମୁଣ୍ଡ ଝୁଲାଇ ସାଧନା କରିବାକୁ ଲାଗିଲେ । ଶିବଙ୍କ ଅନୁଗ୍ରହ ଲାଭ ଏହି ସାଧନାର ଉଦ୍ଦେଶ୍ୟ । ଏହି ସଂପ୍ରଦାୟରୁ ପାଟୁଆ, ଚଡ଼କ ପୂଜା ଓ ଦଣ୍ଡନାଟର ଜନ୍ମ । ଏହି ଅନୁସାରେ ଦେଖାଯାଏ ପାଟୁଆମାନେ ନାଚନ୍ତି ଓ ଗୀତ ଗାଆନ୍ତି । ଗୀତରେ କେବଳ ଶିବପାର୍ବତୀଙ୍କର ସ୍ତୋତ୍ର ପାଠ କରାଯାଇଥାଏ । ସେମାନେ ଅଧିକାଂଶ ସମୟ ପ୍ରଚଣ୍ଡ ଖରାରେ ଓ ଅଗ୍ନି ମଧରେ ଚାଲିଚାଲି ପିଠିରେ ବେତ୍ର ପ୍ରହାର କରି ଶିବଙ୍କ ପ୍ରତି ନିଜର ଅଚଳାଭକ୍ତି ପ୍ରଦର୍ଶନ କରନ୍ତି । ଏହି ପାଟୁଆ ନାଟରେ ବାଦ୍ୟ ଭାବରେ କେବଳ ଢୋଲ ବ୍ୟବହାର କରାଯାଏ । ଏଥିରେ କିନ୍ତୁ ଅଭିନୟ ନଥାଏ । କେବଳ ଭକ୍ତି ଭାବରେ ତନ୍ମୟ ନୃତ୍ୟ ହିଁ ଏହାର ପ୍ରଧାନ କଥା ।

**ଦଣ୍ଡନାଟ:** ପାଟୁଆ ଯାତ୍ରାପରି ଦଣ୍ଡନାଟ ମଧ୍ୟ ଶିବଙ୍କ ଆରାଧନା ପାଇଁ ଉଦ୍ଦିଷ୍ଟ । ଏଥିରେ ତେରଜଣ ଭୋକ୍ତା ଥାଆନ୍ତି । ସେମାନେ ଘଟ ଧରି ଗାଆଁ ଗାଆଁ ବୁଲନ୍ତି । ଯାହାର ପୂର୍ବରୁ ମାନସିକ ଥାଏ, ତାଙ୍କର ଦାଣ୍ଡରେ ହିଁ ଦଣ୍ଡନାଟ ହୁଏ । କାହାର କୌଣସି ମାନସିକ ଯଦି ନଥାଏ ତେବେ ଶିବମନ୍ଦିର ସମ୍ମୁଖରେ ହିଁ ଏହି ଦଣ୍ଡନାଟ ହୁଏ । ନାଟୁଆମାନେ ଗୀତ ଗାଆନ୍ତି, ନାଚନ୍ତି । ନାଚ ଭିତରେ 'ପତର ସଉରା' ନାଚ ପ୍ରସିଦ୍ଧ । ଦଣ୍ଡନୃତ୍ୟର





ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ମା' କାଳୀ । ତେଣୁ ମଞ୍ଚରେ ଦଣ୍ଡନୃତ୍ୟ ଅଭିନୀତ ହେବା ପୂର୍ବରୁ ଢୋଲିଆ ଢୋଲ ବଜାଏ ଏବଂ ପ୍ରଥମେ କାଳୀଙ୍କ ନୃତ୍ୟ ହୁଏ । ତା'ପରେ ଫକୀର, ଫକିରୁଣୀ, ବାବାଜୀ, ଗୋପ, ଯୋଗୀ, ଚଢ଼େୟା, ଚଢ଼େୟାଣୀ, ପତ୍ରସୌରା, ପତ୍ରସୌରାମୀ, ବାଇଧନ ଓ ପରିଶେଷରେ ବୀଣାକାରିଆ ନାଚି ନାଚି ଆସନ୍ତି । ବୀଣାକାରିଆକୁ ବୀଣାର ଉତ୍ପତ୍ତି ସମ୍ବନ୍ଧରେ ବିଭିନ୍ନ ପ୍ରଶ୍ନ କରାଯାଇଥାଏ । ଏହି ଦଣ୍ଡନାଟ ଓଡ଼ିଶାର ସମ୍ବଲପୁର, ବଲାଙ୍ଗୀର ଆଦି ଅଞ୍ଚଳରେ ବିଶେଷ ଭାବରେ ଲକ୍ଷ୍ୟ କରାଯାଏ ।

**ଘୋଡ଼ାନାଚ:** ଉତ୍କଳୀୟ ସଂସ୍କୃତି ବାରମାସରେ ତେର ପର୍ବ ପାଳନ କରୁଥିବା ଏକ ସଂସ୍କୃତି । ଏଠାରେ ପ୍ରତିଟି ଓଷାପର୍ବରେ କିଛିନା କିଛି ଉତ୍ସବ ପାଳିତ ହୁଏ । ସେହି ଅନୁସାରେ ଚୈତ୍ର ପୂର୍ଣ୍ଣିମୀରୁ ଅଷ୍ଟମୀ ପର୍ଯ୍ୟନ୍ତ ଆଠଦିନ ଘୋଡ଼ାମୁହାଁ ବାସୁଳୀଙ୍କର ପୂଜା ହୁଏ । ନିମ୍ବ କାଠରେ ନିର୍ମିତ ଏକ ଘୋଡ଼ାର ମୁଣ୍ଡାକୃତିକୁ ଧରି ବା ଦେହରେ ଲଗାଇ ଜଣେ ପୁରୁଷ ଓ ଅନ୍ୟ ଜଣେ ସ୍ତ୍ରୀ ବେଶଧାରୀ ପୁରୁଷ ନୃତ୍ୟ କରନ୍ତି । ବିଶେଷତଃ ଘାଟୁଆ (କୈବର୍ତ୍ତ)ମାନଙ୍କର ଏହା ଏକ ମୁଖ୍ୟ ପର୍ବ ଓ ନୃତ୍ୟ । ଏହା ସାଧାରଣତଃ ରାତ୍ରୀକାଳରେ ହିଁ ଅନୁଷ୍ଠିତ ହୁଏ । ଏଥିରେ ପ୍ରଶ୍ନୋତ୍ତର ଛଳରେ ରାଉତାଣୀ ରାଉତକୁ ପ୍ରଶ୍ନ ପଚାରେ ଏବଂ ରାଉତ ତା'ର ଗୂଢ଼ ଉତ୍ତର ଦିଏ । ସେହିପରି ରାଉତ ମଧ୍ୟ ପ୍ରଶ୍ନ ପଚାରିଲେ ରାଉତାଣୀ ତା'ର ଉତ୍ତର ଦିଏ । ଏହି ନୃତ୍ୟବେଳେ କେଉଟ ଘୋଡ଼ାମୁଖା ପିନ୍ଧି ନାଚିବାବେଳେ ଗାଉଥାଏ –

ବାଟରେ ମାଇଲି ବୋଡ଼ା
ରାତିରେ ନଚାଏ ଚଇତି ଘୋଡ଼ା
ମୁଁ ଦିନରେ କୁଟଇ ଚୁଡ଼ା ।

ବିଶେଷଭାବେ ଏହି ଘୋଡ଼ାନାଚରେ ଗୀତ ଓ ନାଚ ହିଁ ପ୍ରଧାନ । ଓଡ଼ିଆ ଲୋକନାଟ୍ୟକୁ ସମୃଦ୍ଧ କରିବାରେ ଅନ୍ୟ ସମସ୍ତ ବିଭବ ପରି ଘୋଡ଼ାନାଚର ଅବଦାନ ଯଥେଷ୍ଟ ।

**ଡୁଏଟ୍ ବା ଯୁଗ୍ମ ନୃତ୍ୟ:** ଏହି ନୃତ୍ୟର ନାମକରଣରୁ ହିଁ ବୁଝାଯାଏ ଯେ, ଏହି ହିଁ ଦୁଇଜଣଙ୍କ ମଧ୍ୟରେ ଅନୁଷ୍ଠିତ ହେଉଥିବା ନୃତ୍ୟ । ଜଣେ ପୁରୁଷ ଏବଂ ଅନ୍ୟ ଜଣେ ନାରୀରୂପୀ ପୁରୁଷ ମଞ୍ଚ ଉପରକୁ ଆସି ନୃତ୍ୟ କରନ୍ତି । ଉଭୟ ଗୀତ ଗାଆନ୍ତି ଓ ପରସ୍ପରକୁ ଥଟ୍ଟା ପରିହାସ କରନ୍ତି । ସେହି ଥଟ୍ଟା ପୁଣି ମୁଖ୍ୟଭାବେ ଶୃଙ୍ଗାର ରସଭିତ୍ତିକ ତଥା ପ୍ରେମଭିତ୍ତିକ । ଶୃଙ୍ଗାର ରସ ହିଁ ପ୍ରଧାନ ଭୂମିକା ନିର୍ବାହ କରେ । ଏହା ଏକକ ନୃତ୍ୟ ନୁହେଁ । ଯାତ୍ରା ବା ଲୀଳାର ମଧ୍ୟରେ ଦର୍ଶକମାନଙ୍କର ମନୋରଞ୍ଜନ ପାଇଁ ଏହା ଅଭିନୀତ ହୋଇଥାଏ । ଦର୍ଶକମାନଙ୍କର ଭାରାକ୍ରାନ୍ତ ମନକୁ ନିରୋଳା ହାସ୍ୟରସ ମାଧ୍ୟମରେ ହାଲୁକା କରିବା ପାଇଁ ଯୁଗ୍ମ ନୃତ୍ୟର ଅବଦାନ ଅନସ୍ୱୀକାର୍ଯ୍ୟ । ଓଡ଼ିଆ ଲୋକନାଟକର ଏହା ଏକ ଅଂଶବିଶେଷ ।

**ଫାର୍ସ:** ଫାର୍ସ ସମ୍ପର୍କରେ ଆଲୋଚକ ଲକ୍ଷ୍ମୀକାନ୍ତ ତ୍ରିପାଠୀଙ୍କ ମତ ହେଲା– 'ଚରିତ୍ର' ବେଶୀ ବା କମ୍ ହୋଇପାରେ ମାତ୍ର ଧର୍ମ ଅନେକାଂଶରେ ଡୁଏଟ୍ ସହ ସମାନ । କେଳା–କେଳୁଣୀ ଫାର୍ସରେ କେଳାର ସ୍ତ୍ରୀ ଦୁଇଟି । କେଳୁଣୀମାନଙ୍କ ପ୍ରତି ପ୍ରେମର ନ୍ୟୂନାଧିକ ନେଇ କେଳା ଗଞ୍ଜଣା ବା ପ୍ରେମ ଲଭିଥାଏ । ଫାର୍ସ ଭିତରେ ଅସଙ୍ଗତ ପ୍ରେମ ବା ଶୃଙ୍ଗାର ଚର୍ଚ୍ଚାର ପ୍ରାଧାନ୍ୟ ଥାଏ । ମୁସଲମାନ ପୁରୁଷ ଓ ହିନ୍ଦୁ ସ୍ତ୍ରୀ ମଧ୍ୟରେ ପ୍ରେମ ବା ବ୍ରାହ୍ମଣ, ଧୋବଣୀ ଇତ୍ୟାଦି ଫାର୍ସ ତନ୍ମଧ୍ୟରୁ ଅନ୍ୟତମ ।

**ଲୋକନାଟ୍ୟର ରଙ୍ଗମଞ୍ଚ:** ଓଡ଼ିଆ ଲୋକନାଟ୍ୟର ମଞ୍ଚ ଅତି ସାଧାରଣ ତଥା ଅକପଟ ସାଜସଜ୍ଜାର ମଞ୍ଚଟିଏ । କାରଣ ଅଧିକାଂଶ ଲୋକନାଟ୍ୟ ମୁକ୍ତ ଆକାଶ ତଳେ ଘାସର ଗାଲିଚା ଉପରେ ଅଭିନୀତ ହେଉଥିଲା । କେବେ କେମିତି ସେଇ ଘାସ ଉପରେ ମସିଣା କିମ୍ବା ଦରିଟିଏ ପଡ଼ିଥାଏ । ଘାସ ଉପରେ ଚିହ୍ନିତ ସେଇ ନିର୍ଦ୍ଦିଷ୍ଟ ଜାଗାଟିକୁ ମଞ୍ଚ ଭାବରେ ଚିହ୍ନିତ କରିବା ପରେ, ମଞ୍ଚକୁ ସାଜଘର ପର୍ଯ୍ୟନ୍ତ ଅଭିନେତା ଅଭିନେତ୍ରୀମାନଙ୍କର ଚଳପ୍ରଚଳ ପାଇଁ ସରୁ ରାସ୍ତାଟିଏ ଥାଏ । କେବେ କେମିତି ଖଟପକାଇ ଏଇ ଅସ୍ଥାୟୀ ମଞ୍ଚ ନିର୍ମାଣ କରାଯାଇଥାଏ । ମଞ୍ଚ ବୋଲି କୁହାଯାଉଥିବା ସ୍ଥାନର ଚାରିପାଖରେ ଖୁଣ୍ଟସବୁ ଯାଇଥାଏ । ପେଟ୍ରୋମାକ୍ସ ଲାଇଟ୍ ପ୍ରଚଳନ ପୂର୍ବରୁ ରଙ୍ଗମଞ୍ଚରେ ମଶାଲ୍ ଜାଳି ଅଭିନୟ ପ୍ରଦର୍ଶନ କରାଯାଉଥିଲା । ସେଥିପାଇଁ ମଶାଲ୍ ଧରିବାକୁ ଦୁଇପାଖରେ ଲୋକ ନିଯୁକ୍ତ ହେଉଥିଲେ । ଏହି ମଞ୍ଚର ଚାରିପାଖରେ ଗୋଲାକାର ହୋଇ ଦର୍ଶକମାନେ ଚକାମାଡ଼ି ବସିଥାଆନ୍ତି । ହାର୍‌ମୋନିୟମ୍, ଢୋଲକି, ଡୁଗିତାବଲା ଏବଂ ଅନ୍ୟ କେତେକ ବାଦ୍ୟଯନ୍ତ୍ର ଧରି ବାଦ୍ୟକାରମାନେ ମଞ୍ଚ ତଳକୁ ଗୋଟିଏ

ପାଖରେ ବସିଥାଆନ୍ତି । ମଞ୍ଚରେ ସ୍ଥଳବିଶେଷରେ ପର୍ବତ, ଝରଣା କିମ୍ବା ଯୁଦ୍ଧକ୍ଷେତ୍ରର ଦୃଶ୍ୟ ଆବଶ୍ୟକ ହେଲେ, ଅଭିନେତା ଅଭିନେତ୍ରୀମାନେ ଶୂନ୍ୟକୁ ଆଙ୍ଗୁଳି ନିର୍ଦ୍ଦେଶ କରି ସଂଳାପ ମାଧ୍ୟମରେ ସେହିସବୁ ଦୃଶ୍ୟର ଇନ୍ଦ୍ରଜାଲ ଦର୍ଶକମାନଙ୍କ ସାମ୍ନାରେ ସୃଷ୍ଟି କରନ୍ତି ।

**ଲୋକନାଟ୍ୟରେ ଚରିତ୍ର:** ଲୋକନାଟ୍ୟରେ ପୌରାଣିକ, କାଳ୍ପନିକ ଆଦି ବିଷୟବସ୍ତୁ ପରିବେଷିତ ହେଉଥିବାରୁ ଏଥିରେ ଉଭୟ ନାରୀ ଓ ପୁରୁଷ ଚରିତ୍ର ଦେଖିବାକୁ ମିଳେ । ମାତ୍ର ନାରୀ ଭୂମିକାରେ ପୁରୁଷମାନେ ହିଁ ଅଭିନୟ କରନ୍ତି । ଲୀଳା ପରି ଲୋକନାଟକଗୁଡ଼ିକରେ ସେହି ଚରିତ୍ରମାନେ ନିଜେ ହିଁ ନିଜର ପରିଚୟ ପ୍ରଦାନ କରିଥାଆନ୍ତି । ଉଦାହରଣ ସ୍ୱରୂପ ହନୁମାନ ମନ୍ଦିରକୁ ପ୍ରବେଶ କରିବା ମାତ୍ରେ ନିଜେ ନିଜେ ଆବୃତ୍ତି କରେ- ....... ଏହା କହି ହନୁମନ୍ତ ସଭାରେ ପଶିଲା ହୋ । ଏହିପରି ଭାବରେ ଓଡ଼ିଆ ଲୋକନାଟକ ଭାରତୀୟ ସଂସ୍କୃତି ଓ ଇତିହାସର ବିଭିନ୍ନ ଉଲ୍ଲେଖନୀୟ ଧାରାକୁ ସହଜରେ ଗ୍ରହଣ କରି ବିଶ୍ୱ ଦରବାରରେ ଏହାର ପ୍ରଭୁତ୍ୱ ତଥା ପ୍ରତିଭାକୁ ବହୁ ଗୁଣରେ ସମ୍ମାନିତ କରିପାରିଛି ।

ଅଧ୍ୟାପକ, ଓଡ଼ିଆ ଭାଷା ସାହିତ୍ୟ ବିଭାଗ
ଆର୍.ଡି.ଏସ୍. ଡିଗ୍ରୀ ମହାବିଦ୍ୟାଳୟ, କୁଣ୍ଡାବାଇ

# କେବେ ତୁ ଆସିବୁ ମା'

**କବିରାଜ ପଣ୍ଡା**

ହୈମବନ୍ତ ସୁତା ଅଯୋନି ସମ୍ଭୂତା
ଦେବଲୋକ ରାଜଶିରୀ
ତୋର ପାଦ ସ୍ପର୍ଶେ ଧନ୍ୟ ହେବ ମର୍ତ୍ତ୍ୟ
ସତେ ଅବା ସ୍ୱର୍ଗପୁରୀ
ଶରଦେ ବଉଦ ଆକାଶେ ଯେ ଶୋଭେ
କାଶତଣ୍ଡୀ ନଦୀ ତୀରେ
କୁଷ୍ମାଣ୍ଡ ଜହ୍ନିଏ ଫୁଟି ଉଠିଲେଣି
ସବୁଜିମା ଲତା ପରେ
ବୈକୁଣ୍ଠରୁ ଦେବଶିଳ୍ପୀ ବିଶ୍ୱକର୍ମା
ଆସିଲେଣି ଅବତରୀ
ଚାନ୍ଦି ସୁବର୍ଣ୍ଣରେ ଗଢିଦେବେ ମେଢ
ତୋର ମନୋଭାବ ଜାଣି
ବଣିକ ପସରା ସଜାଇ ଦେଲେଣି
ନାନା ରଙ୍ଗ ଅଙ୍ଗବସ୍ତ୍ରେ
ତୋର ଆଗମନେ ହସିବ ଧରଣୀ
ବିମଣ୍ଡିତ ନାନା ପୁଷ୍ପେ
ବାଇଦ ବାଜଣେ କମ୍ପିଯିବ ମହୀ



ଭିନ୍ନ ତାଳ ଲୟ ଦେଇ
ବାଣ ପଟୁଆରେ ଆଲୋକ ସଜ୍ଜାରେ
ଝଲସି ଉଠିବ ସାହି
ତୋ' ଆସିବା ପଥେ ସଜାଇ ଦେବି ମା'
ନାନା ଜାତି ରଙ୍ଗ ଫୁଲ
ଅଳତା ପାଦକୁ ଘୁଙ୍ଗୁର ବାଜଣା
ପାଦକୁ ସାଜିବ ଭଲ
ଚାରି ଖାନି ମାତା ତ୍ରିପୁରେ ବନ୍ଦିତା
ତୋ ନାମ ରୂପକୁ ସ୍ମରି
ବିଶ୍ୱ ଜନେ ମନ ହୋଇବ କୃତାର୍ଥ
କିଞ୍ଚିତ ତୋ ସେବା କରି
ପାପତାପ ନାଶୀ ଧରଣୀ ଉଶ୍ୱାସୀ
ଅଭୟ ଷୋଡଶ ବାହା
ତୋର ଆଶୀର୍ବାଦ ଅମୃତ ସମାନ
କେବେ ତୁ ଆସିବୁ ମା' ।

ଘର ନଂ- ୧ଆର୍-୨୨, ରୋଡ୍ ନଂ-୮
ୟୁନିଟ୍-୯, ଭୁବନେଶ୍ୱର

# ଆଦି ନେତା ବିଚିତ୍ରାନନ୍ଦ

**ଡକ୍ଟର ବିଜୟ କିଶୋର ସାମଲ**

ଓଡ଼ିଶାର ରାଜନୈତିକ ଓ ସାଂସ୍କୃତିକ ଦୃଶ୍ୟପଟରେ ଦୁଇଜଣ ବିଚିତ୍ରାନନ୍ଦ ପ୍ରତିଭାତ ହୁଅନ୍ତି । ଜଣେ ଆଦିନେତା ବିଚିତ୍ରାନନ୍ଦ ଓ ଅନ୍ୟ ଜଣେ ସ୍ୱାମୀ ବିଚିତ୍ରାନନ୍ଦ । ଉଭୟ ଉତ୍କଳ ଜନନୀର ବରପୁତ୍ର । ଦୁଇଜଣ ପୁଣି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ସ୍ମରଣୀୟ । ଆଦିନେତା ବିଚିତ୍ରାନନ୍ଦ ଉତ୍କଳଗୌରବ ମଧୁସୂଦନଙ୍କ ଦିଗ୍‌ଦର୍ଶକ ଥିବା ବେଳେ ସ୍ୱାମୀ ବିଚିତ୍ରାନନ୍ଦ ମଧୁବାବୁଙ୍କର ଆଦର୍ଶ ଅନୁପ୍ରାଣିତ ଶିଷ୍ୟ । ସ୍ୱାମୀ ବିଚିତ୍ରାନନ୍ଦ ଦାସ ବିଂଶ ଶତାବ୍ଦୀ ଓଡ଼ିଶାରେ ନେତା ଭାବରେ ପରିଚିତ ଥିବାବେଳେ ବିଚିତ୍ରାନନ୍ଦ ଦାସ ଊନବିଂଶ ଶତାବ୍ଦୀ ଓଡ଼ିଶାରେ ଆଦିନେତା ଭାବରେ ସ୍ୱୀକୃତ ।

ଊନବିଂଶ ଶତାବ୍ଦୀ ଥିଲା ଓଡ଼ିଶା ପାଇଁ ଅନ୍ଧକାର ଯୁଗ । ଏ ଶତାବ୍ଦୀର ଆଦ୍ୟଭାଗ ପୁଣି ଥିଲା ଓଡ଼ିଶା ଭାଗ୍ୟ ବିପର୍ଯ୍ୟୟର ଦାରୁଣ କାଳ । ପୂର୍ବ ଦୁଇଶତ ବର୍ଷ ମୁସଲମାନ ମରହଟ୍ଟା ଶାସନର ଶୋଷଣ ଅତ୍ୟାଚାର ଓ ନିପୀଡନ ପରେ ଶତାବ୍ଦୀ ଆରମ୍ଭରେ ଇଂରେଜମାନେ ଓଡ଼ିଶା ଅଧିକାର କରିନେଲେ ୧୮୦୩ ମସିହାରେ । ଆଧୁନିକ ଶିକ୍ଷା ଓ ସଭ୍ୟତାର ଆଲୋକଠାରୁ ଦୂରରେ ଥିବା ଓଡ଼ିଶାକୁ ବଙ୍ଗଳା ସହିତ ମିଶାଇ ଦେଇ କଲିକତାରୁ ଏକ ଡ଼ିଭିଜନ ବା ଜିଲ୍ଲା ଭାବରେ ଶାସନ କରାଗଲା । ବିଶାଳ ବଙ୍ଗ ପ୍ରେସିଡେନ୍‌ସିର ଏହା ହେଲା ଏକ ଅବହେଳିତ ଉପାନ୍ତ ଅଞ୍ଚଳ । ଶୋଷଣ ହେଲା ଶାସନର ମୁଖ୍ୟ ଲକ୍ଷ୍ୟ । ଶିକ୍ଷା, ସ୍ୱାସ୍ଥ୍ୟ ଓ ଗମନାଗମନ ଆଦି କୌଣସି କ୍ଷେତ୍ରରେ ସାମାନ୍ୟ ବିକାଶ ପରିବର୍ତ୍ତେ ବିଭିନ୍ନ ଦିଗରୁ ନବ୍ୟଶୋଷଣରେ ଓଡ଼ିଶା ତଳି ତଳାନ୍ତ ହୋଇଗଲା । ବିଜିତ ଲୋକଙ୍କୁ ଶିକ୍ଷା ଦେଲେ ଶୋଷଣର ବାଟ ବନ୍ଦ ହୋଇଯିବ, ଅଜ୍ଞତା ଓ ଅଶିକ୍ଷାର ଅନ୍ଧକାର ମଧ୍ୟରେ ଶାସନ ଓ ଲୁଣ୍ଠନ ସୁବିଧାଜନକ ହେବ ବୋଲି ସେଦିନ ଇଂରେଜ ଶାସକ ବିବେଚନା କରୁଥିଲେ । ଅର୍ଦ୍ଧଶତାବ୍ଦୀର ଶୋଷଣ ପରେ ମେରୁଦଣ୍ଡ ସଳଖ କରି ଛିଡା ହେବା ପାଇଁ ସେଦିନର ଓଡ଼ିଶା ସମର୍ଥ ନଥିଲା । ଏହି ଶାସନଗତ ଅବହେଳାର ଚରମ ପରିଣତି ହେଲା ୧୮୬୬ ମସିହାର ଦାରୁଣ ଦୁର୍ଭିକ୍ଷ । ଏହା ନଅଙ୍କ ଦୁର୍ଭିକ୍ଷ ଭାବରେ ଇତିହାସରେ ପରିଚିତ । ଦୁର୍ଭିକ୍ଷ କମିଶନ ତଥ୍ୟ କହେ ସେଦିନର ଏ ଦୁର୍ଭିକ୍ଷରେ ଭୌଗୋଳିକ ଓଡ଼ିଶାର ତିନି ଭାଗରୁ ଏକ ଭାଗ ଲୋକ ଖାଦ୍ୟ ଅଭାବରୁ ଓ ସଂକ୍ରାମକ ବ୍ୟାଧିରେ ମୃତ୍ୟୁବରଣ କରିଥିଲେ । ୧,୫୦୨୯ ସଂଖ୍ୟାରେ ଲୋକେ ଗୃହାନ୍ତର ଯାଇ ଆଉ ଫେରି ନଥିଲେ । ଇଂରେଜ ଅପାରଗ ଶାସନର ଏ କରୁଣ ପରିଣତି ଓଡ଼ିଶାର ସାମାଜିକ ଓ ଅର୍ଥନୀତିକ ଜୀବନକୁ ଘାତପ୍ରତିଘାତରେ ବିବଶ ଓ ବିଦୀର୍ଣ୍ଣ କରିଦେଲା । ବିଶ୍ୱର ବ୍ରିଟିଶ ଅଧିକୃତ ସାମ୍ରାଜ୍ୟରେ ମାନବକୃତ ଏପରି ଦୁର୍ବିପାକ ଘଟିନଥିଲା । ଇତିହାସର ଏ ବିରଳ ଅମାନବୀୟ ଘଟଣା ଇଂରେଜ ଶାସନ ବ୍ୟର୍ଥତାର ଯେଉଁ ଉଦ୍‌ଘୋଷଣା କଲା, ଇତିହାସରେ ତା'ର ପଟାନ୍ତର ନାହିଁ । ବିଶ୍ୱ ଏଥିରେ ସ୍ତବ୍ଧ ଓ ଚକିତ ହୋଇଗଲା ।

୧୮୬୬ ନଅଙ୍କ ଦୁର୍ଭିକ୍ଷ ଗୋଟିଏ ଦିଗରେ ବିଦେଶୀ ଶୋଷଣ ଓ ଅପଶାସନର ଅଭ୍ରାନ୍ତ ସ୍ମାରକୀ ଥିବା ବେଳେ ଅନ୍ୟ ଦିଗରେ ଏକ ଦାରୁଣ ଭାଗ୍ୟ ବିପର୍ଯ୍ୟୟ ଭିତରେ ଓଡ଼ିଆ ଜାତି ମୁକ୍ତିର ଅରୁଣୋଦୟ ଦେଖିଲା ।

ଦୁର୍ଭିକ୍ଷ ହେତୁ ଓଡ଼ିଶା ସମଗ୍ର ମାନବ ଜାତିର ଦୃଷ୍ଟି ଆକର୍ଷଣ କଲା । ଶାସକର ଦୃଷ୍ଟି ଭଙ୍ଗୀ ବଦଳିବାକୁ ଲାଗିଲା । ଏ ଦାରୁଣ ଦୁର୍ଭିକ୍ଷ ପରେ ମୃତ କଳ୍ପ ଓଡ଼ିଶା ଜାତି ଆଖିଖୋଲି

ଚାହିଁଲା, ଧୀରମନ୍ଥର ଗତିରେ ଅଗ୍ରଗତିର ସୋପାନ ଆରୋହଣର ବାଟ ପାଇଲା । ସ୍ଥାଣୁ ସମାଜ ଜୀବନରେ କିଂଚିତ ଚଂଚଳତା ଦେଖାଦେଲା । ଦୁର୍ଭିକ୍ଷ ଓଡ଼ିଶା ଭାଗ୍ୟ ପରିବର୍ତ୍ତନର ନିୟାମକ ହେଲା । ଶିକ୍ଷା, ସାହିତ୍ୟ, ସମାଜ, ରାଜନୀତି ଓ ଅର୍ଥନୀତି ପ୍ରତ୍ୟେକ କ୍ଷେତ୍ରରେ ପରିବର୍ତ୍ତନର ମୃଦୁ କମ୍ପନ ଅନୁଭୂତ ହେଲା । ଓଡ଼ିଆ ଜାତି ତା'ର ସ୍ୱତନ୍ତ୍ର ଅଧିକାର ପାଇଁ ସଂଗ୍ରାମ ଆରମ୍ଭ କଲା । ଏ ସଂଗ୍ରାମର ଆଦ୍ୟ ଶୁଭଶଂଖ ବଜାଇଥିଲେ ବିଚିତ୍ରାନନ୍ଦ । ତେଣୁ ସେ ଜନମାନସରେ ଆଦି ନେତାର ଗୌରବରେ ଆସୀନ ହୋଇଗଲେ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡିଶାରେ ଆଜି ଭଳି ନେତାଙ୍କର ଏତେ ଭିଡନଥିଲା । ଅଳ୍ପ କେତେଜଣଙ୍କୁ ନେଇ ସେଦିନ ଓଡ଼ିଶା ଅଗ୍ରଗତିର ବନ୍ଧୁର ପଥରେ ଯାତ୍ରାରମ୍ଭ କରିଥିଲା । ବିଂଶ ଶତାବ୍ଦୀ ଆରମ୍ଭ ଯାଏ ନେତାଥିଲେ ଆଦିନେତା ବିଚିତ୍ରାନନ୍ଦ ଦାସ (୧୯୨୭), କର୍ମବୀର ଗୌରୀ ଶଙ୍କର (୧୮୩୯), ବ୍ୟାସକବି ଫକୀର ମୋହନ (୧୮୪୩), ଉତ୍କଳଗୌରବ ମଧୁସୂଦନ (୧୮୪୮), କବିବର ରାଧାନାଥ (୧୮୪୮), ବିଦ୍ୟାଭୂଷଣ କପିଳେଶ୍ୱର (୧୮୩୪), ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ (୧୮୩୩) ଓ ବିଚ୍ଛନ୍ଦ ଚରଣ ପଟ୍ଟନାୟକ (୧୯୩୯) । ବିଚିତ୍ରାନନ୍ଦ ଥିଲେ ସମସ୍ତଙ୍କଠାରୁ ବଡ । ସାଧାରଣ ଜୀବନ ଓ ସେବା କ୍ଷେତ୍ରରେ ସେ ଥିଲେ ସମସ୍ତଙ୍କ ଆଦର୍ଶ ଓ ପ୍ରେରଣାଦାତା । ତାଙ୍କରି ଭିତର ଦେଇ ଆତ୍ମବିସ୍ମୃତ ଏକ ଜାତିର ଆଶା, ଆକାଂକ୍ଷା, ସ୍ୱପ୍ନ ଓ ସଂକଳ୍ପ ରୂପାୟିତ ହେବାକୁ ଲାଗିଲା ।

ବିଚିତ୍ରାନନ୍ଦ ୧୮୨୭ରେ ଜନ୍ମଗ୍ରହଣ କରି ୧୮୭୫ ଅଗଷ୍ଟ ୨ରେ ଇହଲୀଳା ସମ୍ବରଣ କରିଥିଲେ । ଯାଜପୁର ଜିଲ୍ଲା ମଙ୍ଗଳପୁର ଥାନା ଅନ୍ତର୍ଗତ କଣ୍ଟାବଣିଆ ଗାଁ ତ୍ରିଲୋଚନ ଦାସ ଓ ରାଣୀଦାସ ଥିଲେ ତାଙ୍କ ପିତାମାତା । ସେ ପିତାଙ୍କର ଏକମାତ୍ର ପୁତ୍ର ଥିଲେ । ପରିଣତ ୪୦ବର୍ଷ ବୟସରେ ସେ ପୁତ୍ର ଲାଭ କରିଥିଲେ । ବିଚିତ୍ରାନନ୍ଦଙ୍କର ଶିକ୍ଷାଗତ ଯୋଗ୍ୟତା ମାଟ୍ରିକୁଲେସନ ମଧ୍ୟରେ ସୀମିତ ଥିଲା । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଇଂରାଜୀ ଶିକ୍ଷାପ୍ରତି ଓଡ଼ିଆ ଲୋକେ ଆଗ୍ରହ ପ୍ରକାଶ କରୁନଥିଲେ । ଇଂରାଜୀ ପଢିଲେ ଜାତି ଯିବାର ଭୟ ଥିଲା । ଉଚ୍ଚଶିକ୍ଷା ଲାଭ ସହଜ ନଥିଲା । ଅଳ୍ପ କେତେକ ପରିବାର ଏ ଦିଗରେ ଆଗ୍ରହ ରଖୁଥିଲେ । ବିଚିତ୍ରାନନ୍ଦଙ୍କ ପାରିବାରିକ ପୃଷ୍ଠଭୂମି ଓ ସଂସ୍କାର ତାଙ୍କ ଜୀବନ ଅଗ୍ରଗତିରେ ବହୁଭାବରେ ସହାୟକ ହୋଇଥିଲା । ସେ କରଣ ବଂଶଜ ଥିଲେ । ତାଙ୍କ ବଂଶର ଲୋକେ ବହୁ ଆଗରୁ ମରହଟ୍ଟା କାଳରୁ ଶାସକମାନଙ୍କ ପାଖରେ ନାନା ଉଚ୍ଚ କାର୍ଯ୍ୟରେ ନିଯୁକ୍ତ ହୋଇ ପାର୍ସୀଭାଷା ସହିତ କିଛି କିଛି ପରିଚିତ ଥିଲେ ଓ ଖ୍ୟାତି ଅର୍ଜନ କରିଥିଲେ । ଇଂରେଜ ଶାସନ ସମୟରେ କେତେକ ଶାସନ ଆରମ୍ଭରେ କର୍ମନିଯୁକ୍ତ ହୋଇ ଶାସକମାନଙ୍କ ସହିତ ପରିଚିତ ହୋଇଥିଲେ । କିଛି ଇଂରାଜୀ ମଧ୍ୟ ଶିଖିପାରିଥିଲେ । ବିଚିତ୍ରାନନ୍ଦଙ୍କ ପିତା କର ଆଦାୟ କାର୍ଯ୍ୟରେ ଅଠରନଳା ଘାଟରେ ନିଯୁକ୍ତ ଥିଲେ ଏବଂ ଇଂରେଜ ଶାସନ ଓ ଶିକ୍ଷା ପ୍ରତି ଅନୁରକ୍ତ ଥିଲେ । ବିଚିତ୍ରାନନ୍ଦ ପ୍ରଥମେ ପିତାଙ୍କ ପାଖରେ ରହି ଶିକ୍ଷା କରୁଥିଲେ ଓ ପରେ ବାଲେଶ୍ୱରରେ ଇଂରାଜୀ ବିଦ୍ୟାଳୟରେ କିଛିଦିନ ଅଧ୍ୟୟନ କରିଥିଲେ । ଫକୀରମୋହନ ଆତ୍ମଜୀବନୀରେ ତାଙ୍କ ଶ୍ୱଶୁର ଶିବପ୍ରସାଦ ଚୌଧୁରୀଙ୍କ ସହ ବିଚିତ୍ରାନନ୍ଦ ବାଲେଶ୍ୱରରେ ପଢୁଥିବା କଥା ଲେଖିଛନ୍ତି । ଇଂରାଜୀ ସ୍କୁଲ୍‌ରେ ପଢିଲେ ଜାତି ଯିବା ଭୟରେ କେହି ସେ ସ୍କୁଲ୍‌ରେ ନପଢିବାରୁ ବିଦ୍ୟାଳୟ ଭାଙ୍ଗିଯିବାରୁ ଫେରିଆସିଥିଲେ । ତାଙ୍କର ଜଣେ ସମ୍ପର୍କୀୟ ହରେକୃଷ୍ଣ ଦାସ କଟକରେ ଡେପୁଟି କଲେକ୍ଟର ଥିଲେ । ତାଙ୍କ ଘରେ ରହି ସେ ଇଂରାଜୀ ବିଦ୍ୟାଳୟରେ ପଢିବାକୁ ଲାଗିଲେ । କାହା କଥା ନମାନି କିଛି ଦିନ ପରେ ସ୍କୁଲ ଛାଡି ଚାଲିଗଲେ । ଏଣ୍ଟ୍ରାନ୍‌ସ ଭିତରେ ତାଙ୍କ ପାଠର ଡୋରି ବନ୍ଧା ହୋଇଥିଲା ।

ଏହା ପରେ ୧୪ ବର୍ଷ ବୟସରେ ବାଲେଶ୍ୱରରେ ଲୁଣ କଣ୍ଟା କଟୀ କର୍ମରେ ଯୋଗଦେଇ କିଛି ଅର୍ଥ ଉପାର୍ଜନ କଲେ । ଏଥିରେ ତାଙ୍କ ମନ ନମାନିବାରୁ ସେ କଟକ ଆସି କଲେକ୍‌ଟୋରିଏଟରେ ୧୨୫ଟଙ୍କା ଦରମାରେ ଜଣେ ମୋହରୀର ଭାବରେ ଫୌଜଦାରୀ କଚେରିରେ କାର୍ଯ୍ୟ କଲେ । ତାଙ୍କ ବୟସ ଥିଲା ୧୭ ବର୍ଷ । ଏହିଠାରେ ତାଙ୍କ ପ୍ରତିଭା ବିକାଶର ସୁଯୋଗ ଲାଭ କଲା । ସେତେବେଳେ କୋର୍ଟକଚେରି ଓ ରାଜକାର୍ଯ୍ୟରେ ଅଧିକାଂଶ କର୍ମଚାରୀ ଥିଲେ ତେଲଗୁ କିମ୍ବା ବଙ୍ଗାଳୀ । ଓଡ଼ିଆଙ୍କ ସଂଖ୍ୟା ଖୁବ୍ ଊଣା । ବିଚିତ୍ରାନନ୍ଦଙ୍କର ଉଚ୍ଚଶିକ୍ଷା ନଥିଲେ ବି ଇଂରେଜୀ ଭାଷାରେ ଦକ୍ଷତା ଥିଲା । ସେ ଭଲ ଇଂରାଜୀ ଲେଖିପାରୁ ଥିଲେ ଓ କହିପାରୁଥିଲେ । ପ୍ରଚଳିତ




ଆଇନ ବିଷୟରେ ଗଭୀର ଅଧ୍ୟୟନ କରିଥିଲେ । ତାଙ୍କର ନିଷ୍କପଟ ବ୍ୟବହାର ଓ ଆଇନ ବିଷୟକ ଗଭୀର ଜ୍ଞାନ ହେତୁ ଅଳ୍ପଦିନ ମଧ୍ୟରେ ସେ ଲୋକପ୍ରିୟ ହୋଇପାରିଲେ । ୧୮୬୦ ମସିହା ବେଳକୁ ସେ କମିଶନରଙ୍କ ଦୃଷ୍ଟିକୁ ଆସିଲେ ଓ କମିଶନର ଟ୍ରେନର ସାହେବ ତାଙ୍କୁ ଫୌଜଦାରୀରୁ ଆଣି କମିଶନରୀ ସିରସ୍ତାରେ ନିଯୁକ୍ତ କଲେ ।

ସାର୍ ଟି.ଇ.ରେଭେନ୍‌ସା ୧୯୬୫ ମସିହାରେ ଓଡ଼ିଶାରେ କମିଶନର ଭାବରେ ଯୋଗଦେବା ବେଳକୁ ବିଚିତ୍ରାନନ୍ଦ ଜଣେ ଦକ୍ଷ ସିରସ୍ତାଦାର ହୋଇ ସାରିଥିଲେ । ରେଭେନ୍‌ସାଙ୍କ ପ୍ରିୟଭାଜନ ହୋଇ ସେ ମୁଖ୍ୟ ସିରସ୍ତାଦାର ଆସନ ଲାଭ କଲେ । ଜନ୍ ବିମ୍‌ସଙ୍କ ସହିତ ଫକୀରମୋହନଙ୍କ ସମ୍ପର୍କ ଓଡ଼ିଆ ଭାଷା ସୁରକ୍ଷାରେ ଯେପରି ସହାୟକ ହୋଇଥିଲା, ସେହିଭଳି ବିଚିତ୍ରାନନ୍ଦଙ୍କ ସହିତ ରେଭେନ୍‌ସାଙ୍କ ସମ୍ପର୍କ ଓଡ଼ିଆ ଜାତିର ସ୍ୱାଭିମାନ ସୁରକ୍ଷାରେ ସେହିପରି ସହାୟକ ହୋଇଥିଲା । ଓଡ଼ିଶାର ପରମ୍ପରା, ଚଳଣି, ବିଶ୍ୱାସ ଓ ଭୌଗୋଳିକ ସ୍ଥିତି ସହିତ ଅପରିଚିତ ଅଣଓଡ଼ିଆ ଅଫିସର ଓ କର୍ମଚାରୀଙ୍କ ତ୍ରୁଟିପୂର୍ଣ୍ଣ ପରାମର୍ଶ ହେତୁ ଘଟିଥିବା ନଅଙ୍କ ଦୁର୍ଭିକ୍ଷ ରେଭେନ୍‌ସାଙ୍କ ହୃଦୟରେ ଓଡ଼ିଶାର ଜନଗଣ ଓ ସମସ୍ୟା ପ୍ରତି ଯେଉଁ ଶ୍ରଦ୍ଧା ଓ ଅନୁରାଗ ସୃଷ୍ଟି କରିଥିଲା, ତା'ର ମୂଳରେ ଥିଲେ ବିଚିତ୍ରାନନ୍ଦ । ଦୁର୍ଭିକ୍ଷ ପରେ ସେ କମିଶନରଙ୍କ ଏତେ ନିଜର ହୋଇଗଲେ ଯେ କମିଶନର ତାଙ୍କୁ He is my little Prime Minister କହି ଅନ୍ୟମାନଙ୍କୁ ପରିଚିତ କରାଉଥିଲେ ଓ ତାଙ୍କ ମୃତ୍ୟୁରେ ଗୋଟିଏ ଦିନ କଚେରି ବନ୍ଦ କରି ତାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିଥିଲେ । ଓଡ଼ିଶାର ରାଜନ୍ୟବର୍ଗ, ଜମିଦାର, ଅଫିସର ଓକିଲ ସମସ୍ତଙ୍କର ସେ ହୋଇଗଲେ ବିଶ୍ୱାସୀ ଓ ନିଜର । ଏହି ଉତ୍ତମ ରାଜସମ୍ପର୍କର ସୁଯୋଗକୁ ସେ ବ୍ୟକ୍ତିଗତ ସ୍ୱାର୍ଥ ଓ ସୁବିଧା ଲାଭର ମାଧ୍ୟମ ଭାବରେ ବିଚାର ନକରି ଜାତିର କଲ୍ୟାଣରେ ବିନିଯୋଗ କରି ଓଡ଼ିଶା ପାଇଁ ସ୍ମରଣୀୟ କାର୍ଯ୍ୟ କରିଗଲେ । ତାଙ୍କ ଜୀବନର ଶେଷ ଦଶବର୍ଷ ଥିଲା ଜାତି ପାଇଁ ଉତ୍ସର୍ଗର କାଳ । ଦୁର୍ଭିକ୍ଷ କାତର ଓଡ଼ିଶା ଥିଲା ସମସ୍ୟା ଜର୍ଜରିତ ଅଞ୍ଚଳ । ଆଗଙ୍ଗା ଗୋଦାବରୀ ବିସ୍ତୃତ ଦୁର୍ଦ୍ଧର୍ଷ ଓଡ଼ିଆ ଜାତି ଦାରିଦ୍ର୍ୟ, ଅଶିକ୍ଷା ଓ ପଡୋଶୀମାନଙ୍କ ଚକ୍ରାନ୍ତର ଶିକାର ହୋଇ ଘନଘୋର ତମିସ୍ରା ମଧ୍ୟରେ ନିଶ୍ଚିହ୍ନ ହୋଇଯିବାକୁ ବସିଥିବା ବେଳେ ସଂଜୀବନୀ ଦେଲେ ବିଚିତ୍ରାନନ୍ଦ । ତାଙ୍କର ସକଳ ଉଦ୍ୟମ ପଛରେ ରହିଲା କମିଶନର ରେଭେନ୍‌ସାଙ୍କ ପ୍ରଚ୍ଛନ୍ନ ସମର୍ଥନ ।

ତାଙ୍କ ଉଦ୍ୟମ ଫଳରେ ଦୁର୍ଭିକ୍ଷରେ ଅନ୍ନକ୍ଲିଷ୍ଟମାନଙ୍କ ପାଇଁ ବହୁ ସଂଖ୍ୟାରେ ଅନ୍ନଛତ୍ର ଖୋଲିଲା । ତାଙ୍କ ନେତୃତ୍ୱରେ ଦୁର୍ଭିକ୍ଷ ନିବାରିଣୀ କମିଟି ଗଠିତ ହୋଇ ବଦାନ୍ୟ ବ୍ୟକ୍ତିମାନଙ୍କଠାରୁ ବିପୁଳ ସାହାଯ୍ୟ ସଂଗ୍ରହ କରାଯାଇ ବିତରଣ କରାଗଲା । କେନ୍ଦ୍ରାପଡା ରାଧାଶ୍ୟାମ ନରେନ୍ଦ୍ରଙ୍କଠାରୁ ୭୫ହଜାର ମହଣ ଧାନ ଦାନ ସୂତ୍ରରେ ନିଜ ଖର୍ଚ୍ଚରେ ଆଣି ଚାଉଳ କରି ଅନ୍ନଛତ୍ର କେନ୍ଦ୍ରକୁ ଯୋଗାଇ ଦେଲେ । ଅନ୍ୟାନ୍ୟ ଆଉ ୪୭ ହଜାର ମହଣ ଧାନ ସଂଗ୍ରହ କରାଗଲା । ଶସ୍ତା ଚାଉଳ ବିକ୍ରି କମ୍ପାନୀ ନାମକ ଯୌଥ କମ୍ପାନୀ ଗଠନ କରାଯାଇ ଚାଉଳ ଯୋଗାଇ ଦିଆଗଲା । ସେ ଏଥିପାଇଁ ପ୍ରଥମେ ଟ୧୦୦ଙ୍କା ଚାନ୍ଦା ଦେଇଥିଲେ । ଜାତିଯିବା ଭୟରେ ଯେଉଁମାନେ ଅନ୍ନଛତ୍ରକୁ ଆସୁନଥିଲେ ସେମାନେ ଏହି ଶସ୍ତା ଚାଉଳ ପାଇପାରିଲେ । ସାମାନ୍ୟ କର୍ମକ୍ଷମମାନଙ୍କ ପାଇଁ କାମପାଇଁ ଖାଦ୍ୟ ଯୋଜନାରେ ଚାଉଳ ଯୋଗାଇ ଦିଆଯାଇପାରିଲା । ଏହା ଫଳରେ ତାଳଦଣ୍ଡା କେନାଲ ଖୋଳାଯାଇ ପାରିଲା । ଦୁର୍ଭିକ୍ଷରେ ବାସ୍ତୁହରାମାନଙ୍କ ପାଇଁ ସରକାରୀ ଓ ବେସରକାରୀ ସହାୟତାରେ ବହୁ ଗୃହନିର୍ମିତ ହେଲା । ଜାତିଯିବା ଫଳରେ ଗାଁକୁ ଫେରିନଥିବା ଲୋକେ ଏହାଫଳରେ ଆଶ୍ରୟ ପାଇପାରିଲେ । ବିଚିତ୍ରାନନ୍ଦ ନିଜର ଅର୍ଥବ୍ୟୟ କରି ବିଶିଷ୍ଟ ଶାସ୍ତ୍ରକାରଙ୍କ ସହାୟତାରେ ନାନା ସ୍ଥାନରେ ଯଜ୍ଞାନୁଷ୍ଠାନମାନ କରାଇ ଛତ୍ରଖିଆ ତଥାକଥିତ ଅସ୍ପୃଶ୍ୟମାନଙ୍କୁ ପୁଣି ଜାତିରେ ମିଶାଇବାର ଉଦ୍ୟମ କରିଥିଲେ । ଦୁର୍ଭିକ୍ଷ ପୀଡିତ ଓଡ଼ିଶାର ବିକଳ ସ୍ଥିତିରେ ବିଚିତ୍ରାନନ୍ଦଙ୍କ ନେତୃତ୍ୱ ଦୈବ ପ୍ରେରିତ ଥିଲା ।

ଦୁର୍ଭିକ୍ଷ ଟଳିଗଲା । ନବ ଓଡ଼ିଶା ନିର୍ମାଣର ସମୟ ଆସିଲା । ଆଗରେ ରହିଲେ ବିଚିତ୍ରାନନ୍ଦ । ଗୌରୀଶଙ୍କର, ପ୍ୟାରିମୋହନ, ଫକୀର ମୋହନ ଆଦି ଯୁବକବୃନ୍ଦଙ୍କୁ ଶକ୍ତି ଓ ସାହସ ଦେଲେ । ପ୍ରଥମ ଉଦ୍ୟମ ହେଲା ସମ୍ବାଦପତ୍ର ପ୍ରକାଶନ । ଓଡ଼ିଶାର ସମସ୍ୟା ଓ ନିଚ୍ଛକ ଚିତ୍ରକୁ ବର୍ହିଃବିଶ୍ୱରେ ଉପସ୍ଥାପିତ କରିବାକୁ ଛାପାଖାନାଟିଏ ପ୍ରତିଷ୍ଠା କରି ପତ୍ରିକାଟିଏ ପ୍ରକାଶର ପରିକଳ୍ପନା କରାଗଲା । ଏଥିପାଇଁ ବିଚିତ୍ରାନନ୍ଦ ଓ ଅନ୍ୟମାନଙ୍କୁ



ନେଇ ଏକ ଡାଇରେକ୍ଟରୀ ବୋର୍ଡ ରହିଲା । ଆରମ୍ଭ ହେଲା କଟକ ପ୍ରିଣ୍ଟିଂ କମ୍ପାନୀ । ଢେଙ୍କାନାଳ ରାଜା ବିଚିତ୍ରାନନ୍ଦଙ୍କ ପ୍ରଭାବରୁ ଟ୧୦୫୦ ଦେଇ ଅଂଶ କିଣିଲେ । ଅନ୍ୟମାନଙ୍କଠାରୁ ଅଂଶଧନ ଆଦାୟ ହୋଇ ଟ୭,୫୦୦ଙ୍କା ମୂଳଧନରେ କମ୍ପାନୀ କାର୍ଯ୍ୟକଲା । କମ୍ପାନୀର କୋଷାଧ୍ୟକ୍ଷ ଓ ସଂପାଦକ ରହିଲେ ଗୌରୀଶଙ୍କର ରାୟ । ଓଡିଶାର ପ୍ରଥମ ଛାପାଖାନା 'କଟକ ପ୍ରିଣ୍ଟିଂପ୍ରେସ' ପ୍ରତିଷ୍ଠିତ ହେଲା ଓ ସମ୍ବାଦଧର୍ମୀ ସାପ୍ତାହିକ ପତ୍ର 'ଉତ୍କଳ ଦୀପିକା' ପ୍ରକାଶିତ ହେଲା । ଗୌରୀ ଶଙ୍କର ହେଲେ ଏହାର ସଂପାଦକ । ଦୀର୍ଘ ୩୦ବର୍ଷ କାଳ ଧରି 'ଉତ୍କଳ ଦୀପିକା' ନିରବଚ୍ଛିନ୍ନ ଭାବରେ ଜାତିର ସେବାକରି ଚାଲିଲା । ଓଡ଼ିଆ ଜାତିର ପ୍ରାଣର କଥା ଓ ହୃଦୟର ବ୍ୟଥାକୁ ଏହା ନିର୍ଭୀକ ଭାବେ ଉପସ୍ଥାପିତ କରିଚାଲିଲା । ଘୋର ଦୁର୍ଦ୍ଦିନରେ ଓଡ଼ିଶାର ଜନ ମାନସରେ ଶକ୍ତି ଓ ସାହସ ଭରିଦେଇ ଓଡ଼ିଆ ଜାତୀୟତାର ଉନ୍ମେଷ ଓ ବିକାଶ ଦିଗରେ ଏ ପତ୍ରିକାର ଭୂମିକା ଅତୁଳନୀୟ ଥିଲା । ଓଡିଶାର ଏକତ୍ରୀକରଣଠାରୁ ଭାଷା ଆନ୍ଦୋଳନ ଯାଏଁ ପ୍ରତ୍ୟେକ କ୍ଷେତ୍ରରେ ଏ ପତ୍ରିକା ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲା । ଏ ପତ୍ରିକାରେ ପ୍ରକାଶିତ ତଥ୍ୟ ଓ ସମ୍ବାଦକୁ ଇଂରାଜୀରେ ଅନୁବାଦ କରି ବିଚିତ୍ରାନନ୍ଦ ନିୟମିତ ଭାବେ ସରକାରଙ୍କ ନିକଟରେ ଉପସ୍ଥାପିତ କରି ପ୍ରତିକାର ଲୋଡୁଥିଲେ । ଏ ପତ୍ରିକା ଥିଲା ବିଚିତ୍ରାନନ୍ଦଙ୍କ ମାନସ ସନ୍ତାନ । ବିଚିତ୍ରାନନ୍ଦଙ୍କ ଅକୁଣ୍ଠ ସାହାଯ୍ୟ, ପୃଷ୍ଠପୋଷକତା ହେତୁ ପତ୍ରିକା କିଭଳି ପ୍ରତିଷ୍ଠା ଲାଭ କରିଥିଲା ଏକଥା 'ଉତ୍କଳ ଦୀପିକା'ରେ ଲିପିବଦ୍ଧ ହୋଇଛି ।

ଓଡିଶାରେ ଆଧୁନିକ ଶିକ୍ଷା ପ୍ରଚଳନ ଓ ପ୍ରସାର ଦିଗରେ ବିଚିତ୍ରାନନ୍ଦଙ୍କ ବଳିଷ୍ଠ ଅବଦାନ ରହିଛି । ଊନବିଂଶ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧର ଓଡ଼ିଶାରେ ପ୍ରତିଷ୍ଠିତ ରେଭେନ୍‌ସା କଲେଜ, କଲେଜିଏଟ୍ ସ୍କୁଲ୍, ପ୍ୟାରି ମୋହନ ଏକାଡେମୀ ଆଦି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାରେ ବିଚିତ୍ରାନନ୍ଦଙ୍କ ଉଦ୍ୟମ ଓ ଆର୍ଥିକ ସହାୟତା ବହୁ ଭାବରେ ସାହାଯ୍ୟ କରିଛି । ମୁସଲମାନ ମରହଟ୍ଟା ଅମଳର ସଂସ୍କୃତ ବିଦ୍ୟାଳୟ ଓ ଗ୍ରାମ୍ୟ ଚାଟଶାଳୀକୁ ନେଇ ଥିଲା ପାରମ୍ପରିକ ଶିକ୍ଷା ବ୍ୟବସ୍ଥା । ଯେଉଁ ଇଂରାଜୀ ଶିକ୍ଷାପ୍ରାପ୍ତ ହେଲେ ଓଡ଼ିଆ ଲୋକେ ସରକାରୀ ଦପ୍ତରରେ ପ୍ରବେଶ କରିପାରନ୍ତେ ଓ ଭାବବିନିମୟ କରିପାରନ୍ତେ ତା'ର ସୁଯୋଗ ନଥିଲା । ଏହାର ସୁଯୋଗ ନେଇ ବଙ୍ଗାଳୀମାନେ ସରକାରୀ ଦପ୍ତରରେ ଏକାଧିପତ୍ୟ ବିସ୍ତାର କରିଥିଲେ । ଯେଉଁ କେତେକ ଆଧୁନିକ ବିଦ୍ୟାଳୟ ଆରମ୍ଭ ହେଲା, ସେଥିରେ ବଙ୍ଗଳା ଭାଷାକୁ ମାଧ୍ୟମ ଭାବରେ ଚଳାଇ ଦେଲେ । ଓଡିଆ ଭାଷା ଉପଯୁକ୍ତ ନୁହେଁ ଓ ବିଦ୍ୟାଳୟରେ ପ୍ରଚଳନ ପାଇଁ ସ୍ୱତନ୍ତ୍ର ଆବଶ୍ୟକତା ନାହିଁ ବୋଲି ସରକାରଙ୍କ ହୃଦ୍‌ବୋଧ କରାଇବାରେ ଉଦ୍ୟମ ହୋଇଥିଲା । କଲିକତା ଶାସନର କେନ୍ଦ୍ର ହେତୁ ବଙ୍ଗାଳୀମାନଙ୍କ ପାଇଁ ଏହା ସହଜ ହେଉଥିଲା । ଏହାର ପ୍ରତିବାଦରେ ଓଡ଼ିଶାର ବିଦ୍ୟାଳୟ ଓ ପ୍ରଶାସନରେ ଓଡିଆ ଭାଷା ପ୍ରଚଳନ ପାଇଁ ଉଦ୍ୟମ ଆରମ୍ଭ ହେଲା । ସେଥିରେ ପ୍ରେରଣାଦାତା ଥିଲେ ବିଚିତ୍ରାନନ୍ଦ । ଓଡ଼ିଶାର ସାଂସ୍କୃତିକ ଇତିହାସରେ 'ଭାଷା ଆନ୍ଦୋଳନ' ଭାବରେ ଏହା ବିଦିତ । ବିଚିତ୍ରାନନ୍ଦଙ୍କ ସହିତ ଗୌରୀଶଙ୍କର, ବିଚ୍ଛନ୍ଦଚରଣ, ଫକୀରମୋହନ ଆଦି ମନୀଷୀଗଣ ଏ ସଂଗ୍ରାମରେ ପ୍ରବିଷ୍ଟ ହୋଇଥିଲେ । ଆଧୁନିକ ବିଦ୍ୟାଳୟରେ ଓଡ଼ିଆ ପାଠ୍ୟ ପୁସ୍ତକ ଅଭାବ ପୂରଣ ପାଇଁ ଏମାନେ ପାଠ୍ୟ ପୁସ୍ତକ ରଚନା କରିବାକୁ ଲାଗିଲେ । ବିଚିତ୍ରାନନ୍ଦଙ୍କ ରଚିତ 'କୃଷି ବିଜ୍ଞାନ' ସେ ଦିନର ପାଠ୍ୟ ପୁସ୍ତକ ପାଇଁ ଉଦ୍ଦିଷ୍ଟ ଥିଲା । ଏ ପୁସ୍ତକର ୨୫୦ ଖଣ୍ଡ ବଙ୍ଗ ସରକାର କିଣିନେଇ ଜମିଦାରମାନଙ୍କ ମଧ୍ୟରେ ବିତରଣ କରିଥିଲେ । ବହୁକାଳ ଯାଏଁ ଚଳୁଥିବା ଏହା ଥିଲା କୃଷି ସମ୍ପର୍କିତ ଏକମାତ୍ର ପାଠ୍ୟପୁସ୍ତକ । ୨୬.୦୭.୧୮୭୩ରେ ଉତ୍କଳ ଦୀପିକାରେ ଏ ପୁସ୍ତକର ସମୀକ୍ଷା ହୋଇଥିଲା । ସଂସ୍କୃତ କୃଷି ପରମ୍ପରା ଉର୍ଦ୍ଧ୍ୱ, ଦୌଲତେ ହିନ୍ଦ ଓ ପ୍ରଚଳିତ ଡ଼ାକବଚନମାନ ଆଲୋଚନାପୂର୍ବକ ଏହା ରଚିତ ହୋଇଥିଲା । ଉତ୍କୃଷ୍ଟ କୃଷିକାର୍ଯ୍ୟ ପାଇଁ ଯାହା ଜାଣିବା ଆବଶ୍ୟକ ତାହା ଏ ପୁସ୍ତକରେ ସନ୍ନିବେଶିତ ହୋଇଛି । ଓଡ଼ିଶାରେ ବ୍ରିଟିଶ ସାମ୍ରାଜ୍ୟର ଇତିହାସ ନାମକ ଅନ୍ୟ ଏକ ପୁସ୍ତକ ଗୋବିନ୍ଦ ରଥ ଓ ଗୌରୀଶଙ୍କରଙ୍କ ସହ ମିଶି ରଚନା କରିଥିଲେ ବିଚିତ୍ରାନନ୍ଦ । କରଣମାନଙ୍କ ଆଦିବୃତ୍ତାନ୍ତ ବିଷୟରେ ଏକ ପୁସ୍ତକ ମଧ୍ୟ ସେ ଲେଖିଛନ୍ତି । ବିଚିତ୍ରାନନ୍ଦଙ୍କ ଉଦ୍ୟମରେ ରେଭେନ୍‌ସା ସାହେବଙ୍କ ସହାୟତାରେ ୧୮୬୮ ମସିହାରୁ ଓଡ଼ିଆ ଭାଷା ଓଡ଼ିଶାର ବିଦ୍ୟାଳୟରେ ପ୍ରଚଳନ ପାଇଁ ଆଦେଶ ମିଳିଥିବା ବେଳେ ପାଠ୍ୟପୁସ୍ତକ ଅଭାବ ଦର୍ଶାଇ ବଙ୍ଗାଳୀ ଅଫିସରମାନେ ଏହାକୁ କାର୍ଯ୍ୟକାରୀ କରି ଦେଉ ନଥିଲେ । ଓଡ଼ିଆ ପାଠ୍ୟପୁସ୍ତକ ରଚିତ ହୋଇ ଯିବାରୁ ୧୮୬୯ରେ ଓଡ଼ିଆ ଭାଷା ବଙ୍ଗ ସରକାରଙ୍କ ଦ୍ୱାରା ଓଡ଼ିଆ





ବିଦ୍ୟାଳୟର ଭାଷାଭାବେ ସ୍ୱୀକୃତ ଲାଭ କରିଥିଲା । ଏତକ ନହୋଇ ଥିଲେ ଓଡ଼ିଆ ଭାଷାର ସ୍ଥିତି ଭିନ୍ନ ହୋଇ ଥାଆନ୍ତା ।

ଇଂରେଜ ଶାସନରେ ସେତେବେଳେ ଓଡ଼ିଶା ମାନ୍ଦ୍ରାଜ, ବଙ୍ଗଳା ଓ ମଧ୍ୟପ୍ରଦେଶ ସହିତ ମିଶି ୩ ଭାଗରେ ବିଭକ୍ତ ହୋଇ ଶାସିତ ହେଉଥିଲା । ଭାଷାଭିତ୍ତିରେ ଉତ୍କଳକୁ ଏକତ୍ର କରିବାକୁ ଉତ୍କଳ ସମ୍ମିଳନୀ ସଂଗ୍ରାମ ଆରମ୍ଭ କରିବାର ବହୁ ପୂର୍ବରୁ ବିଚିତ୍ରାନନ୍ଦ ପ୍ରଥମ ଉଦ୍ୟମ ଆରମ୍ଭ କରିଥିଲେ । ୧୮୭୫ ମସିହାରେ ବଙ୍ଗପ୍ରଦେଶର ଛୋଟଲାଟ୍ ସାର୍ ରିଚାର୍ଡ ଟେମ୍ପଲ ବାଲେଶ୍ୱର ଗସ୍ତକାଳରେ ବିଚିତ୍ରାନନ୍ଦ ଓ ବାଲେଶ୍ୱର ରାଜା ଶ୍ୟାମାନନ୍ଦ ଦେଓଙ୍କ ସ୍ୱାକ୍ଷରରେ ଗଂଜାମ ସହିତ ଓଡ଼ିଶା ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ, ରେଳପଥର ବିକାଶ ଓ ସବ୍‌ଡିଭିଜନ୍ ସଦର ମହକୁମାରେ ହାଇସ୍କୁଲ୍ ସ୍ଥାପନ ପାଇଁ ଏକ ସ୍ମାରକପତ୍ର ପ୍ରଦାନ କରାଯାଇଥିଲା । ନିଜ ମୃତ୍ୟୁ ପର୍ଯ୍ୟନ୍ତ ବିଚିତ୍ରାନନ୍ଦ ଏ ଦିଗରେ ଉଦ୍ୟମ ଚଳାଇ ରଖିଥିଲେ । ମୃତ୍ୟୁର କିଛିଦିନ ପୂର୍ବରୁ ସ୍ୱତନ୍ତ୍ର ଉତ୍କଳ ଗଠନ ଓ ଉତ୍କଳର ବିକାଶ ପାଇଁ ୧୮୭୪ ନଭେମ୍ବର ୮ ତାରିଖରେ କଟକ ଦରବାରକୁ ଆସିଥିବା ଓଡ଼ିଶାର ରାଜନ୍ୟବର୍ଗ, ଜମିଦାର ଓ ବିଶିଷ୍ଟ ବ୍ୟକ୍ତିଙ୍କୁ ବିଚିତ୍ରାନନ୍ଦ ନିଜ ସରକାରୀ ବାସଭବନ ହତାରେ ଏକ ବନ୍ଧୁମିଳନରେ ଏକତ୍ରିତ କରାଇଥିଲେ । ଏହାକୁ 'ମେଳ ବର୍ଦ୍ଧିନୀ ସଭା' ଭାବରେ ସମ୍ବାଦପତ୍ର ସମ୍ବାଦ ପରିବେଷଣ କରିଥିଲେ । ଏହା ଥିଲା ସ୍ୱତନ୍ତ୍ର ଉତ୍କଳ ଗଠନର ପ୍ରାରମ୍ଭିକ ପ୍ରୟାସ । ଗମନାଗମନର ସୁବିଧା ପାଇଁ କଲିକତା ଭଳି କଟକରେ ଘୋଡାଗାଡି ଚଳାଇବାର ଉଦ୍ୟମ କରିଥିଲେ ବିଚିତ୍ରାନନ୍ଦ । ଏଥିପାଇଁ କଟକରେ ୪ଟି ପାଣସାହି ବସାଇଥିଲେ । କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ନେଇ ଗ୍ୟାରେଜ କମ୍ପାନୀ ଗଠନ କରିଥିଲେ । ଜାତିଯିବାର ଭୟରୁ ଅନେକ ଏହାର ବିରୋଧ କଲେ । କମ୍ପାନୀ ବିରୁଦ୍ଧରେ ଲେଖାଗଲା 'ପଇସା ପକାଇ ଗାଡିରେ ବସିବୁ ମନା ନାହିଁ ପାଣହାଡି, ଟଭାନାନୀ ଚାହାଁଲୋ, ମାଡିଆସେ ଘୋଡାଗାଡି' ।

ମଧୁବାବୁଙ୍କ ସହ ବିଚିତ୍ରାନନ୍ଦଙ୍କ ସମ୍ପର୍କ ଥିଲା ଏକାନ୍ତ ଅନ୍ତରଙ୍ଗ । ଅମଲା ଚାକିରିଟିଏ ପାଇଁ କର୍ମ ଅନ୍ୱେଷଣରେ ଆସିଥିବା ମଧୁସୂଦନ ବିଚିତ୍ରାନନ୍ଦଙ୍କ ସାହଚର୍ଯ୍ୟରେ ଉତ୍କଳଗୌରବରେ ବିଭୂଷିତ ହୋଇଗଲେ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ଓ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ମଧୁବାବୁଙ୍କ ଜୀବନୀ ଲେଖିବା ବେଳେ ଏ ବିଷୟରେ ହୃଦୟସ୍ପର୍ଶୀ ବର୍ଣ୍ଣନା କରିଛନ୍ତି । ପ୍ରଥମ ସାକ୍ଷାତ ସମୟରେ ମଧୁସୂଦନଙ୍କ ଭିତରେ ଭବିଷ୍ୟତ ଓଡ଼ିଶାର ବଳିଷ୍ଠ ନେତୃତ୍ୱର ଝଲକଟିଏ ଦେଖି ତାଙ୍କର ଗତିପଥ ନିର୍ଦ୍ଧାରିତ କରିଦେଇଥିଲେ ବିଚିତ୍ରାନନ୍ଦ । ଅର୍ଥାଭାବରୁ ଉଚ୍ଚଶିକ୍ଷା ସ୍ୱପ୍ନରୁ ବଂଚିତ ମଧୁସୂଦନଙ୍କୁ କଲିକତା ପଠାଇ ନିଜର ଆତ୍ମୀୟ ନୀଳମାଧବ ଦାସଙ୍କ ତତ୍ତ୍ୱାବଧାନରେ ରଖି ତାଙ୍କୁ ମହାନ ଜନନାୟକ ହେବାର ପଥ ପରିଷ୍କାର କରିଦେଇଥିଲେ । ଯୁବକ ମଧୁସୂଦନଙ୍କ ଅନ୍ତଃଚେତନାରେ ସ୍ୱଦେଶ ପ୍ରେମର ସୁପ୍ତ ଭ୍ରୂଣଟିର ଉନ୍ମେଷ ଭୂମିରେ ଥିଲେ ବିଚିତ୍ରାନନ୍ଦ ।

ବିଚିତ୍ରାନନ୍ଦଙ୍କ ୪୮ ବର୍ଷର ସ୍ୱଳ୍ପ ଅଥଚ ମହାର୍ଘ ଜୀବନ ଥିଲା ଜାତି ପାଇଁ ନିବେଦିତ । ଦେଢଶହ ବର୍ଷ ତଳର ଏ ମହନୀୟ ଦେଶଭକ୍ତଙ୍କୁ ଓଡିଆ ଜାତି ଆଜି ଭୁଲି ଗଲାଣି । ନେତାଙ୍କ ଦୀର୍ଘ ପଟୁଆରରେ ସେ ଆଜି ନାହାନ୍ତି । ନେତା ଓ ନେତୃତ୍ୱର ପରିଭାଷା ଆଜି ବଦଳି ଯାଇଛି । କୌଳୀନ୍ୟ ଲୁଣ୍ଠିତ ହୋଇଯାଇଛି । ତ୍ୟାଗ ହିଁ ଥିଲା ସେ କାଳ ନେତାଙ୍କ ଆଦର୍ଶ ଓ ଜାତିର କଲ୍ୟାଣ ଥିଲା ତା'ର ସଂକଳ୍ପ । କିଛି ବ୍ୟତିକ୍ରମକୁ ଛାଡି ଦେଲେ ଆତ୍ମସ୍ୱାର୍ଥ ଆଜି ନେତାଙ୍କର ଆଦର୍ଶ ଓ ଆସନଟି ହେଉଛି ଏକ ସୁଯୋଗ । ତ୍ୟାଗ, ତପସ୍ୟା ଉତ୍ସର୍ଗର ମହାର୍ଘ ବିଭୂତି ମଣ୍ଡିତ ଆଦିନେତାମାନେ ଆଜି ଅପାଙ୍‌କ୍ତେୟ ହେବା ସ୍ୱାଭାବିକ ।

ସେ ଦିନର କଟକରେ ଆଜିଭଳି ନାଗରିକ ପରିଷଦ ନଥିଲା । କିନ୍ତୁ ବିଚିତ୍ରାନନ୍ଦ ଥିଲେ ଅଘୋଷିତ ନାଗରିକ ପରିଷଦର ପୁରୋଧା । ଜ୍ଞାନ ଓ ଦକ୍ଷତା ଯୋଗୁଁ ସରକାର ଗଠନ କରିଥିବା ସେଦିନର ଅଧିକାଂଶ ଗୁରୁତ୍ୱପୂର୍ଣ୍ଣ କମିଟିରେ ସେ ଥିଲେ ପ୍ରମୁଖ ସଭ୍ୟ । କଟକର ସାଧାରଣ ଶିକ୍ଷା କାର୍ଯ୍ୟ କମିଟି, ଓଡିଆ ପୁସ୍ତକର ଦୋଷାଦୋଷ ବିଚାର କମିଟି, ବିଦ୍ୟାଳୟ ପାଠ ଉପଯୋଗୀ ପୁସ୍ତକ ପରୀକ୍ଷା ସଭାରେ ବିଚିତ୍ରାନନ୍ଦ ସଭ୍ୟ ଭାବରେ ରହି ଦିଗ୍‌ଦର୍ଶନ ଦେଉଥିଲେ (ଉତ୍କଳଦୀପିକା ୩/୪, ୧୦/୭, ୨୦/୧୧, ୧୯୬୯ ମସିହା) । ତାଙ୍କର ମତ ଓ ମନ୍ତବ୍ୟକୁ ସରକାର ଗ୍ରହଣ କରୁଥିଲେ । ଦେବୋତ୍ତର ବିଭାଗ ତରଫରୁ ବିଚିତ୍ରାନନ୍ଦ ପୁରୀ ଜଗନ୍ନାଥବଲ୍ଲଭ ମଠର ପରିଚାଳନାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛନ୍ତି । ଆବଶ୍ୟକ ସମୟରେ ଗଜପତି ମହାରାଜାଙ୍କୁ ସହାୟତା କରିଛନ୍ତି ସଦାବର୍ତ୍ତ

ସମ୍ପତ୍ତିର ସୁରକ୍ଷା ଓ ଅନୁସନ୍ଧାନରେ । ଓଡ଼ିଶାରେ ପ୍ରଚଳିତ ପଞ୍ଜିକାର ସେ ଥିଲେ ଆଦ୍ୟ ପ୍ରକାଶକ । ତାଙ୍କର ମହନୀୟ କୀର୍ତ୍ତି ବିଷୟରେ ସୂଚନା ଦେବାକୁ ଯାଇ, ଦୀପିକା ଲେଖିଛନ୍ତି–

''ଓଡ଼ିଶାର ଗତ ୧୦/୧୨ ବର୍ଷ ମଧ୍ୟରେ ଯାହା କିଛି ଉନ୍ନତି ହୋଇଛି, ତହିଁରେ ଅଧିକାଂଶ ତାହାଙ୍କ କୀର୍ତ୍ତି ଅଟଇ । X X X ଯେତେ ସଭା ଓ ଯେତେ ହିତକର କାର୍ଯ୍ୟର ଅନୁଷ୍ଠାନ ହୋଇଅଛି, ସବୁଥିରେ ଏହାଙ୍କର ଯତ୍ନ ଓ ଶ୍ରମ ବିଶେଷ ରୂପେ ଲକ୍ଷିତ ହୋଇଅଛି । ଏହାଙ୍କଠାରେ ସମସ୍ତ ଶ୍ରେଣୀର ଲୋକ ସନ୍ତୁଷ୍ଟ ଥିବାରୁ ସମସ୍ତଙ୍କର ଐକତା ବିଷୟରେ ଏ ମହାଶୟ ମଧ୍ୟସ୍ଥ ଥିଲେ ।''

ନିଜର ଶ୍ରମ, ଶକ୍ତି ଓ ସାମର୍ଥ୍ୟ ସହିତ ଉପାର୍ଜନର ମୁଖ୍ୟଭାଗ ଦେଶ ସେବାରେ ସେ ବିନିଯୋଗ କରିଥିଲେ । ତାଙ୍କ ଦ୍ୱାରରୁ କେହି ସାହାଯ୍ୟ ପ୍ରାର୍ଥୀ ଶୂନ୍ୟହସ୍ତରେ ଫେରୁନଥିଲେ । ମୃତ୍ୟୁ ସମୟକୁ ସେ ଋଣଗ୍ରସ୍ତ ଥିବାର ଜଣାଯାଏ । ବହୁମୂତ୍ର ରୋଗରେ ପୀଡିତ ହୋଇ ସେ ୪୮ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଛନ୍ତି । ତାଙ୍କର ତିରୋଧାନରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଉତ୍କଳଦୀପିକା କହିଛନ୍ତି, ''ଅନେକ ତପସ୍ୟା ବଳରେ ହତଭାଗିନୀ ଓଡ଼ିଶା ଏପରି ପୁତ୍ର ଗୋଟିଏ ଲାଭ କରିଥିଲା । ସମ୍ପ୍ରତି ପରମେଶ୍ୱର ତାହାଙ୍କୁ ଆପଣା ନିକଟକୁ ଘେନି ଯିବାରେ ଓଡ଼ିଶା ଅନ୍ଧକାର ହେଲା । ଆଉ କେହି ସେପରି ନାହିଁ ଯେ ତାହାକୁ ଦେଖି ଏ ଦାରୁଣ ଶୋକ ସନ୍ତାପର କିଛିମାତ୍ର ଉପଶମ ହେବ । (ଉ.ଦୀପିକା ତା୦୭.୦୮.୧୮୭୫ ମସିହା, ଭାଗ ୧୦ ସଂଖ୍ୟା ୩୨) ।''

ଅବସରପ୍ରାପ୍ତ ପ୍ରାଧ୍ୟାପକ
ଈଶ୍ୱରପୁର, ମଙ୍ଗଳପୁର
ଯାଜପୁର–୭୫୫୦୧୧

# ଗୁରୁ ପ୍ରଣାମ

**ସରୋଜ ରଞ୍ଜନ ପଟ୍ଟନାୟକ**

ଆସିଅଛି ଆଜି ଗୁରୁଦିବସ
ସଭିଙ୍କ ମୁଖରେ ଫୁଟାଇ ହସ ।

ପୁଣ୍ୟ ଭାରତର ଶ୍ରେଷ୍ଠ ସନ୍ତାନ
ପୂର୍ବ ରାଷ୍ଟ୍ରପତି ସେ ରାଧାକୃଷ୍ଣନ୍ ।

ଦର୍ଶନ ଶାସ୍ତ୍ରରେ ଅତି ପ୍ରବୀଣ
ଶିକ୍ଷାରେ ସେ ଅଟନ୍ତି ମହାନ୍ ।

ତାଙ୍କ ଜନ୍ମଦିନ ସ୍ମରଣେ ଆଜି
ଶିକ୍ଷା ଅନୁଷ୍ଠାନେ ପଡଇ ହେଜି ।

କୋଟି କୋଟି ଜନତାଙ୍କ ଘେନ ପ୍ରଣାମ
ଆଶୀର୍ବାଦ କର ହେ ଶ୍ରେଷ୍ଠ ସନ୍ତାନ ।

ସା– କୁଟୁଣୀ, ପୋ–କୋରପିଠା
ଥାନା– ଓଡଗାଁ, ଜିଲ୍ଲା– ନୟାଗଡ–୭୫୨୦୮୧

# ଗୁରୁ ଦିବସର ଅନୁଚିନ୍ତା

**ଜୟଶ୍ରୀ ପଟ୍ଟନାୟକ**

ଗୁରୁ ବ୍ରହ୍ମା,ଗୁରୁ ବିଷ୍ଣୁ, ଗୁରୁ ଦେବ ମହେଶ୍ୱର
ଗୁରୁ ସାକ୍ଷାତ ପରଂବ୍ରହ୍ମ ତସ୍ମୈଶ୍ରୀ ଗୁରବେ ନମଃ ।

ଶିକ୍ଷା ଓ ସଂସ୍କୃତି ଯେକୌଣସି ଦେଶର ସଭ୍ୟତାର ମାନଦଣ୍ଡ । ସଂସାରର ସୃଜନଶୀଳ ସ୍ଥିତିରେ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ସ୍ଥାନ ଚିର ବନ୍ଦନୀୟ, ଅଭିନନ୍ଦନୀୟ । ଏମାନେ ଜାତୀୟ ଜୀବନର ଆତ୍ମାର ପରିଚୟ । ସବୁ ଶିକ୍ଷା ମୂଳରେ ଗୁରୁଙ୍କ ଆଦର୍ଶ ଓ ଅବଦାନ ଯଥେଷ୍ଟ ରହିଥାଏ । ଶିକ୍ଷା ମଣିଷର ଭାବମୂର୍ତ୍ତି ବଦଳାଏ, ମଣିଷକୁ ସୁମାର୍ଜିତ କରାଏ, ସୁମାର୍ଗରେ ଯିବା ପାଇଁ ପ୍ରବର୍ତ୍ତାଏ । ଶିକ୍ଷା ସର୍ବଦା ଅଗାଧ ଗାମ୍ଭୀର୍ଯ୍ୟରେ ପରିପୂର୍ଣ୍ଣ । ଗୁରୁ ଶବ୍ଦର ଅର୍ଥ ହେଉଛି 'ଗୁ' ଅର୍ଥ ଅନ୍ଧକାର, 'ରୁ' ଅର୍ଥ ଆଲୋକ ଅର୍ଥାତ ଯିଏ ଅନ୍ଧକାରରୁ ଜ୍ଞାନରୂପୀ ଆଲୋକକୁ ଆହରଣ କରିବାକୁ ବାଟ ଦେଖାନ୍ତି, ସେ ହିଁ ପ୍ରକୃତରେ ଗୁରୁ ପଦବାଚ୍ୟ ।

ଗୁରୁ ଚିରକାଳ ନମସ୍ୟ ଓ ପୂଜ୍ୟ । ଗୁରୁ ଅଜ୍ଞାନ ଅନ୍ଧକାର ଦୂର କରି ଶିଷ୍ୟକୁ ଜ୍ଞାନ ପ୍ରଦାନ କରନ୍ତି ।

ବିଦ୍ୟାର୍ଥୀମାନଙ୍କ ପାଇଁ ଗୁରୁ ହେଉଛନ୍ତି ବନ୍ଧୁ, ଦାର୍ଶନିକ ଏବଂ ପଥ ପ୍ରଦର୍ଶକ । ଜଗନ୍ନାଥ ଦାସଙ୍କ ଭାଗବତରେ ଅଛି–

ଗୁରୁଙ୍କୁ ନ ମଣିବ ନର, ଗୁରୁ ହିଁ ସାକ୍ଷାତ ଈଶ୍ୱର ।

ଶିକ୍ଷକ, ଅଧ୍ୟାପକ, ଇନ୍‌ଷ୍ଟ୍ରକ୍‌ଟର,ଡେମନଷ୍ଟ୍ରେଟର ସମସ୍ତେ ଛାତ୍ରଛାତ୍ରୀଙ୍କ ଦୃଷ୍ଟିରେ ଗୁରୁତୁଲ୍ୟ । ଗୁରୁ ଶବ୍ଦ ସଦ୍‌ଗୁରୁକୁ ବୁଝାଏ । ଅସଦ୍ ଗୁରୁ, ଗୁରୁ ପଦବାଚ୍ୟ ନୁହେଁ । ଗୁରୁଙ୍କ ଚରିତ୍ର ସର୍ବଦା ବିଦ୍ୟାର୍ଥୀ ପ୍ରତି ସୁନ୍ଦର, ସାବଲୀଳ ହେବା ଦରକାର । ଶିଶୁମାନଙ୍କର ଅନ୍ତର୍ନିହିତ ଗୁଣାବଳୀକୁ ବିକଶିତ କରିବା ଗୁରୁଙ୍କର ପ୍ରଧାନ କର୍ତ୍ତବ୍ୟ । ପିଲାମାନଙ୍କର ସୃଜନୀଶକ୍ତିର ବିକାଶ ସଙ୍ଗେ ସଙ୍ଗେ ସେମାନଙ୍କର ଧିଶକ୍ତିର ବିକାଶ କରାଇବା ଏବଂ ସୃଜନଶୀଳ ଗତିପଥରେ ବାଟ କଢ଼େଇନେବା ଶିକ୍ଷକର ଗୁରୁ ଦାୟିତ୍ୱ ।

ଗାନ୍ଧୀଙ୍କ ମତରେ ଶିଶୁର ସାମଗ୍ରିକ ଅଭିବୃଦ୍ଧି ହିଁ ଶିକ୍ଷା ।

ଶିକ୍ଷା ମଣିଷର ଏକ ମୌଳିକ ଅଧିକାର, ଏକ ପ୍ରାକୃତିକ ବିଭବ । ପ୍ରାଗୈତିହାସିକ ଯୁଗରେ ମଣିଷ ପରିବେଶ ସହିତ ନିଜକୁ ଖାପ ଖୁଆଇ ଚଳେଇବା ପାଇଁ ଯେଉଁ ଚିନ୍ତନ ଓ ଧୀଶକ୍ତିର ବ୍ୟବହାର କରୁଥିଲା, ସେହିଠାରୁ ଆରମ୍ଭ ହେଲା ମଣିଷର ଶିକ୍ଷା । ବିଦ୍ୟାଳୟ ଏପରି ଏକ ସ୍ଥାନ ଯେଉଁଠାରେ ପିଲାଟିର ଭବିଷ୍ୟତ ଗଢ଼ିବା ପାଇଁ ପିତାମାତା ଶିଶୁଟିକୁ ଛାଡିଥାନ୍ତି । ଗୁରୁଙ୍କୁ ଈଶ୍ୱର ସମ ଜ୍ଞାନ କରିବା ଦ୍ୱାରା ଆମର ମନରେ ଯାବତୀୟ ଭୌତିକ ଜ୍ଞାନ ଓ ଦିବ୍ୟଜ୍ଞାନ ଲାଭ କରିବା ନିମିତ୍ତ ଶ୍ରଦ୍ଧା ଜାତ ହୋଇଥାଏ ।

ଗୁରୁଙ୍କ ଆଦେଶକୁ ଶ୍ରଦ୍ଧା ଓ ଭକ୍ତିର ସହିତ ପାଳନ କଲେ ଆମେ ତମ ଗୁଣ, ରଜ ଗୁଣକୁ ଅତିକ୍ରମ କରି ସତ୍ୱ ଗୁଣରେ ଉପନୀତ ହେବା । ଫଳରେ ଆମ୍ଭେମାନେ ବହୁ ଉଚ୍ଚସ୍ତରକୁ ଯାଇପାରିବା । ଗୁରୁଭକ୍ତି ଓ ବ୍ରହ୍ମଚର୍ଯ୍ୟ ବଳରେ ବେଦବ୍ୟାସ, ଚତୁର୍ବେଦ, ଅଷ୍ଟାଦଶ ପୁରାଣ ଭାଗବତ ଗୀତା, ଶ୍ରୀମଦ୍ ଭାଗବତମ୍ ରଚନା କରି କାଳଜୟୀ ହୋଇ ପାରିଛନ୍ତି । ସ୍ୱାମୀ ବିବେକାନନ୍ଦ, ଗୁରୁକୃପା ଲାଭକରି ସ୍ୱୀୟ ଜ୍ଞାନ ବଳରେ ସମଗ୍ର ବିଶ୍ୱକୁ ଜୟ କରି ପାରିଥିଲେ ।

ପ୍ରାଚୀନ ଭାରତରେ ପ୍ରତିଷ୍ଠିତ ବିଦ୍ୟାଳୟ ନ ଥିଲା କି ବେତନଭୋଗୀ କର୍ମଚାରୀ ଶିକ୍ଷା ପଦରେ ନିଯୁକ୍ତ ହେଉ ନ

ଥିଲେ । ତାଳପତ୍ର ପୋଥି ଗୁରୁକୁଳ ଶିକ୍ଷା ଥିଲା ଶିକ୍ଷାର ମାଧ୍ୟମ । ଗୁରୁମାନେ ନିଷ୍କପଟ, ନିରଳସ ଶିକ୍ଷାଦାନ କରି ଆଶ୍ରମରେ ଉତ୍ତମ ଚରିତ୍ରର ମନୁଷ୍ୟ ସୃଷ୍ଟି କରୁଥିଲେ । ଶିଷ୍ୟମାନେ ଶାନ୍ତ, ଶୃଙ୍ଖଳିତ ଜୀବନ ଅତିବାହିତ କରୁଥିଲେ । ଶସ୍ତ୍ର ଶାସ୍ତ୍ର, ନିତିଶିକ୍ଷା, ଗୋପାଳନ, କୃଷି, ବୃକ୍ଷରୋପଣ, ଖାଦ୍ୟ ସଂରକ୍ଷଣ ଓ ଧର୍ମ ଆଚରଣ ଦ୍ୱାରା ମନୁଷ୍ୟ ମନର ସଂଯମ ରକ୍ଷା କରୁଥିଲେ । ବେଦାଧ୍ୟୟନ ଥିଲା ମୁଖ୍ୟ ବିଷୟ । ତକ୍ଷଶିଳା, ନାଳନ୍ଦା, ସାରନାଥ, ଉଜ୍ଜୟିନୀ ଥିଲା ପ୍ରସିଦ୍ଧ ଶିକ୍ଷାନୁଷ୍ଠାନ । ସେଠାରେ ଗୁରୁ–ଶିଷ୍ୟ ପରଂପରା ଅତି ପବିତ୍ର ଓ ମଧୁର ଥିଲା । ଗୁରୁ ବ୍ରହ୍ମା ରୂପରେ ସୃଷ୍ଟି କର୍ତ୍ତା ଅର୍ଥାତ ସେ ନୂଆ ଜିନିଷ ସୃଷ୍ଟି କରି ଶିଷ୍ୟକୁ ନବଜନ୍ମ ଦିଅନ୍ତି । ଗୁରୁ ବିଷ୍ଣୁ ରୂପରେ ପାଳନକର୍ତ୍ତା ଅର୍ଥାତ୍ ଶିଷ୍ୟକୁ ନିଜ ସନ୍ତାନ ଭାବି ଆଦର କରନ୍ତି । ସ୍ନେହପୂର୍ଣ୍ଣ ବ୍ୟବହାର କରି ସତ୍ ଉପଦେଶ ଦିଅନ୍ତି । ଅଜ୍ଞାନ ଅନ୍ଧକାର ଦୂର କରି ଜ୍ଞାନାଲୋକ ପ୍ରଦାନ କରନ୍ତି । ବିପଥଗାମୀ ମାନବ ସମାଜକୁ ସତ୍‌ମାର୍ଗରେ ପରିଚାଳିତ କରନ୍ତି । ଏ ଧରାପୃଷ୍ଠରେ ଯୁଗେ ଯୁଗେ ଅନେକ ସଦ୍‌ଗୁରୁଙ୍କ ଆବିର୍ଭାବ ଘଟିଛି । ସେମାନଙ୍କ ମଧ୍ୟରେ ନିଜର ନିଷ୍ଠା, ପବିତ୍ରତା ସତ୍ ଚରିତ୍ର ଓ ପ୍ରଗାଢ଼ ଜ୍ଞାନ ପାଇଁ ଗୁରୁ–ଶିଷ୍ୟମାନଙ୍କ ମନ ମନ୍ଦିରରେ ପୂଜାର ପାତ୍ର ରୂପେ ଚିର ସ୍ମରଣୀୟ ହୋଇ ରହୁଥିଲେ । ଡଃ. ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ଜନ୍ମ ୧୮୮୮ ମସିହା ସେପ୍ଟେମ୍ବର ମାସ ୫ ତାରିଖରେ ମାନ୍ଦ୍ରାଜର ତିରୁତାନୀ ଗ୍ରାମରେ ହୋଇଥିଲା । ପ୍ରତିବର୍ଷ ସେପ୍ଟେମ୍ବର ମାସ ୫ ତାରିଖରେ ତାଙ୍କ ନାମକୁ ସ୍ମରଣ କରି ପାଳନ କରାଯାଏ ଗୁରୁଦିବସ । ସେ ଜଣେ ଦାର୍ଶନିକ ତଥା ପ୍ରଚଣ୍ଡ ସ୍ମୃତିଶକ୍ତିର ଗନ୍ତାଘର ଥିଲେ । ରାଧାକ୍ରିଷ୍ଣନ ତୁଳସୀ ଦୁଇ ପତ୍ରରୁ ବାସିଲା ପରି ପିଲାଦିନୁ ତାଙ୍କ ସାଙ୍ଗସାଥୀ, ଅଧ୍ୟାପକମାନେ ତାଙ୍କୁ ଖୁବ୍ ଭଲ ପାଉଥିଲେ । ସେ ଖୁବ୍ ଲାଜକୁଳା, ନମ୍ର ଓ ସୁଧୀର ଥିଲେ । ସେ ଥିଲେ ପ୍ରଭୁ ଭେଙ୍କେଟଶ୍ୱରଙ୍କ ପରମ ଭକ୍ତ । କେବଳ ହିନ୍ଦୁ ଧର୍ମରେ ନୁହଁ ଖ୍ରୀଷ୍ଟଧର୍ମରେ ମଧ ତାଙ୍କର ସୁଖ୍ୟାତି ଥିଲା ।

ମାନ୍ଦ୍ରାଜର ଖ୍ରୀଷ୍ଟିୟାନ କଲେଜରୁ ଦର୍ଶନ ଶାସ୍ତ୍ରରେ ପ୍ରଥମ ଶ୍ରେଣୀର ପ୍ରଥମ ହୋଇ ବି.ଏ ପାସ୍ କରିଥିଲେ । ତା ପରବର୍ଷ ଟିଚରସ୍ କଲେଜରୁ କୃତିତ୍ୱର ସହିତ ଏଲ.ଟି ପାସ୍ କରିଥିଲେ । ମାନ୍ଦ୍ରଜର ପ୍ରେସିଡେନସି କଲେଜରେ ଅଧ୍ୟାପକ ରୂପେ ଚାକିରି ଜୀବନ ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ମହୀଶୂର ବିଶ୍ୱବିଦ୍ୟାଳୟରେ ଦର୍ଶନ ବିଭାଗରେ ମୁଖ୍ୟ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । ସେ ହାଭାର୍ଡ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ଆନ୍ତର୍ଜାତିକ ଦର୍ଶନ କଂଗ୍ରେସରେ ଭାରତର ପ୍ରତିନିଧିତ୍ୱ କରିଥିଲେ ଏବଂ ଭାରତୀୟ ଦର୍ଶନର ପ୍ରଚାର କରିଥିଲେ । ୧୯୩୧ ମସିହାରେ ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ରୂପେ ଯୋଗ ଦେଇଥିଲେ । ଗାନ୍ଧିଜୀଙ୍କ ପରାମର୍ଶକ୍ରମେ ତଥା ମଦନମୋହନ ମାଳବ୍ୟଙ୍କ ଅନୁରୋଧକ୍ରମେ ବାରଣାସୀର ହିନ୍ଦୁ ବିଶ୍ୱ ବିଦ୍ୟାଳୟରେ ରାଧାକ୍ରିଷ୍ଣନ୍ କୁଳପତି ରୂପେ ଯୋଗ ଦେଇଥିଲେ । ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ପରାମର୍ଶକ୍ରମେ ସେ ଋଷିଆର ରାଷ୍ଟ୍ରଦୂତ ରୂପେ ନିଯୁକ୍ତ ହୋଇଥିଲେ । ସେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ଦର୍ଶନ ବିଭାଗର ଅଧ୍ୟାପକ ରୂପେ କାର୍ଯ୍ୟ କରିବାର ସୌଭାଗ୍ୟ ଲାଭ କରିଥିଲେ । ୧୯୫୨ ମସିହାରେ ସେ ଭାରତର ଉପରାଷ୍ଟ୍ରପତି ହୋଇଥିଲେ । ୧୯୬୨ ମସିହା ମଇ ମାସରେ ସେ ଭାରତର ଦ୍ୱିତୀୟ ରଷ୍ଟ୍ରପତି ରୂପେ ଶପଥ ଗ୍ରହଣ କରିଥିଲେ । ୧୯୬୩ରେ ସେ ଇଂଲଣ୍ଡର ସର୍ବୋଚ୍ଚ ଉପାଧି ଅର୍ଡର ଅଫ୍ ମେରିଟ୍‌ରେ ଭୂଷିତ ହୋଇ ଅଧିକ ଲୋକପ୍ରିୟ ହୋଇ ପାରିଥିଲେ । ୧୯୭୫ ଅପ୍ରେଲ ୧୭ ତାରିଖରେ ରାଧାକ୍ରିଷ୍ଣନ ଭାରତବାସୀଙ୍କୁ ଶୋକ ସାଗରରେ ଭସାଇ ଇହଲୀଳା ସମ୍ବରଣ କଲେ ।

ସେ ଥିଲେ ଜଣେ ଜ୍ଞାନଯୋଗୀ । ଭାରତର ତଥା ପୃଥିବୀର ବିଭିନ୍ନ ଦେଶରୁ ବିଭିନ୍ନ ସମୟରେ ବହୁ ସମ୍ମାନସୂଚକ ପଦବୀ ଓ ଉପାଧି ଲାଭ କରିଥିଲେ । ସେ ମଧ ଭାରତ ଦର୍ଶନକୁ ବିଦେଶରେ ପହଂଚାଇବାରେ ସିଦ୍ଧହସ୍ତ ଥିଲେ । ଥରେ ତାଙ୍କର କିଛି ପ୍ରିୟ ଛାତ୍ର ତାଙ୍କ ଜନ୍ମଦିନ ପାଳନ କରିବା ପାଇଁ ଅନୁରୋଧ କରନ୍ତେ, ଜଣେ ଶିକ୍ଷକ ଭାବରେ ସେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରି ସର୍ବୋଚ୍ଚ ସ୍ଥାନ ଅଳଙ୍କୃତ କରିଥିବାରୁ ଏବଂ ଶିକ୍ଷକ ସମାଜର ସମ୍ମାନାର୍ଥେ ସେ ତାଙ୍କ ଜନ୍ମ ଦିବସଟିକୁ ଗୁରୁଦିବସ ରୂପେ ପାଳନ କରିବାକୁ ପରାମର୍ଶ ଦେଇଥିଲେ । ଭାରତ ସରକାର ତାହାକୁ କାର୍ଯକାରୀ କରାଇ ତାଙ୍କୁ ସମ୍ମାନିତ କରିବା ପାଇଁ ଭାରତରେ ଗୁରୁ ପରଂପରାକୁ ବଜାୟ ରଖିବାରେ ସମର୍ଥ ହୋଇ ପାରିଛନ୍ତି । ଗୁରୁଙ୍କ ମହତ୍ତ୍ୱ ଆମେ ନିତିଦିନିଆ ଜୀବନରେ ଅନୁଭବ କରିଥାଉ । କୁମ୍ଭାର ମାଟିରେ ହାଣ୍ଡି, ମାଠିଆ ଗଢ଼ିଲା ବେଳେ ମାଟି ନରମ ଥାଏ । ମାଟି ନରମ ଥିଲାବେଳେ ହାଣ୍ଡି, ମାଠିଆ ଗଢ଼ି ହୋଇଥାଏ । ତାକୁ ବିଭିନ୍ନ ରୂପ ମଧ ଦିଆହୋଇଥାଏ । ମାଟି ଟାଣ ହେଲେ ଆଉ ଗଢି ହୁଏ ନାହିଁ । ସେହିପରି ବିଦ୍ୟାର୍ଥୀ ଜୀବନ ହେଲା ଗଠନର ସମୟ । ତାଙ୍କୁ

ଯେଉଁପରି ଗଢ଼ିବ ସେ ସେହିପରି ଗଢ଼ିହେବେ । ଯାହାଦ୍ୱାରା ବିଦ୍ୟାର୍ଥୀଗଣ ସମାଜରେ ପ୍ରତିଷ୍ଠିତ ହୋଇପାରିବେ । ଯଶ ଗୌରବ ଲାଭ କରି ପାରିବେ । ବୈଦିକ ଯୁଗର ଶିଷ୍ୟମାନେ ଜୀବନକୁ ମହନୀୟ ଓ ମଧୁମୟ କରିବାକୁ ସତ ଚେଷ୍ଟିତ ଥିଲେ । ସେମାନଙ୍କ ମଧ୍ୟରୁ ଆରୁଣୀ, ଉପମନ୍ୟୁ ଶ୍ରୀକୃଷ୍ଣ, ଏକଲବ୍ୟ ଓ କର୍ଣ୍ଣଙ୍କ ଜୀବନରୁ ଆମେ ଏହି ଆଦର୍ଶ ପାଇପାରିବା । ସେତେବେଳେ ଗୁରୁମାନେ ଶିଷ୍ୟମାନଙ୍କ ନିମନ୍ତେ ଭଗବାନ ଥିଲେ । ଗୁରୁ–ଶିଷ୍ୟ ସମ୍ପର୍କ ଖୁବ୍ ସୁନ୍ଦର ଥିଲା । ଗୁରୁ ଓ ଶିଷ୍ୟ ସଂପର୍କ ଫୁଲ ଓ ତା'ର ମହକ ପରି ଥିଲା । ଶିଷ୍ୟମାନେ ଖୁବ ଆଜ୍ଞାବହ ଥିଲେ । ଏକଲବ୍ୟ ନିଜର ବୃଦ୍ଧାଙ୍ଗୁଳିଟିକୁ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କୁ ସମର୍ପଣ କରିଥିଲେ । ଆରୁଣୀ ଗୁରୁଙ୍କ ଆଦେଶରେ ଜମିର ପାଣି ଅଟକାଇବାକୁ ଯାଇ ନିଜେ ପାଣି ସୁଅରେ ଶୋଇ ପାଣିକୁ ଅଟକାଉ ଥିଲେ । ସେତେବେଳେ ଶିଷ୍ୟମାନଙ୍କର ଅପୂର୍ବ ଧୈର୍ଯ୍ୟ ଶକ୍ତି, ସହନ ଶକ୍ତି, ନିଷ୍ଠା ଥିଲା, ଯାହା ଆଜିକାଲିର ବିଦ୍ୟାର୍ଥୀମାନଙ୍କଠାରେ ଆକାଶ କୁସୁମର ଆକାର ନେଇଛି । ଚରିତ୍ର ଗଠନ, ନୈତିକତାର ମୂଲ୍ୟବୋଧ, ଆଦର୍ଶ ଜୀବନଯାପନ ଶୈଳୀ ନଥିଲେ ଗୁରୁ–ଶିଷ୍ୟ ପରମ୍ପରା ପରିମାର୍ଜିତ ହୋଇ ପାରିବ ନାହିଁ ।

ସତ୍ୟ, ନିଷ୍ଠା, ନ୍ୟାୟବାନ ହେବା ଦ୍ୱାରା ଗୁରୁ ଶିଷ୍ୟ ଉଭୟଙ୍କର ସମ୍ପର୍କରେ ଶୁଦ୍ଧତା, ନିରାମୟତା ଆସିବ । ଯେଉଁ ଶିକ୍ଷକ ଯେଉଁ ବିଷୟ ପଢ଼ାଇବେ ସେହି ବିଷୟରେ ଜ୍ଞାନୀ ହୋଇଥିବା ଦରକାର । ପିଲାକୁ ସୁନ୍ଦର, ସାବଲୀଳ ଢ଼ଙ୍ଗରେ ବୁଝାଇ ପାରୁଥିବା ଦରକାର । ଶିକ୍ଷକଙ୍କ ସ୍ୱର ଶ୍ରୁତି ମଧୁର ଏବଂ ଶ୍ରେଣୀ ଗୃହକୁ ଶୁଭୁଥିବା ଦରକାର । ଉତ୍ତମ ଚରିତ୍ର, ସେବା ମନୋବୃତ୍ତି, ତ୍ୟାଗ, ପରିଶ୍ରମୀ, କର୍ତ୍ତବ୍ୟ ପରାୟଣ, ନମ୍ରତା, ସମୟାନୁବର୍ତ୍ତୀ ହେବା ଉଚିତ । ଶୃଙ୍ଖଳିତ ଓ ସଂଯମୀ ହେବା ଦରକାର । ଏହାଦ୍ୱାରା ଶିକ୍ଷକଠାରେ ମହାନ୍ ବ୍ୟକ୍ତିତ୍ୱ ଫୁଟି ଉଠିବ । ସେଥିପାଇଁ କୁହାଯାଇଛି–

'ନମ୍ରତି ଫଳିନ ବୃକ୍ଷାଃ, ନମ୍ରତି ଗୁଣିନ ଜନାଃ ।'

ଯେପରି ଫଳଭର୍ତ୍ତି ଗଛର ଶାଖା ପ୍ରଶାଖା ନଇଁଯାଏ ସେହିପରି ଶିକ୍ଷିତ ଜ୍ଞାନୀମାନେ ନମ୍ର ହେବା ଦରକାର ।

ଜୀବନରେ ସଫଳତା ଆଣିବା ପାଇଁ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ ଓ ଗୁରୁ ଭକ୍ତି ଶିଷ୍ୟମାନଙ୍କଠାରେ ଦେଖାଯିବା ଉଚିତ ।

ଶିକ୍ଷାଗୁରୁ ସର୍ବଦା ସମ୍ମାନାସ୍ପଦ । ଏଣୁ ତାଙ୍କୁ ଉପଯୁକ୍ତ ସମ୍ମାନ ଦେବା ଉଚିତ୍ । ଶିକ୍ଷା ବିହୀନ ମନୁଷ୍ୟ ପଶୁତୁଲ୍ୟ । ନିରକ୍ଷରତା ଜାତୀୟ କଳଙ୍କ । ଶିକ୍ଷା ବ୍ୟକ୍ତିକୁ କରେ ମାର୍ଜିତ, ସଭ୍ୟ । ପ୍ରତ୍ୟେକ ବିଦ୍ୟାର୍ଥୀ ନିଜ ନିଜର ଆଚରଣକୁ ଶୁଦ୍ଧ ତଥା ଶିଷ୍ଟ କରି ପାରିଲେ ଦେଶର ଓ ଜାତିର ମଙ୍ଗଳ ହେବ । ଅଜ୍ଞାନ ରୂପକ ଅନ୍ଧକାରକୁ ଗୁରୁ ରୂପକ ସୂର୍ଯ୍ୟ ହିଁ ଦୂରେଇ ପାରିବେ । ଗୁରୁ ଈଶ୍ୱର ତୁଲ୍ୟ । ଗୁରୁ ଅଜ୍ଞାନ ରୂପକ ସାଗରରେ ଜ୍ଞାନର ବୋଇତଟିଏ । କବୀରଙ୍କ ଭାଷାରେ– ଗୁରୁ, ଗୋବିନ୍ଦ ଭିତରେ ଗୁରୁ ହିଁ ଗରୀୟାନ । ଗୁରୁ ପ୍ରତି ସମ୍ମାନରେ, ସଂଭ୍ରମରେ ମୁଣ୍ଡ ନଇଁଯାଏ ଆପେ ଆପେ । ଗୁରୁ ଚିରକାଳ ନମସ୍ୟ, ପୂଜ୍ୟ ।

ଏଣୁ ଆସନ୍ତୁ, ଏହି ମହାନ ଦିବସର ଗୁରୁତ୍ୱକୁ ବୁଝି ଗୁରୁମାନଙ୍କୁ ସମ୍ମାନ ଦେବା ପାଇଁ ସେମାନଙ୍କ ସମାଜ ପ୍ରତି ଅବଦାନକୁ ସମ୍ମାନ ଜଣାଇବା ଉଦ୍ଦେଶ୍ୟରେ ଏହି ଦିନଟିକୁ ଗୁରୁ ଦିବସ ରୂପେ ପାଳନ କରି ସମଗ୍ର ଶିକ୍ଷକ ଜାତିକୁ ପ୍ରଣାମ ପୂର୍ବକ ଶ୍ରଦ୍ଧା ସୁମନ ଦେବାର ଏକ ନିଆରା ସମ୍ପର୍କକୁ ଦୃଢ଼ୀଭୂତ କରିବା । ଏହି ମହାନ ଦିବସକୁ ମନେ ପକାଇ ନୀତି, ଆଦର୍ଶ, ସଦୁପଦେଶ, ସଦାଚାର ଶୃଙ୍ଖଳା ଓ ଶିକ୍ଷାକୁ ପାଥେୟ କରି ପରସ୍ପର ଭିତରେ ସଦ୍‌ଭାବନା ସୃଷ୍ଟି କରିବା ଏବଂ ସମାଜକୁ ଏକ ସୁନ୍ଦର, ମାର୍ଜିତ, ଶିକ୍ଷାର ଆଲୋକରେ ପ୍ରତିପାଦିତ କରିବା ଏବଂ ଗୁରୁ–ଶିଷ୍ୟ ପରମ୍ପରାକୁ ଆହୁରି ସୁଦୃଢ଼ କରିବା, ଶାଶ୍ୱତ କରିବା ଯାହାଦ୍ୱାରା ଦେଶର ଜାତିର କଲ୍ୟାଣ ଅକ୍ଳେଶରେ ସାଧିତ ହୋଇପାରିବ ।

ମଧୁସୂଦନ ନଗର, ଜଟଣୀ (ଖୋର୍ଦ୍ଧା)



# ପ୍ରାଚୀନ ମହିଷାମର୍ଦ୍ଦିନୀ ଦ୍ୱିଭୁଜା ଦୁର୍ଗା ମା’ ବିରଜା

**ନାରାୟଣ କୁମାର ରାଉତରାୟ**

ଯାଜପୁରର ଅଧିଷ୍ଠାତ୍ରୀ ଦେବୀ ମା’ ବିରଜା ରାଜ୍ୟର ଅଗଣିତ ଭକ୍ତଙ୍କୁ ଆକୃଷ୍ଟ କରିବା ସଙ୍ଗେ ସଙ୍ଗେ ଏହି ପୀଠରେ ରାଜ୍ୟ ବାହାର ଏପରିକି ବିଶ୍ୱର ବହୁଭକ୍ତଙ୍କ ସମାଗମ ହୋଇଥାଏ। ବିରଜା କ୍ଷେତ୍ରରେ ବିରଜାଙ୍କ ମନ୍ଦିର ବ୍ୟତୀତ ଅନ୍ୟାନ୍ୟ ବହୁ ଦେବାଦେବୀ ମନ୍ଦିର ଦର୍ଶନୀୟ ସ୍ଥାନ ରହିଥିବାରୁ ଏଠାକୁ ବହୁ ପର୍ଯ୍ୟଟକ ଆସିଥାନ୍ତି। ଓଡିଶାର ରାଜଧାନୀ ଭୁବନେଶ୍ୱରଠାରୁ ସଡକପଥରେ ୧୨୦ କି.ମି. ଦୂରରେ ଏହା ଅବସ୍ଥିତ। ଏଠାକୁ ଭୁବନେଶ୍ୱରରୁ ଯିବା ପାଇଁ ଟ୍ରେନ୍ ଯୋଗାଯୋଗ ଯାଜପୁର ଓ କେନ୍ଦୁଝର ରୋଡ ପର୍ଯ୍ୟନ୍ତ ରହିଛି। ସେଠାରୁ ଟ୍ୟାକ୍ସି, କାର ଭଡାରେ ମିଳିଯାଏ ଯାଜପୁର ଟାଉନ୍ ବିରଜା କ୍ଷେତ୍ରକୁ ଯିବା ପାଇଁ।



ବ୍ୟାସଦେବଙ୍କ ରଚିତ ମହାଭାରତରେ ଉତ୍କଳର ଅନ୍ୟ କୌଣସି ତୀର୍ଥକ୍ଷେତ୍ରର ବର୍ଣ୍ଣନା ନଥିବା ସ୍ଥଳେ ବିରଜାଙ୍କ ବର୍ଣ୍ଣନା ଥିବାରୁ ବିରଜାଙ୍କ କାଳ ନିଶ୍ଚିତ ମହାଭାରତ ରଚନାର ବହୁ ପୂର୍ବରୁ ବୋଲି ଅନୁମାନ କରାଯାଏ। ଭାରତରେ ଦ୍ୱିଭୁଜା ଦୁର୍ଗା ବିରଜା ନାମରେ ପୂଜା ପାଉଛନ୍ତି। ଐତିହାସିକ ଆର.ଏଲ.ମିତ୍ର ଦ୍ୱିଭୁଜା ଦୁର୍ଗାଙ୍କୁ ସର୍ବପ୍ରାଚୀନ ବୋଲି ମତପ୍ରଦାନ କରିଛନ୍ତି। ପରବର୍ତ୍ତୀ କାଳରେ ଦେବୀଙ୍କୁ ଚତୁର୍ଭୁଜା, ଅଷ୍ଟଭୁଜା, ଦଶଭୁଜା, ଦ୍ୱାଦଶଭୁଜା, ଅଷ୍ଟାଦଶଭୁଜା ଭାବେ ଗ୍ରହଣ କରାଯାଇଥିଲା। ଯାଜପୁର ନିକଟବର୍ତ୍ତୀ ଭଦ୍ରକର ଚତୁର୍ଭୁଜା କାଳୀପୀଠରୁ ମିଳିଥିବା ତାମ୍ରଫଳକ ଯାହା ବର୍ତ୍ତମାନ ଓଡିଶା ରାଜ୍ୟ ସଂଗ୍ରହାଳୟ ଭୁବନେଶ୍ୱରରେ ରହିଛି, ତତ୍କାଳୀନ ସୁରଶର୍ମା ନାମକ ରାଜା ତାଙ୍କର ଅଷ୍ଟମ ବର୍ଷ ଶାସନ କାଳରେ ଏହାକୁ ପ୍ରଦାନ କରିଥିଲେ ବୋଲି ଏଥିରେ ଉଲ୍ଲେଖ ଅଛି। ଏହି ଫଳକରେ ଥିବା ଲିପିର ଶୈଳୀକୁ ବିଚାର କରି ଏହାକୁ ଖ୍ରୀଷ୍ଟାବ୍ଦ ତୃତୀୟ ଶତାବ୍ଦୀର ଫଳକ ବୋଲି ଲିପି ଗବେଷକମାନେ ମତବ୍ୟକ୍ତ କରିଛନ୍ତି। ଯଦି ଚତୁର୍ଭୁଜା କାଳୀଙ୍କ କାଳ ନିରୂପଣକୁ ଖ୍ରୀଷ୍ଟାବ୍ଦ ତୃତୀୟ ଶତାବ୍ଦୀର ସମସାମୟିକ ବୋଲି ଧରାଯାଏ, ତେବେ ଦ୍ୱିଭୁଜା ଦେବୀଙ୍କର ମୂର୍ତ୍ତି ଯେ ଆହୁରି ପ୍ରାଚୀନ, ଏଥିରେ ସନ୍ଦେହ ନାହିଁ।

**କିମ୍ବଦନ୍ତୀ କହେ:** ଶିବଙ୍କଠାରୁ ବ୍ରହ୍ମା ଅପୂଜା ରହିବେ ବୋଲି ଅଭିଶାପ ପାଇଲା ପରେ ଏ ଅଭିଶାପରୁ ତାଙ୍କୁ କିପରି ମୁକ୍ତି ମିଳିବ ସେ ସମ୍ପର୍କରେ ଶିବଙ୍କୁ ଅନୁରୋଧ କରିବାରୁ ଶିବ କହିଲେ, ତୁମେ ଯଦି ବୈତରଣୀ କୂଳରେ ଯଜ୍ଞ କରି ବିଷ୍ଣୁଙ୍କୁ ପୂଜା ଦ୍ୱାରା ସନ୍ତୁଷ୍ଟ କରିପାରିବ, ତେବେ ଅଭିଶାପରୁ ମୁକ୍ତ ହେବ। ଏଣୁ ବ୍ରହ୍ମା ବୈତରଣୀ କୂଳରେ ଯଜ୍ଞ କରି ଶାପମୁକ୍ତ ହୋଇଥିଲେ। ତେଣୁ ଶ୍ରୀକ୍ଷେତ୍ରରେ ସୁଭଦ୍ରା ରୂପରେ ସେ ପୂଜା ପାଉଛନ୍ତି। ଯଜ୍ଞ ସମ୍ପାଦନ ପାଇଁ ପୁରୋହିତର ଆବଶ୍ୟକ





ପଡିବାରୁ ବ୍ରହ୍ମା ମନରୁ ଅନେକ ଋଷିଜାତ କରିଥିଲେ। ଶିବଙ୍କୁ ଆହ୍ୱାନ କରିବାରୁ ଶିବ ସ୍ୱକୀୟ ତେଜରେ ଯଜ୍ଞ ମଣ୍ଡପକୁ ଉଦ୍‌ଭାସିତ କରିଥିଲେ। ବ୍ରହ୍ମା ସେ ତେଜକୁ ଦେଖି କହିଥିଲେ ଆମେ ଏ ତେଜକୁ ସହିବାକୁ ଅସମର୍ଥ ହେଉଛୁ। ପରେ ତେଜ ଆସ୍ତେ ଆସ୍ତେ କମି ଯାଇ ଏକ ସୁନ୍ଦର ଲିଙ୍ଗରେ ପରିଣତ ହେଲେ। ବ୍ରହ୍ମା ସେହି ଲିଙ୍ଗକୁ ସ୍ତବ କରି ଈଶାନେଶ୍ୱର ନାମରେ ନାମିତ କରି ଯଥା ସ୍ଥାନରେ ସ୍ଥାପନ କଲେ। ଶକ୍ତି ସ୍ୱରୂପିଣୀ ଦେବୀଙ୍କ ବ୍ୟତୀତ ଶକ୍ତିହୀନ ଶିବଙ୍କ ଦ୍ୱାରା କ୍ଷେତ୍ରର ଶ୍ରୀବୃଦ୍ଧି ହୋଇପାରିବ ନାହିଁ ଚିନ୍ତାକରି ଦେବୀଙ୍କୁ ଭକ୍ତିର ସହିତ ଆରାଧନା କଲେ। ଭକ୍ତିରେ ସନ୍ତୁଷ୍ଟ ହୋଇ ଦେବୀ ନିଜର ତେଜ ବିସ୍ତାର କରି ଆତ୍ମପ୍ରକାଶ କଲେ। ତାଙ୍କର ରୂପ ଥିଲା ଦକ୍ଷିଣ ପାଦରେ ମହିଷର ମସ୍ତକକୁ ଅତି କର୍କଶ ଭାବରେ ଅତିକ୍ରମ ପୂର୍ବକ, ବାମ କରକମଳରେ ମହିଷ ଲାଞ୍ଜକୁ ଧରି ଦକ୍ଷିଣ ପାଣି କମଳରେ ଶୋଭିତ ତ୍ରିଶୂଳ ଦ୍ୱାରା ମହିଷର ବକ୍ଷସ୍ଥଳକୁ ବିଦାରଣ କରୁଛନ୍ତି। ବ୍ରହ୍ମା ଦେବୀଙ୍କର ଆବିର୍ଭାବ ଦେଖି ବୈତରଣୀ ଜଳରେ ସ୍ନାନ କରାଇ ଯଥାବିଧି ପୂଜା ଅର୍ଚ୍ଚନା କଲେ। ବ୍ରହ୍ମାଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ପାର୍ବତୀ କହିଲେ, ମୋତେ ବିରଜା ନାମରେ ନାମିତ କର।

ମା' ବିରଜାଙ୍କ ମୂର୍ତ୍ତି କଳା ମୁଗୁନି ପଥରରେ ନିର୍ମିତ ୩ ଫୁଟ୍ ଉଚ୍ଚତା ବିଶିଷ୍ଟ ଏହାର ଦୁଇଭୁଜ ବାମ ହସ୍ତରେ ମହିଷାରୂପୀ ମହିଷାସୁରର ପୁଚ୍ଛ ଧାରଣ କରି ଦକ୍ଷିଣ ଭୁଜରେ ଅସୁରର ବକ୍ଷସ୍ଥଳକୁ ଶୂଳବିଧ କରୁଛନ୍ତି। ମସ୍ତକରେ ଗଣପତି, ନାଗରାଜ ବାସୁକୀ, ଯୋନୀ, ଲିଙ୍ଗ, ଚନ୍ଦ୍ର, ପାଞ୍ଚୋଟି ମୁଦ୍ରା ଶୋଭାପାଉଛି। ଏହାର ତାତ୍ପର୍ଯ୍ୟକୁ ଗବେଷଣା କଲେ ଜଣାଯାଏ ପ୍ରଥମରେ ଯୋନୀ ଚରାଚର ଜୀବଜଗତ ଉତ୍ପତ୍ତିର ହେତୁ ଅର୍ଥାତ ବୀଜାଙ୍କୁ ରୋକ୍ତାଧିକ ଶକ୍ତି ଏହାଦ୍ୱାରା ଦେବୀ ସର୍ବବିଜୟର ଉତ୍ପତ୍ତି କ୍ଷେତ୍ର ଅଟନ୍ତି। ଦ୍ୱିତୀୟରେ ଲିଙ୍ଗ ସର୍ବଜଗତର ବୀଜରୂପକ ଚିହ୍ନ । ଏହି ଚୈତନ୍ୟ ଜଡପୁରୁଷ ପ୍ରକୃତି ସାହାଚର୍ଯ୍ୟରେ ଜୀବଜଗତର ସୃଷ୍ଟି। ଏଣୁ ଦେବୀ ଜଗତର ଆଧାର ଭୂତ ଅଟନ୍ତି। ତୃତୀୟରେ ଜୀବଜଗତର ଶୁଦ୍ଧ ଚୈତନ୍ୟ ଉଜ୍ଜୀବିତ ପରି ଏହାଙ୍କଠାରେ କାର୍ଯ୍ୟକାରିଣୀ ଶକ୍ତି ସଞ୍ଚାର କରିବା ପାଇଁ ଚନ୍ଦ୍ର ବିଦ୍ୟମାନ। ଚତୁର୍ଥରେ ଲୋକମାନଙ୍କ ଭିତରେ ପାରମ୍ପରିକ ଗଣତାନ୍ତ୍ରିକ ଭାବ ଜାଗ୍ରତ କରି ଐକ୍ୟ ସ୍ଥାପନ କରିବା ଦେବତାଙ୍କ କାର୍ଯ୍ୟ ହେତୁ ତାଙ୍କ ମସ୍ତକରେ ଗଣପତି ବିଦ୍ୟମାନ।

## ଭିତର ବେଢାରେ ଥିବା ପ୍ରମୁଖ ଦେବଦେବୀ ମନ୍ଦିର

**ଈଶାନେଶ୍ୱର:** ବିରଜା ମନ୍ଦିରର ଉତ୍ତରଦିଗକୁ ଈଶାନେଶ୍ୱର ମନ୍ଦିର ଅବସ୍ଥିତ। ବିରଜାକ୍ଷେତ୍ର ମାହାତ୍ମ୍ୟରେ ଲେଖାଅଛି ବ୍ରହ୍ମା, ବିରଜା କ୍ଷେତ୍ରକୁ ଅବିମୁକ୍ତ କ୍ଷେତ୍ରଭାବେ ପ୍ରତିଷ୍ଠା କରିବା ପାଇଁ ଓ ଶିବଙ୍କୁ ଆବିର୍ଭୂତ ହେବା ପାଇଁ ପ୍ରାର୍ଥନା କରିଥିଲେ। ଅଗ୍ନି ମଧ୍ୟରୁ ଈଶାନେଶ୍ୱରଙ୍କ ଉତ୍ପତ୍ତି ଘଟିଥିଲା। ଏହି ଶିବଲିଙ୍ଗ ଏକ ବୃହତକାର ଶିବଲିଙ୍ଗ। ଏହି ମନ୍ଦିର ସମ୍ମୁଖରେ ଏକ ବୃଷଭ ରହିଛି। ଏହାର ଗଠନ ଶୈଳୀରୁ ଜଣାପଡେ ଏହା ଚତୁର୍ଥ ଓ ପଞ୍ଚମ ଶତାବ୍ଦୀର କଳାକୃତି।

**ନାଭିଗୟା :** ବେଢା ମଧ୍ୟରେ ନାଭିଗୟାର ଅବସ୍ଥିତି ପାଇଁ ଏହାର ନାମ ନାଭିକ୍ଷେତ୍ର ବା ଗୟାତୀର୍ଥ । ଏହା ସର୍ବଭାରତୀୟ ସ୍ତରରେ ପିତୃତୀର୍ଥ ରୂପେ ପରିଗଣିତ ହୋଇଛି। ଏଠାରେ ପିଣ୍ଡଦାନ କଲେ ୨୧ ପୁରୁଷ ପର୍ଯ୍ୟନ୍ତ ପିତୃଗଣ ଉଦ୍ଧାର ପାଇଥାଆନ୍ତି। ବାଇପୁରାଣ, କପିଳସଂହିତା, ବିରଜାକ୍ଷେତ୍ର ମାହାତ୍ମ୍ୟରେ ଏହାର ମହିମା ସମ୍ପର୍କରେ ବର୍ଣ୍ଣନା ରହିଛି।

**ଏକପାଦ ଭୈରବ :** ବିରଜା ମନ୍ଦିରର ପଛପଟରେ ଅଛନ୍ତି ଏକପାଦ ଭୈରବ। ଐତିହାସିକମାନେ ଏହି ମୂର୍ତ୍ତିକୁ ଏକପାଦ ଶିବ ବୋଲି କହିଥାନ୍ତି। ଭୌମକର ରାଜତ୍ୱ କାଳରେ ଶିବ ମୂର୍ତ୍ତି ଉପାସନାରେ ପରିଣତ ହେଲା। ତେଣୁ ଏହି ମୂର୍ତ୍ତି ଭୌମ ରାଜତ୍ୱ ସମୟର ହୋଇପାରିଥାଏ କିମ୍ବା କୌଣସି ଶିବ ମନ୍ଦିରର ଭଗ୍ନାବଶେଷରୁ ମିଳିଥାଇପାରେ ମନେହୁଏ। ଈଶାନେଶ୍ୱରଙ୍କ ପୂର୍ବତନ ପୀଠସ୍ଥଳୀରେ ଉକ୍ତ ଏକପାଦ ଭୈରବ ପାର୍ଶ୍ୱଦେବତା ରୂପେ ବିଦ୍ୟମାନ ଥିଲେ। ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ ମନ୍ଦିର ନିର୍ମାଣ ହେବା ପରେ ଉକ୍ତ ମୂର୍ତ୍ତିକୁ ଆଣି ବର୍ତ୍ତମାନର ବିରଜା ମନ୍ଦିରର ପଶ୍ଚାଭାଗରେ ସ୍ଥାପିତ କରାଯାଇଛି।

**ପର୍ବପର୍ବାଣି :** ମା' ବିରଜାଙ୍କୁ ଦୁଇଓଳି ଅନ୍ନଭୋଗ ଅର୍ପଣ କରାଯାଏ। ସକାଳ ୫.୫୦ ମି.ରେ ମନ୍ଦିର ଖୋଲାଯାଏ। ବାଳଭୋଗ କରାଯାଏ। ବାଳଭୋଗ ହେଲା ଉଖୁଡା, ଖଇ, ସନ୍ଦେଶ, ଫେଣି, ଫଳ। ଦିନ ୧ଟାରେ ପହଡ ପଡେ। ତା'ପରେ ଦିନ ୩ଟାରୁ ରାତି ୧୦ଟା ପର୍ଯ୍ୟନ୍ତ ମନ୍ଦିର ଖୋଲା ରହେ। ଶେଷରେ ପହଡ ପଡେ। ଠାକୁରାଣୀଙ୍କ ଅନ୍ନଭୋଗରେ ଖେଚୁଡି, ଖିରି, ଡାଲି, ତରକାରୀ ଓ ଖଟା ହୁଏ । ରାତିରେ ଅନ୍ନ, ଡାଲି,

ତରକାରୀ, ଖିରୀ ଭୋଗ କରାଯାଏ । ମହାବିଷୁବ ସଂକ୍ରାନ୍ତି ଦିନ ଦେବୀଙ୍କର ନୂତନ ପଞ୍ଜିକା ବ୍ୟବହୃତ ହୁଏ । କଦଳୀ, ନଡିଆ, ଛେନା, ଶର୍କରାଦି ପଡି ପଣା ପ୍ରସ୍ତୁତ ହୁଏ । ଦେବୀ ଏବଂ ପାର୍ଶ୍ୱଦେବତାମାନଙ୍କ ନିକଟରେ ପଣାଭୋଗ ଲାଗି ହୁଏ । ଚନ୍ଦନ ପୂର୍ଣ୍ଣିମା ବା ବୈଶାଖ ପୂର୍ଣ୍ଣିମାରେ ଦେବୀ ଚନ୍ଦନ ବେଶରେ ଭୂଷିତା ହୁଅନ୍ତି । ବିଭିନ୍ନ ବ୍ୟଞ୍ଜନ ସହ ଦହି ପଖାଳ ଦେବୀଙ୍କ ନିକଟରେ ନୈବେଦ୍ୟ ଲାଗେ । ଚନ୍ଦନ ଯାତ୍ରା ଓ ଚାପଖେଳ ମଧ୍ୟ ହୁଏ । ସାବିତ୍ରୀ (ଜ୍ୟୈଷ୍ଠ ଅମାବାସ୍ୟା) ବ୍ରତ ପାଳନ କରୁଥିବା ସଧବାମାନେ ଦେବୀ ଦର୍ଶନରେ ଆସନ୍ତି ଏବଂ ମନ୍ଦିରରେ ସହସ୍ର ସଂଖ୍ୟାରେ ଭକ୍ତଙ୍କ ସମାଗମ ହୁଏ । ରଜ ସଂକ୍ରାନ୍ତି (ଆଷାଢ ସଂକ୍ରାନ୍ତି)ରେ ଦେବୀ ନୂତନ ବସ୍ତ୍ର ପରିଧାନ କରନ୍ତି । ରଜ ପୋଡପିଠା ନୈବେଦ୍ୟ ଅର୍ପଣ କରାଯାଏ । ଚିତାଲାଗି ଅମାବାସ୍ୟା (ଶ୍ରାବଣ ଅମାବାସ୍ୟା) ଦିନ ଦେବୀଙ୍କର ଚିତା ଲାଗେ ଓ ଚିତୋଉ ପିଠା ତଥା ଅନ୍ୟାନ୍ୟ ମିଷ୍ଟାନ୍ନ ନୈବେଦ୍ୟ ରୂପେ ଅର୍ପଣ କରାଯାଏ । ଗହ୍ମାପୂର୍ଣ୍ଣିମା (ରାକ୍ଷୀବନ୍ଧନ ବା ଶ୍ରାବଣ ପୂର୍ଣ୍ଣିମା) ଦିନ ଦେବୀଙ୍କର ବାମ ହସ୍ତରେ ରାକ୍ଷୀବନ୍ଧନ କରାଯାଏ । ସେବକ ପାଳିଆ ବା ପୁରୋହିତ ରାକ୍ଷୀ ବାନ୍ଧନ୍ତି । ନୈବେଦ୍ୟରେ କାକରା ଓ ଚିତୋଉ ପିଠା ଅର୍ପଣ କରାଯାଏ । ଉତ୍କଳରେ ନବ ବର୍ଷାରମ୍ଭ ହୁଏ ସୁନିଆଁ ଦିନଠାରୁ । ଦେବୀଙ୍କର ରଥ ନିର୍ମାଣାର୍ଥେ ବେଲବରଣ ଉତ୍ସବ ପାଳନ କରାଯାଏ । ସେବାୟତମାନେ ଯାଇ କାଠ ସଂଗ୍ରହ କରନ୍ତି । ମନ୍ଦିରରେ ପୂଜକ ସେବାୟତମାନଙ୍କର ମଙ୍ଗଳାର୍ପଣ ଓ ସ୍ୱର୍ଣ୍ଣଛେଦନ ହୁଏ । ପୁରୋହିତଙ୍କ ଦ୍ୱାରା ଏ କାର୍ଯ୍ୟ ସମାହିତ ହୁଏ । ଏ ଦିନ ମନ୍ଦିରରେ ନୂଆ ଖାତା ବ୍ୟବହୃତ ହୁଏ । ମୂଳାଷ୍ଟମୀ ବା ଜିତାଷ୍ଟମୀ ବା ଦ୍ୱିତୀୟା ଓଷାରେ ଆଶ୍ୱିନ କୃଷ୍ଣ ଅଷ୍ଟମୀ ସାୟଂ କାଳରେ ମା' ବିରଜାଙ୍କର ଘଟସ୍ଥାପନ, ମହାସ୍ନାନ ଓ ଷୋଡଶ ଦିବସୀୟ ଷୋଡଶୋପଚାର ପୂଜାରମ୍ଭ ହୁଏ । ମହାଳୟା ଅମାବାସ୍ୟା (ଆଶ୍ୱିନ ଅମାବାସ୍ୟା) ଦିନ ମାଆଙ୍କର ରଥାଧିବାସ । ଏହା ପରଦିନ ଅର୍ଥାତ୍ ପ୍ରତିପଦ ଦିନ ଦେବୀଙ୍କର ରଥ ପ୍ରତିଷ୍ଠା ଓ ନବଦିବସ ପାଇଁ ଦେବୀଙ୍କ ଚଳନ୍ତି ପ୍ରତିମା ରଥାରୋହଣ । ବିଜୟା ପଞ୍ଚମୀ (ଆଶ୍ୱିନ ଶୁକ୍ଳ ପଞ୍ଚମୀ) ରାତ୍ରିରେ ଦେବୀଙ୍କର ମା' ବିରଜାଙ୍କୁ ଦୁଇଓଳି ଅନ୍ନ ଭୋଗ ଅର୍ପଣ କରାଯାଏ । ସକାଳ ସନ୍ଧ୍ୟାରେ ବାଲ୍ୟ ଭୋଗ ଦିଆଯାଏ । ସକାଳ ଛଅଟାରୁ ମନ୍ଦିର ଖୋଲାଯାଏ । ଗୋଟାଏ ଠାରୁ ତିନିଘଣ୍ଟା ପର୍ଯ୍ୟନ୍ତ ପହଡ ପଡେ । ପୁଣି ରାତି ଦଶଟା ପରେ ପହଡ ପଡି ମନ୍ଦିର ବନ୍ଦ ହୁଏ । କୁମାରୋତ୍ସବ (ଆଶ୍ୱିନ ପୂର୍ଣ୍ଣିମା ) ଦେବୀଙ୍କର ଆଉ ଏକ ପର୍ବ । ଏହିଦିନ ଦେବୀଙ୍କର କୁମାରୀ ବେଶ ଓ ସୁନାବେଶ ହୁଏ । ସନ୍ଧ୍ୟା ଆରତି ଓ କଉଡି ଖେଳ ହୁଏ । ଖଇ, ନଡିଆ ଓ ବିଭିନ୍ନ ମିଷ୍ଟାନ୍ନ ଆଦି ନୈବେଦ୍ୟ ଅର୍ପଣ କରାଯାଏ । ଦୀପାବଳୀ (କାର୍ତ୍ତିକ ଅମାବାସ୍ୟା) ଦିନ ଦେବୀଙ୍କ ନିକଟରେ ଦୀପଦାନ କରାଯାଏ । ମନ୍ଦିରର ପଶ୍ଚିମ ପଟରେ ଥିବା ପାର୍ଶ୍ୱଦେବତାଙ୍କର ତାନ୍ତ୍ରିକବାଦ ପୂଜା ହୁଏ । ରାସପୂର୍ଣ୍ଣିମା (କାର୍ତ୍ତିକ ପୂର୍ଣ୍ଣିମା)ରେ ଦେବୀଙ୍କ ନିକଟରେ ହବିଷ୍ୟାନ୍ନ ନୈବେଦ୍ୟ ଅର୍ପିତ ହୁଏ ଓ ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଅନ୍ନ । ପ୍ରଥମାଷ୍ଟମୀ (ମାର୍ଗଶିର କୃଷ୍ଣ ଅଷ୍ଟମୀ) ଦିନ ଦେବୀ ନୂତନ ବସ୍ତ୍ର ପରିଧାନ କରନ୍ତି ଓ ଦେବୀଙ୍କୁ ଏଣ୍ଡୁରିପିଠା ନୈବେଦ୍ୟ ଅର୍ପଣ କରାଯାଏ । ଧନୁସଂକ୍ରାନ୍ତି (ମାର୍ଗଶିର ସଂକ୍ରାନ୍ତି) ଦିନ ଦେବୀଙ୍କ ନିକଟରେ ନାନବିଧ ମୁଆଁ ନୈବେଦ୍ୟ ଅର୍ପଣ କରାଯାଏ । ବକୁଳ ଅମାବାସ୍ୟା (ପୌଷ ଅମାବାସ୍ୟା) ରେ ଦେବୀଙ୍କ ନିକଟରେ ଆମ୍ରବକୁଳ ଲାଗି ହୁଏ ଏବଂ ଖିର ଗଇଁଠା ନୈବେଦ୍ୟ ଅର୍ପଣ କରାଯାଏ । ମକରସଂକ୍ରାନ୍ତି (ପୌଷ ସଂକ୍ରାନ୍ତି) ରେ ସୂର୍ଯ୍ୟ ଉତ୍ତରାୟଣ ହେଉଥିବାରୁ ମକରଚାଉଳ ସହ ଦେବୀଙ୍କ ସେବାୟତମାନେ ମକରବେଢା ଭ୍ରମଣ କରନ୍ତି । ଦେବୀଙ୍କ ନିକଟରେ ମକରଚାଉଳ ଭୋଗ ଲାଗେ । ଅଗ୍ନିଉତ୍ସବ (ମାଘ ପୂର୍ଣ୍ଣିମା) ଦିନ ବିରଜା ମନ୍ଦିର ଦାଣ୍ଡରେ ଅଗ୍ନିପୂଜା ପାଳିତ ହୁଏ । ଦୋଳପୂର୍ଣ୍ଣିମା (ଫାଲ୍‌ଗୁନ ପୂର୍ଣ୍ଣିମା) ମାଆଙ୍କ ଚଳନ୍ତି ପ୍ରତିମାଙ୍କର ଦୋଳମଣ୍ଡପକୁ ଯାତ୍ରା କରନ୍ତି । ହୋରିଖେଳ ହୁଏ । ନୂତନ ପଞ୍ଜିକା ପାଠ କରାଯାଏ । ବାରୁଣୀ ସ୍ନାନ (ଚୈତ୍ର କୃଷ୍ଣ ତ୍ରୟୋଦଶୀ) ଦିନ ପୁଣ୍ୟତୋୟା ବୈତରଣୀରେ ଯୋଗସ୍ନାନ ପରେ ନାଭିଗୟାରେ ପିଣ୍ଡଦାନ ଓ ମାଆ ବିରଜାଙ୍କ ଦର୍ଶନ କରି ଜନସାଧାରଣ ସାର୍ଥକ ହୁଅନ୍ତି ।

**ଦୁର୍ଗାପୂଜା–** ମନ୍ଦିରର ବିଭିନ୍ନ ପର୍ବପର୍ବାଣି ମଧ୍ୟରୁ ଦୁର୍ଗାପୂଜା ବିରଜା ମନ୍ଦିରର ଗୋଟିଏ ଉଲ୍ଲେଖଯୋଗ୍ୟ ପର୍ବ । ପୁରୀରେ ବିମଳା ଦେବୀଙ୍କର ଷୋଡଶ ରାତ୍ରି ପୂଜା ଭଳି ଏଠାରେ କ୍ଷେତ୍ରାଧିଶ୍ୱରୀ ବିରଜା ଦେବୀଙ୍କର ଦ୍ୱିତୀୟା ଓଷାଠାରୁ ଦଶହରା ପର୍ବ ମହାନବମୀ ପର୍ଯ୍ୟନ୍ତ ଷୋହଳ ଦିନ ବ୍ୟାପୀ ପୂଜା ହୁଏ । ଏହି ଷୋଡଶ ରାତ୍ରି ପୂଜା କାର୍ଯ୍ୟ ସଂଜ୍ଞାଧାରୀ ବ୍ରାହ୍ମଣମାନେ କରିଥାନ୍ତି । ପାଣିମାନେ ପୂଜା ସାମଗ୍ରୀ, ଚନ୍ଦନ ପୁଷ୍ପ, ବେଲପତ୍ର

ଯୋଗାଇ ଦେଇଥାନ୍ତି । ପାଣିଗ୍ରାହୀମାନେ ନୈବେଦ୍ୟ ପାଇଁ ଅନ୍ନ ବ୍ୟଞ୍ଜନାଦି କାର୍ଯ୍ୟରେ ନିଯୁକ୍ତ ଥାନ୍ତି । ସନ୍ଥ ମାଧବ ନିବାସୀ ପତି ମିଶ୍ର ବ୍ରାହ୍ମଣମାନେ ତଥା ନରହରିପୁର ଶାସନରେ ବାସ କରୁଥିବା ବ୍ରାହ୍ମଣମାନେ ପୂଜା ନିର୍ଦ୍ଦେଶକ (ତନ୍ତ୍ରଧାର) ରୂପେ ପୂଜାକାର୍ଯ୍ୟ ସମ୍ପାଦନ କରିଥାନ୍ତି । ପାଣିମାନେ ହୋମ କାର୍ଯ୍ୟରେ ଅଂଶ ଗ୍ରହଣ କରିଥାନ୍ତି । ଏହାଛଡା ବାରିକ, ମାଳୀ, ଜ୍ୟୋତିଷ, ବଳିହନ୍ତା ପ୍ରଭୃତି ବିଯୋଗୀମାନେ ସେମାନଙ୍କର ଯଥାଯଥ ଭାବରେ କାର୍ଯ୍ୟ ତୁଲାଇଥାନ୍ତି । ଏହା ବ୍ୟତୀତ ବାରମାସରେ ପାଣିମାନେ କାଳକ୍ରମରେ ସେବା ପୂଜା କାର୍ଯ୍ୟ କରନ୍ତି । ବିରଜା ଦେବୀଙ୍କର ରଥରେ ବସି ରଥ ଭ୍ରମଣ ଯେପରି ହୁଏ ଅନ୍ୟ କେଉଁଠାରେ ଦେଖାଯାଏ ନାହିଁ । ପୁରୀର ସୁଭଦ୍ରାଙ୍କ ବିଜୟା ରଥ ପରି ନିର୍ମିତ ହୁଏ ବିରଜାଙ୍କ ରଥ । ଅମାବାସ୍ୟା ଦିନ ଅଧିବାସ ହୋଇ ପ୍ରତିଦିନ ରଥ ପ୍ରତିଷ୍ଠା କରାଯାଏ । ପ୍ରତିପଦଠାରୁ ମହାନବମୀ ପର୍ଯ୍ୟନ୍ତ ଏହି ରଥ ମନ୍ଦିରର ଚାରିପାଖରେ ନଅଥର ଭ୍ରମଣ କରେ । ଯେଉଁମାନେ ଦର୍ଶନ କରନ୍ତି, ସେମାନେ ନର୍କରୁ ଉଦ୍ଧାର ପାଇ ବିଷ୍ଣୁ ଲୋକପ୍ରାପ୍ତି ହୁଅନ୍ତି ବୋଲି କଥିତ ରହିଛି । ମହାନବମୀ ଦିନ ରଥ ଭ୍ରମଣ ପରେ ପ୍ରତିମାକୁ ଲାଖବିନ୍ଧା ପଡିଆକୁ ନିଆଯାଏ । ପୂଜକ ଚାରି ଦିନରେ ଚାରୋଟି ଶର ନିକ୍ଷେପ କରିଥାନ୍ତି । ଲାଖ ବିନ୍ଧା ପଡିଆରେ ଉତ୍ସବ ଶେଷ ହେବା ପରେ ଦେବୀଙ୍କୁ ଏକମୁହାଁ କରି ଆଣି ପୂଜକମାନେ ମନ୍ଦିର ଭିତରେ ପ୍ରବେଶ କରାନ୍ତି ଓ ଦ୍ୱାର ବନ୍ଦ କରିଦିଅନ୍ତି । ଦୁର୍ଗାପୂଜା ସମୟରେ ମା' ବିରଜାଙ୍କ ଭିନ୍ନ ଭିନ୍ନ ନାମରେ ବିବିଧ ମନ୍ତ୍ରରେ ପୂଜା କରାଯିବାର ପରମ୍ପରା ରହିଛି । ପୂଜାର ବିଭିନ୍ନ ସମୟରେ ଭୁବନେଶ୍ୱରୀ, ଜୟଦୁର୍ଗା, ଜ୍ୱାଳାଦୁର୍ଗା, ଉଗ୍ରଚଣ୍ଡୀ ଓ ମହାମାରୀ ମନ୍ତ୍ରରେ ପୂଜା କରାଯାଉଥିଲେ ମଧ୍ୟ ମୂଳାଷ୍ଟମୀଠାରୁ ମହାଷ୍ଟମୀ ପର୍ଯ୍ୟନ୍ତ ବନଦୁର୍ଗା ମନ୍ତ୍ରରେ ଆରାଧନା କରାଯିବା ଏକ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ । ମା'ଙ୍କ ପର୍ବପର୍ବାଣି ତଥା ପୂଜାବିଧିକୁ ଅନୁଶୀଳନ କଲେ ଜଣାଯାଏ ବୈଦିକ ତାନ୍ତ୍ରିକ ବୌଦ୍ଧ ଶାକ୍ତ ଓ ବୈଷ୍ଣବ ମତବାଦଗୁଡିକର ଅପୂର୍ବ ସମନ୍ୱୟ ଘଟିଛି ଦେବୀଙ୍କ ପୂଜାରୀତିରେ ।

**ବିରଜାଙ୍କ ଜନ୍ମୋତ୍ସବ :** ମାଘ ମାସରେ ତ୍ରିବେଣୀ ଅମାବାସ୍ୟା ଦିନ ଶ୍ରାବଣ ନକ୍ଷତ୍ର ଯୁକ୍ତ ମକର ଚନ୍ଦ୍ରରେ ବିରଜାଙ୍କ ଜନ୍ମୋତ୍ସବ ପାଳିତ ହୁଏ । ଗାୟତ୍ରୀ ଦ୍ୱାରା ଏହି ପୂଜା ସମ୍ପାଦନା କରାଯାଏ । ବହୁ ସଂଖ୍ୟକ ଯାତ୍ରୀ ଆସିଥାନ୍ତି ସାବିତ୍ରୀ ବେଶ ଦର୍ଶନ କରିବାକୁ । ଏହାକୁ ଛାଡିଦେଲେ ପ୍ରତ୍ୟେକ ମାସରେ କିଛି ନା କିଛି ପର୍ବ ପାଳନ କରାଯାଏ । ପ୍ରତି ଅଷ୍ଟମୀରେ, ଚତୁର୍ଦ୍ଦଶୀରେ, ପୂର୍ଣ୍ଣମୀରେ, ସଂକ୍ରାନ୍ତିରେ, ଅମାବାସ୍ୟାରେ, ମଙ୍ଗଳବାର, ଗୁରୁବାର ଦର୍ଶନ କଲେ ମହାପାପରୁ ମୁକ୍ତ ହେବା ସଙ୍ଗେ ସଙ୍ଗେ ନରକରୁ ଉଦ୍ଧାର ମିଳେ ବୋଲି ବିଶ୍ୱାସ ରହିଛି ।

**ମାଳିକା ପୃଷ୍ଠାରେ ବିରଜା :** ଦେବୀ ବିରଜାଙ୍କ ପୀଠଟି ସମ୍ପୂର୍ଣ୍ଣ ଏକ ତନ୍ତ୍ରପୀଠ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଠାରେ ଅଷ୍ଟାଦଶଭୁଜା କାଳୀ, ଷଡଭୁଜା ଦୁର୍ଗା, ଚତୁର୍ଭୁଜା ଦୁର୍ଗା, ଦଶଭୁଜା ଦୁର୍ଗା, ବରାହୀ, ଚାମୁଣ୍ଡା, ଅଷ୍ଟଲକ୍ଷ୍ମୀ ମାହେଶ୍ୱରୀ, ମନସା, ନାଗେଶ୍ୱରୀ, ନାଗଚଣ୍ଡୀ, ଭୈରବୀ, ପାତାଳ ଭୈରବୀ, ଉଗ୍ରତାରା, କଙ୍କାଳୀ, କାଳୀ, ସପ୍ତ ମାତୃକା ମୂର୍ତ୍ତି ପରିଦୃଷ୍ଟ ହୋଇଥାନ୍ତି । ଦେବୀଙ୍କ ମନ୍ଦିର ବେଢାର ଏକ ସ୍ୱତନ୍ତ୍ର ଆକର୍ଷଣ ରହିଛି । ଚାରି ଦିଗରେ ଚାରୋଟି ଦ୍ୱାର । ପଶ୍ଚିମ ଦ୍ୱାରଟିକୁ ଛାଡିଦେଲେ ପ୍ରାୟତଃ ସବୁ ସମୟରେ ଅନ୍ୟ ତିନୋଟି ଦ୍ୱାର ଉନ୍ମୁକ୍ତ । କଳିଯୁଗର ଶେଷ ଭାଗରେ ଏହି ପଶ୍ଚିମ ଦ୍ୱାର ଆପଣାଛାଏଁ ଖୋଲିଯିବ ଓ ନିକଟରେ ଥିବା ସଂହାର ଭୈରବ ଏବଂ ସଂହାର ଭୈରବୀ ଡାକ ଦେବେ ବୋଲି ମାଳିକା ପ୍ରବଚନ ରହିଛି । ବିରଜାଭୂମି ଯାଜପୁରରେ ଭଗବାନଙ୍କ ଅବତାର କଳ୍କୀ ରାମଙ୍କର ଆବିର୍ଭାବ ହେବ ବୋଲି ମାଳିକାବିତ୍‌ମାନେ ପ୍ରମାଣ ଦେଇଥାନ୍ତି ।

**ଐତିହାସିକ ପୃଷ୍ଠଭୂମି :** ବିରଜାଙ୍କ ପୀଠସ୍ଥଳୀ ଭାବେ ବର୍ତ୍ତମାନ ଯେଉଁ ମନ୍ଦିରର ଅବସ୍ଥିତି ଥିବା ଦେଖାଯାଏ, ତାହା ପୁରାତନ ନୁହେଁ । ଏହାକୁ ଯାଜପୁରସ୍ଥ ଜନୈକ ଜମିଦାର ଶ୍ରୀଯୁକ୍ତ ଚୌଧୁରୀଙ୍କ ସହାୟତାରେ ମରାମତି କରାଯାଇଥିଲା । ପ୍ରକୃତ ଦେବୀଙ୍କ ପୀଠସ୍ଥଳୀଭାବେ ଲୋକମାନେ ଯାଜପୁରସ୍ଥ ଅନତି ଦୂରରେ ଥିବା କଳସପୁରସ୍ଥିତ ମନ୍ଦିରଟିକୁ ବିରଜା ଦେବୀଙ୍କ ମନ୍ଦିର ଭାବେ ଦେଖାଇଦିଅନ୍ତି ।ଏହି ଭଗ୍ନ ମନ୍ଦିରଟି ଖ୍ରୀଷ୍ଟାବ୍ଦ ୫ମ ବା ୬ଷ୍ଠ ଶତାବ୍ଦୀର ମନ୍ଦିର ବୋଲି ଅନୁମାନ କରାଯାଏ । କାରଣ ଏହି ମନ୍ଦିରଟିର ଶିଖର ଗୁପ୍ତଯୁଗୀୟ ମନ୍ଦିର ଶୈଳୀ ସହ ସାମଞ୍ଜସ୍ୟ ଅଛି । ଗୁପ୍ତଯୁଗୀୟ ମନ୍ଦିରର ଶିଖର ଭଳି ଏହି ମନ୍ଦିରର ଶିଖର ଚଟକା ଅଟେ । ଖ୍ରୀଷ୍ଟାବ୍ଦ ୫ମ ଶତାବ୍ଦୀ ଯାହା ଗୁପ୍ତଯୁଗୀୟ ରାଜାମାନଙ୍କ ଶାସନକାଳ ପ୍ରକୃତ ପକ୍ଷେ ମନ୍ଦିର




ଗଠନର ପ୍ରାଥମିକ ଓ ପ୍ରାରମ୍ଭିକ ସୋପାନ ଥିଲା । ବର୍ତ୍ତମାନର ମନ୍ଦିରଠାରୁ ସେସମୟର ଗଠନ ଶୈଳୀରେ ବହୁ ପାର୍ଥକ୍ୟ ଥିଲା । ସେତେବେଳେ ମନ୍ଦିରର ଶିଖର ଦେଶ ଚଟକା ଥିବାର ପ୍ରମାଣ ଦେଇ ସେସମୟର ମନ୍ଦିର ଭାବେ ଝାନ୍ସୀସ୍ଥ ଦେବଗଡଠାରେ ଥିବା ଦଶାବତାର ମନ୍ଦିରକୁ ଐତିହାସିକ ଆର.ଡି.ବାନାର୍ଜୀ ଏହାକୁ ୬ଷ୍ଠ ଶତାବ୍ଦୀର ମନ୍ଦିର ଭାବେ ପରିକଳ୍ପନା କରିଛନ୍ତି ।

ତେଣୁ କଳସପୁରସ୍ଥ ମନ୍ଦିରର ଶୈଳୀ ବିଶେଷତଃ ଶିଖରର ଚଟକା ଆକୃତିକୁ ବିଚାର କଲେ ଏହାକୁ ନିଶ୍ଚିତ ଭାବରେ ଖ୍ରୀଷ୍ଟାବ୍ଦ ୫ମ ବା ୬ଷ୍ଠ ଶତାବ୍ଦୀର କୁହାଯାଇପାରେ । ସେଭଳି ଗୁପ୍ତଯୁଗୀୟ ମନ୍ଦିରର ଶୈଳୀ ଓଡିଶାର କୌଣସି ସ୍ଥାନରେ ଦେଖିବାକୁ ମିଳେ ନାହିଁ । ପରବର୍ତ୍ତୀ କାଳରେ ଅର୍ଥାତ୍ ଓଡିଶାରେ ଭୌମକର ରାଜବଂଶ ରାଜୁତି କରିବା ସମୟରେ ତ୍ରିରଥ ମନ୍ଦିର, ସୋମବଂଶୀ ରାଜାମାନଙ୍କ ରାଜୁତି ସମୟରେ ପଞ୍ଚରଥ ମନ୍ଦିର ଏବଂ ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ନରପତିମାନଙ୍କ ରାଜୁତି ସମୟରେ ସପ୍ତରଥ ଓ ନବରଥ ମନ୍ଦିରମାନ ଗଠନ କରାଯାଇଥିବାର ବିଧି ପରିଲକ୍ଷିତ ହୁଏ । ବର୍ଷର ବିଭିନ୍ନ ସମୟରେ ଓଡିଶା ସମେତ ଭାରତର ବିଭିନ୍ନ ଅଞ୍ଚଳରୁ ଏଠାକୁ ଆସୁଥିବା ଯାତ୍ରୀମାନେ ଏହି କ୍ଷେତ୍ରର ଇତିହାସ ଓ ଐତିହ୍ୟର ମୂକସାକ୍ଷୀ ରୂପେ ପରିଗଣିତ ହେଉଥିବା ପ୍ରାଚୀନ କୀର୍ତ୍ତି ସମ୍ପର୍କରେ ଜାଣିବା ପାଇଁ ଚାହିଁଲେ ନିରାଶ ହେବାକୁ ପଡିଥାଏ । ଆହୁରି ମଧ୍ୟ ରାଜ୍ୟ ଓ ରାଜ୍ୟ ବାହାରୁ ଆସୁଥିବା ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବା ପାଇଁ କିଛି ଆଖିଦୃଶିଆ ବ୍ୟବସ୍ଥା ହୋଇପାରି ନାହିଁ । ଏହି କ୍ଷେତ୍ରରେ ବିରଜା ମନ୍ଦିର ସମେତ ବହୁ ପ୍ରାଚୀନ ମନ୍ଦିର ରହିଲେ ମଧ୍ୟ ସେଗୁଡିକ ଧ୍ୱଂସ ପାଇଯିବା ପୂର୍ବରୁ ପ୍ରତ୍ନତତ୍ତ୍ୱ ବିଭାଗ ଏହାର ସଂଗ୍ରହ ସଂରକ୍ଷଣ ଓ ରକ୍ଷଣାବେକ୍ଷଣା ପାଇଁ ଯାଜପୁରଠାରେ ଏକ ସଂଗ୍ରହାଳୟ ସ୍ଥାପନ କଲେ ବିଲୋପ ଘଟିଥିବା ମହାନ୍ ଐତିହ୍ୟର ସୁରକ୍ଷା ହୋଇପାରନ୍ତା ।

ଉପୁଳାଇ, ନଗୁଆଁ, ଯାଜପୁର ରୋଡ

# ଜଗତ ଜନନୀ

ବିମଳା ସିଂହ

ଜୟ ମା' ଦୁର୍ଗେ ଦୁର୍ଗତି ନାଶିନୀ
ଜୟ ମା' ସିଂହବାହିନୀ
ଜୟ ମା' ମଙ୍ଗଳା ମଙ୍ଗଳ କାରିଣୀ
ଅଭୟ ବର ଦାୟିନୀ ।
ତୁମେ ଅଟ ଶ୍ୟାମା କାଳିକା ଉମା
ସଂକଟ ତାରିଣୀ ଶିବା
ତୁମେ ଅଟ ପରା ଶକ୍ତି ସ୍ୱରୂପିଣୀ
ଭଗବତୀ ଜଗଦମ୍ବା
ତୁମେ ଅଟ ପରା ବିଘ୍ନ ବିନାଶିନୀ
ଭୈରବୀ ମା' କାତ୍ୟାୟିନୀ ।
ତୁମେ ଅଟ ଚଣ୍ଡୀ ଗୌରୀ ସମଲାଇ
କାଳିଜାଇ ଉଗ୍ରତାରା
ତୁମେ ଭଦ୍ରକାଳୀ ଗଡ଼ଚଣ୍ଡୀ ପୁଣି
ଅମ୍ବିକା କାଳିକା ତାରା



ତୁମେ ଅଟ ଶକ୍ତି-ସ୍ୱରୂପା ପରା ଗୋ
ତାରିଣୀ ମା' ମନମୋହିନୀ ।
ତୁମେ ଅଟ ପୁଣି ଶତ୍ରୁ ସଂହାରିଣୀ
ରାମଚଣ୍ଡୀ ଧୂମାବତୀ
ଚର୍ଚ୍ଚିକା ଶାରଳା ହିଙ୍ଗୁଳା ବିମଳା
ଶିବାନୀ ଭବାନୀ ସତୀ
ମହିଷ ମର୍ଦ୍ଦିନୀ କରୁଣାମୟୀ ଗୋ
ଶିବ ପ୍ରିୟା ଶିବ ମୋହିନୀ ।
କୃପା ନେତ୍ରେ ଚାହିଁ ଢାଳ ସୁଧା ବାରି
ମାଆ ଗୋ ଜଗତ ଜନନୀ ।

ପ୍ଲଟ୍ ନଂ- ୧୮୬୮, ଲେନ୍- ୬, ଭକ୍ତମଧୁ ନଗର
ଗଣ୍ଡମୁଣ୍ଡା, ପୋ - ଖଣ୍ଡଗିରି , ଭୁବନେଶ୍ୱର-୩୦




# ବାଘ ଯାତରା

**ଡକ୍ଟର ପ୍ରମୋଦିନୀ ହୋତା**

ପାହାଡ଼, ପର୍ବତ ଜଙ୍ଗଲ ଘେରା କୋରାପୁଟ ଜିଲ୍ଲା, ଯେଉଁଠି ନୀଳ ଆକାଶର ମେଘମାଳାଗୁଡ଼ିକ ପାହାଡ଼ର ମଥାନକୁ ଛୁଇଁ ଦେଇ ଦଉଡ଼ି ଯିବା ଭଳି ଦିଶେ । ମଣିଷଟି ମାନସିକ ବିଷାଦକୁ ଲାଘବ କରିବା ସହିତ ତା'ର ମନକୁ ସ୍ୱଚ୍ଛ ଆଚ୍ଛନ୍ନ କରିଦିଏ, ଏହାର ପରିବେଶକୁ ଦେଖି ସାଧାରଣ ମଣିଷଟି କବି ପାଲଟିଯାଏ । ଚାରିଆଡ଼େ ଘେରା ରହିଥାଏ ପର୍ବତମାଳା ମଝିରେ ରହିଥାଏ ଆଦିବାସୀ ପଲ୍ଲୀ । ପୁଣି କେଉଁଠି ଦେଖାଯାଏ ପାହାଡ଼ ଉପରେ ଆଦିବାସୀ ଗ୍ରାମ । ଘାଟି ରାସ୍ତାରେ ଯିବା ସମୟରେ ଦେଖାଯାଉଥାଏ ଚାଳଘର ଉପରୁ ଧୂଆଁ, ଦୂରରେ ଶୁଭୁଥାଏ ସାଇଲୋଡ଼ି ଗୀତରେ ମୁଖରିତ ବନଭୂମି । ବାରମାସରେ ଆଦିବାସୀମାନେ ବିଭିନ୍ନ ପର୍ବପର୍ବାଣି ପାଳନ କରିଥାନ୍ତି । ପୁରୁଣା କୋରାପୁଟରେ ବାଘ ଦେବତାଙ୍କ ଗୁମ୍ଫା ରହିଛି । ଗୃହପାଳିତ ପଶୁ, ପକ୍ଷୀ ତଥା ମଣିଷକୁ ସୁସ୍ଥ ରଖିବା ପାଇଁ ଆଦିବାସୀମାନେ କାଠ, ପଥର, ପର୍ବତ, ଗଛ, ନାଗ ଓ ବାଘକୁ ଦେବତା ଭାବରେ ପୂଜା କରିଥାନ୍ତି । ଚୈତ୍ର ମାସରେ ବେଣ୍ଟ ପର୍ବ ହୋଇଥାଏ । ବେଣ୍ଟ ପର୍ବ ସରିବା ପରେ ଆଦିବାସୀମାନେ ଯାତ୍ରା ପାଇଁ ପ୍ରସ୍ତୁତି ପର୍ବ ଆରମ୍ଭ କରିଥାନ୍ତି । ବାଘ ଦେବତା ଗୁମ୍ଫା ଭିତରେ ବାସ କରିଥାନ୍ତି ।

'ବାଘ ଯାତରା' କୁ 'ବାଘପାର ଯାତରା' ବୋଲି କୁହାଯାଏ । ଏହି ଯାତ୍ରା ତିନିବର୍ଷକୁ ଥରେ ପାଳନ କରାଯାଇଥାଏ । ଲୋକମାନେ ବିଶ୍ୱାସ କରନ୍ତି ଯେ, ବାଘ ଦେବତାର ବାସସ୍ଥଳୀ ଗୁମ୍ଫା । ସେଠାରେ ଯଦି ମନ୍ଦିର ନିର୍ମାଣ କରାଯାଏ ତେବେ ମଣିଷମାନେ ମରିଯିବେ, ବାଘ ଦେବତା ଖାଇଦେବ । ପୁରୁଣା କୋରାପୁଟ ନିକଟରେ ଅଛି ସାତଟି ଗ୍ରାମ – ତେନ୍ତୁଳିଗୁଡ଼ି, ପଡ଼ିଆଗୁଡ଼ା, ଡେଙ୍ଗାଗୁଡ଼ା, ପାକିଆ ଗୁଡ଼ା, ରଣାସାହି, ଗାଦବା ସାହି, ପରଜା ସାହି । ସାନ ଚିନ୍ଦିରି ଗାଁ ଏବଂ ବଡ଼ ଚିନ୍ଦିର ଗାଁର ଆଦିବାସୀମାନେ ବାଘଯାତରା ପାଳନ କରିଥାନ୍ତି । ପ୍ରତ୍ୟେକ ଗାଁର ମୁଖିଆ ସମସ୍ତେ ଯାତ୍ରାର ଏକ ମାସ ପୂର୍ବରୁ ବଡ଼ ଚିନ୍ଦିରି ଗ୍ରାମର ମାଣ୍ଡୁଦାନ୍ଡ (ମଣ୍ଡପ ଗାଁର) ନିକଟରେ ଏକତ୍ରୀତ ହୋଇଥାନ୍ତି । ସଭା ବସିବାର ଏକଦିନ ପୂର୍ବରୁ ମଣ୍ଡପକୁ ସଫା କରାଯାଏ । ହଳଦୀ ମିଶା ପାଣି ଦ୍ୱାରା ସଫା କରାଯାଏ । ସେଠାରେ ପୂଜାରୀମାନେ ଗ୍ରାମଦେବୀଙ୍କୁ ଆବାହନ କରି କୁକୁଡା ଅଣ୍ଡା, ନଡ଼ିଆ, କଦଳୀ, ଧୂପଦୀପ, ଫୁଲ ଦେଇ ପୂଜା କରିଥାନ୍ତି ଏବଂ ପୂଜା କିପରି ସେହି ବର୍ଷ ଭଲ ଭାବରେ ହେବ ସେଥିପାଇଁ ମାଣ୍ଡୁ ଦାନ୍ଡ ଉପରେ ବସି ଏକତ୍ରୀତ ହୋଇ ଦିନ ବାର ଠିକ୍ କରିଥାନ୍ତି । ଦିସାରୀ ବୈଶାଖ ମାସ ଓ ପୂର୍ଣ୍ଣିମାର ପୂର୍ବ ମଙ୍ଗଳବାର ଦିନକୁ ଯାତରା ପାଇଁ ଦିନ ଠିକ୍ କରିଥାଏ । ତା'ପରେ ସମସ୍ତେ ଏକତ୍ରୀତ ହୋଇ 'ବାଘ ଦେବତା' ବାସ କରୁଥିବା ଗୁମ୍ଫା ନିକଟକୁ ଯାଇଥାନ୍ତି । ସେଠାରେ ଗୁମ୍ଫାର ବାହାରେ ଥିବା ପଥର ଉପରେ ବାଘ ଚିତ୍ର, ପୋଢ଼ ଚିତ୍ର, ଛେଳି ଚିତ୍ର ଅଙ୍କନ କରାଯାଏ ଏବଂ ଗୁମ୍ଫାର ବାହାରେ ରହିଥିବା ଖୋଲା ସ୍ଥାନକୁ ଗୋବର ଏବଂ ରଙ୍ଗମାଟି (ନାଲିମାଟି) ଦ୍ୱାରା ଲିପାପୋଛା କରାଯାଏ । ପୁରୁଣା କୋରାପୁଟର ଶେଷ ମୁଣ୍ଡରେ ବାଘ ଦେବତା ଗୁମ୍ଫା ରହିଅଛି ।

ଲୋକମାନଙ୍କ ବିଶ୍ୱାସ ଯେ ଆଜି ମଧ୍ୟ ବାଘ ଦେବତା ସେହି ଗୁମ୍ଫା ଭିତରେ ବାସ କରୁଛନ୍ତି । ଆଦିବାସୀ 'ଯାତ୍ରା ବାଘପାର' ବା 'ବାଘ ଯାତରା' ଆରମ୍ଭ ହେବା ପୂର୍ବଦିନ ରଣାସାହିରେ ପୂଜା ପାଉଥିବା ଠାକୁରାଣୀ ମନ୍ଦିରରେ ପୂଜାଅର୍ଚ୍ଚନା କରାଯାଇ ଆଜ୍ଞାମାଳ ନେଇ ପୂଜାସ୍ଥାନକୁ ନିଆଯାଏ । ପୂର୍ଣ୍ଣିମାର





ପୂର୍ବ ମଙ୍ଗଳବାର ଭୋର ସକାଳ ଛଅଟାରେ ପ୍ରଥମେ ବଡ଼ ଚିନ୍ଦିରି ଗାଁର ପୂଜାରୀ ଗାଧୋଇ ସାରିବା ପରେ ପବିତ୍ର ମନରେ ଧଳା ନୂଆ ଧୋତି, ଗାମୁଛା ପିନ୍ଧି କଦଳୀ, ନଡ଼ିଆ, ଧୂପ ଦୀପ, ଫୁଲ, ଫଳ ସାଥିରେ ନେଇ ଠାକୁରାଣୀ ମନ୍ଦିରରୁ ଆଣିଥିବା ଆଞ୍ଜାମାଳ ସାଥିରେ ବାଘ ଦେବତା ରହିଥିବା ଗୁମ୍ଫା ନିକଟକୁ ଯାଇଥାନ୍ତି। ସେଠାରେ ପ୍ରଥମେ ହୁଣ୍ଡୀ ଦେବତା ବା ଠାକୁରାଣୀଙ୍କୁ ପୂଜା କରାଯାଏ। ତା'ପରେ 'ବାଘ ଦେବତା'ଙ୍କୁ ପୂଜା ଏବଂ ମନ୍ତ୍ର ଦ୍ୱାରା ଆବାହନ କରାଯାଏ। ପୂଜାରୀ ଦୁଇଦିନ ଧରି ଉପବାସ ରହିଥାନ୍ତି। ନୀତି ନିୟମ ଅନୁଯାୟୀ ପୂଜାର୍ଚ୍ଚନା କରାଯାଏ। ଦିସାରୀ ଏବଂ ପୂଜାରୀ ପୂଜା କରିସାରିବା ପରେ ଦିସାରୀ ମୁଠାଏ ଚାଉଳ ଯାହାକୁ ମରାଟ୍ ଚାଉଳ କୁହାଯାଏ ହାତରେ ଧରି ଗୁମ୍ଫା ଭିତରକୁ ବାରମ୍ବାର ମାରିଥାଏ (ଫିଙ୍ଗିଥାଏ)। ଅନ୍ୟ ପଟେ ପୂଜାରୀ ପୂଜା କରୁଥାନ୍ତି। ଦୁଇ ତିନିଥର ମରାଟ୍ ଚାଉଳ (ମୁଠାଏ ଚାଉଳ) ଗୁମ୍ଫା ଭିତରକୁ ଫିଙ୍ଗିବା ପରେ ଭିତରୁ ଶବ୍ଦ ଶୁଭେ। ଦିସାରୀ ଗୁରୁମାଈ ମନ୍ତ୍ର ପଢ଼ିବା ଆରମ୍ଭ କରି ଦେଇଥାନ୍ତି। ବାଘ ଦେବତାଙ୍କୁ ସ୍ମରଣ ଏବଂ ଆମନ୍ତ୍ରଣ କରିଥାନ୍ତି।

ଏହି ସମୟରେ ମରିଆ ବାଜା (ଏକ ପ୍ରକାର ବାଦ୍ୟ) ବାଜିବା ଆରମ୍ଭ ହୁଏ। ଗୁରୁମାଈ ବାହାରେ ବସି 'ବାଘ ଦେବତା'ଙ୍କୁ ମନ୍ତ୍ର ପଢ଼ି ଗାଁର ମଙ୍ଗଳ ପାଇଁ ଦୁଃଖ ଜଣାଉଥାଏ। ଗୁମ୍ଫା ନିକଟରେ ବଡ଼ ବଡ଼ ଲୁହାକଣ୍ଟାରେ ଶେଯ ତିଆରି କରାଯାଇଥାଏ। ଦିସାରୀ ବାଘଦେବତାଙ୍କୁ ସ୍ମରଣ କରି ମରାଟ୍ ଚାଉଳ (ମୁଠାଏ ଚାଉଳ) ହାତରେ ଧରି ଗୁରୁମାଈ ଉପରକୁ ମାରିଦିଏ (ଫିଙ୍ଗିଦିଏ)। ମରାଟ୍ ଚାଉଳ ମାରିବା ଫଳରେ ଗୁରୁମାଈ ଉପରେ ବାଘ ଦେବତା ସବାର (ଦେବତା ଲାଗିବା) ହୋଇଥାନ୍ତି। ଯାହା ଫଳରେ ମରିଆ ବାଜାର ତାଳେ ତାଳେ ଗୁରୁମାଈ କଣ୍ଟା ଶେଯ ଉପରେ ଡେଇଁ, ଶୋଇ, ନାଚିବା ଆରମ୍ଭ କରିଦିଏ। ଜୋର୍‌ରେ ମରିଆ ବାଜା ବାଜିବା ଆରମ୍ଭ ହୁଏ। ପରେ ଦିସାରୀ ଉପସ୍ଥିତ ଲୋକଙ୍କ ଉପରେ ମରାଟ୍ ଚାଉଳ ମନ୍ତ୍ର ବୋଲି ମାରିଦିଏ (ଫିଙ୍ଗିଦିଏ)। ଗୁରୁମାଈ ସାଥିରେ ସମସ୍ତେ କଣ୍ଟା ଶେଯରେ ବାଦ୍ୟର ତାଳେ ତାଳେ ନାଚିବା ଆରମ୍ଭ କରି ଦେଇଥାନ୍ତି। ଲୋକଙ୍କ ବିଶ୍ୱାସ ଏହି ସମୟରେ ସମସ୍ତଙ୍କ ଉପରେ ବାଘ ଦେବତା ସବାର ହୋଇଥାନ୍ତି। ଦିସାରୀ ପୂଜା କରୁଥାଏ ଗୋଟିଏ ପଟେ ଓ ଅନ୍ୟ ପଟେ ପୂଜାରୀ ପୂଜା ସରିଗଲେ ଏକମୁହାଁ ହୋଇ ନିଜ ଘରକୁ ଚାଲି ଯାଇଥାନ୍ତି। ପୂଜା ଶେଷ ହେଲାପରେ ଦିସାରୀ ଗୁରୁମାଈ ଦେହରେ ଦୀପରେ ଥିବା ଜଡ଼ାତେଲ ଲାଗାଇଦିଏ। ଯାହାଫଳରେ ଗୁରୁମାଈ ଶାନ୍ତ ହୋଇ ନାଚ ବନ୍ଦ କରିଦିଏ। ଗୁରୁମାଈ ଶାନ୍ତ ହେଲାପରେ ସାଥିରେ ନାଚୁଥିବା ଲୋକମାନେ ଶାନ୍ତ ହୋଇ ନାଚ ବନ୍ଦ କରି ଦେଇଥାନ୍ତି। ମରିଆ ବାଦ୍ୟ ଏବଂ ଅନ୍ୟାନ୍ୟ ବାଦ୍ୟ ବାଜିବା ବନ୍ଦ ହୋଇଯାଏ। ଯାତରା ସମୟରେ ସେଠାରେ ବିଭିନ୍ନ ପ୍ରକାର ଦୋକାନ ବଜାର ସହିତ ଆଦିବାସୀ ନୃତ୍ୟ, ବାଦ୍ୟ ଦିନ ତମାମ ଲାଗି ଥାଏ। ହଜାର ହଜାର ଲୋକ ଯାତ୍ରା ଦେଖିବାକୁ ଆସିଥାନ୍ତି।

ରାତି ନଅଟା ପରେ ଯାତ୍ରା ଶେଷ ହୁଏ। ସମସ୍ତେ ଏକତ୍ରୀତ ହୋଇ ନିଜ ନିଜ ଘରକୁ ଫେରିଥାନ୍ତି। ଲୋକଙ୍କ ବିଶ୍ୱାସ ବାଘ ଦେବତା ଆସିବା ସମୟରେ ସେଠାରେ କୌଣସି ବ୍ୟକ୍ତି ରହିବା ଉଚିତ ନୁହେଁ। ବଡ ଚିନ୍ଦିରି ଗ୍ରାମର ମୁଖ୍ୟ ପୂଜାରୀ ଜଗନ୍ନାଥ ମାଝୀଙ୍କ କହିବା ଅନୁସାରେ ରାତ୍ରିରେ ବାଘ ଦେବତା ଗୁମ୍ଫାରୁ ବାହାରି ଆସି ପୁଣି ଗୁମ୍ଫା ଭିତରକୁ ଚାଲିଯାଇଥାନ୍ତି । ସେହିଦିନ ସେହି ସ୍ଥାନରେ ଶବ୍ଦ ହୁଏ ନାହିଁ। ଚଢ଼େଇ ଚିରୁଗୁଣୀ ମଧ୍ୟ ଶବ୍ଦ କରନ୍ତି ନାହିଁ। ତା' ପରଦିନ ସକାଳେ ଗାଁର ଲୋକମାନେ ଏକତ୍ରୀତ ହୋଇ ବାଘଦେବତା ଗୁମ୍ଫା ନିକଟକୁ ଯାଇଥାନ୍ତି। ଯାହାଫଳରେ ବାଘ ଦେବତା ଖୁସି ହୋଇଥାନ୍ତି। ତା' ପରେ ସେହିଦିନ ଜମିରେ ଧାନ ବିହନରେ ମୁଠି ପକାଯାଏ। ଆଦିବାସୀମାନଙ୍କ ବିଶ୍ୱାସ ରହିଛି, ବାଘ ଦେବତା ଦୈବୀ ଦୁର୍ବିପାକରୁ ଗାଁର ଗୃହପାଳିତ ପଶୁ, ପକ୍ଷୀ ସମସ୍ତଙ୍କୁ ରକ୍ଷା କରିଥାନ୍ତି। ବାଘ ଦେବତାଙ୍କୁ ଖୁସି କରିବା ପାଇଁ ଆଜି ମଧ୍ୟ ଆଦିବାସୀମାନେ ଏହି ପୂଜା କରିଥାନ୍ତି । 'ବାଘ ଯାତରା' ବା 'ବାଘ ପାର ଯାତ୍ରା' ହେଉଛି, ଆଦିବାସୀମାନଙ୍କର ଏକତା, ସଂହତି ଏବଂ କୃଷିର ଯାତ୍ରା। ସଂଘବଦ୍ଧ ଭାବରେ ଜୀବନ ବିତାଇବା ପାଇଁ ଏହି ଯାତ୍ରା ମାର୍ଗ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ସଂସ୍କୃତି ଓ ପରଂପରାକୁ ଉଜ୍ଜୀବିତ କରି ରଖିଥାଏ।

---

ଅତିରିକ୍ତ ପ୍ରଫେସର (ପ୍ରାକ୍ତନ)
ଜୟପୁର, କୋରାପୁଟ

# ଅନୁବାଦିକା ନନ୍ଦିନୀ ଶତପଥୀ

**ଜୟନ୍ତୀ ନାୟକ**

ନନ୍ଦିନୀ ଶତପଥୀ ଭାରତବର୍ଷରେ ରାଜନେତ୍ରୀ ଭାବରେ ସୁବିଦିତା । ଭାରତର କେନ୍ଦ୍ରମନ୍ତ୍ରୀ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରେ ଜନତାଙ୍କର ସେ ଥିଲେ ସେବିକା । ମାତ୍ର ଓଡ଼ିଆ ସାହିତ୍ୟକୁ ତାଙ୍କର ବିଶେଷ ଅବଦାନ ରହିଅଛି । ତାଙ୍କର ଏହି ସାରସ୍ୱତ ବ୍ୟକ୍ତିତ୍ୱ ସମ୍ପର୍କରେ ସମସ୍ତେ ପ୍ରାୟ ପରିଚିତ ନୁହଁନ୍ତି ।

ପ୍ରଖ୍ୟାତ ସାହିତ୍ୟିକ, ସବୁଜ କବି ପଦ୍ମଭୂଷଣ ଡ଼କ୍ଟର କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ କନ୍ୟାରତ୍ନ ନନ୍ଦିନୀ । ସେ ରେଭେନ୍ସା କଲେଜରୁ ଓଡ଼ିଆ ଭାଷା ଓ ସାହିତ୍ୟରେ ଏମ୍.ଏ. ପାସ୍ କରି ନିଜକୁ ଜଣେ ଲେଖିକା ଭାବରେ ଜୀବନ ଆରମ୍ଭ କରିଥିଲେ । ନନ୍ଦିନୀଙ୍କ ସାରସ୍ୱତ ପ୍ରତିଭା ଅନନ୍ୟ । ସେ ଯେପରି ଜଣେ ସୃଷ୍ଟିଶାଳୀ ଗାଳ୍ପିକା, କବୟିତ୍ରୀ, ଠିକ୍ ସେହିପରି ଜଣେ ସଫଳ ଅନୁବାଦିକା । ତାଙ୍କ ଲେଖନୀରେ ଦୁଇ ଗୋଟି ଗଳ୍ପ ସଂକଳନ ଯଥା– କେତୋଟି କଥା, ସପ୍ତଦର୍ଶୀ ଓ ଗୋଟିଏ କବିତା ସଂକଳନ– ଉତ୍ତର ପୁରୁଷ, ଓଡ଼ିଆ ବାଣୀ ଭଣ୍ଡାରକୁ ଏକ ବଳିଷ୍ଠ ଅବଦାନ ।

ଓଡ଼ିଆ ଅନୁବାଦ ସାହିତ୍ୟକୁ ନନ୍ଦିନୀ ଦେବୀଙ୍କ ଦାନ ଏକ ଅମ୍ଳାନ କୀର୍ତ୍ତିସ୍ତମ୍ଭ ଭଳି । କେନ୍ଦ୍ରସାହିତ୍ୟ ଏକାଡ଼େମୀର ସଚିବ କ୍ରିଷ୍ଣା କ୍ରୀପାଳିନୀଙ୍କ ଦ୍ୱାରା ଲିଖିତ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଆତ୍ମ ଜୀବନୀର ଓଡ଼ିଆ ଅନୁବାଦ–ଗାନ୍ଧୀ କଥାମୃତ, ଯାହାକି କେନ୍ଦ୍ର ସାହିତ୍ୟ ଏକାଡ଼େମୀର ଏକ ପୁସ୍ତକ ଭାବେ ୧୯୬୦ ମସିହାରେ ପ୍ରକାଶ କରିଥିଲା । ବିଶିଷ୍ଟ ବଙ୍ଗଳା ଲେଖିକା ପଦ୍ମଭୂଷଣ ଡ଼କ୍ଟର ମହେଶ୍ୱତା ଦେବୀଙ୍କ ନିର୍ବାଚିତ ଗଳ୍ପ, ପଦ୍ମଭୂଷଣ ଡ଼କ୍ଟର ଅମୃତା ପ୍ରୀତମ୍‌ଙ୍କ ଆତ୍ମ ଜୀବନୀ–ରେଭିନ୍ୟୁ ଟିକେଟ୍‌କୁ ଓଡ଼ିଆରେ ଅନୁବାଦ କରିଥିଲେ । ବିଶେଷତ୍ୱ ବଙ୍ଗଳା ଦେଶ ଲେଖିକା ତସ୍‌ଲିମା ନସ୍‌ରିନ୍‌ଙ୍କ ବହୁ ଚର୍ଚ୍ଚିତ ଉପନ୍ୟାସ–ଲଜ୍ଜାକୁ ଓଡ଼ିଆରେ ଅନୁବାଦ କରି ନନ୍ଦିନୀ ଦେବୀ ଅନେକ ଯଶର ଅଧିକାରିଣୀ ହୋଇପାରିଛନ୍ତି ।

ରାଜନୀତି ଭିତରେ ସବୁକିଛି ଭୁଲି ହୋଇଯାଏ, ନନ୍ଦିନୀ ଦେବୀ ଭୁଲି ଯାଇନଥିଲେ ସାରସ୍ୱତ ସାଧନାକୁ । ଅନୁବାଦିକା ନନ୍ଦିନୀ ଦେବୀଙ୍କ ପ୍ରଥମ ଅନୁବାଦ–ଗାନ୍ଧୀ କଥାମୃତ, ମହାତ୍ମା ଗାନ୍ଧୀଙ୍କ ନିଜ ଭାଷାର ଓ ଜୀବନ ଚିନ୍ତା ଏହାର ମୁଖ୍ୟ ବିଷୟ ବସ୍ତୁ । ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱ ଓ ରଚନାର ସବିଶେଷ ପ୍ରଚାର ଓ ପ୍ରସାର କରିବା ସଙ୍ଗେ ସଙ୍ଗେ ବୃହତର ଜନସାଧାରଣଙ୍କ ଚିନ୍ତାଧାରାକୁ ତାହା ଯେପରି ସ୍ପର୍ଶ କରେ ସେଥିପ୍ରତି ଦୃଷ୍ଟି ରଖି ଏହି ସଂକଳନଟି ହୋଇଅଛି । ସେଥିରେ ସେ ଗାନ୍ଧିଜୀଙ୍କ ଜୀବନ ଦର୍ଶନର ମୂଳତତ୍ତ୍ୱ, ବିଭିନ୍ନ ଦେଶ ଓ ଜାତିର ଲୋକମାନଙ୍କ ମଧ୍ୟରେ ପ୍ରେମ ଓ ମୈତ୍ରୀ ଭାବ ବୃଦ୍ଧିରେ ତାହାର ପ୍ରଭାବ କଥା ସେ ଉଲ୍ଲେଖ କରିଛନ୍ତି । ଗାନ୍ଧୀ କଥାମୃତରେ ମୁଖ୍ୟତଃ ଗାନ୍ଧିଜୀଙ୍କ ଆତ୍ମ ଜୀବନୀ ସମ୍ବନ୍ଧୀୟ, ଧର୍ମ–ସତ୍ୟ, ସାଧନା ସାଧ୍ୟ, ଅହିଂସା ଓ ଆତ୍ମ ଶୋଧନ, ଆନ୍ତର୍ଜାତିକ ଶାନ୍ତି, ମଣିଷ ଓ ଯନ୍ତ୍ର, ପ୍ରାଚୁର୍ଯ୍ୟ ମଧ୍ୟରେ ଦାରିଦ୍ର୍ୟ, ଗଣତନ୍ତ୍ର ଓ ଜନତା, ଶିକ୍ଷା, ନାରୀ, ବିବିଧ ଆଦି ବିଷୟରେ ଗାନ୍ଧିଜୀଙ୍କ ନିଜସ୍ୱ ମତାମତ ପରିପ୍ରକାଶ ହୋଇଛି ।

ଅନୁବାଦିକା ନନ୍ଦିନୀ ଦେବୀଙ୍କ ଦ୍ୱିତୀୟ ଅନୁବାଦକ ପୁସ୍ତକ ଭାରତର ବିଶିଷ୍ଟ ଲେଖିକା, ପୂର୍ବତନ ରାଜ୍ୟସଭା ସାଂସଦ, ଜ୍ଞାନପୀଠ ବିଜୟିନୀପ୍ରାପ୍ତ ପଦ୍ମଭୂଷଣ ଡ଼କ୍ଟର ଅମୃତା ପ୍ରୀତମ୍‌ଙ୍କ ଆତ୍ମ ଜୀବନୀ–ରେଭିନ୍ୟୁ ଟିକେଟ୍‌କୁ ଓଡ଼ିଆରେ ଅନୁବାଦ କରିଥିଲେ । ଏହି ପୁସ୍ତକ ପାଇଁ ନନ୍ଦିନୀ ଦେବୀ ୨୪ ଡ଼ିସେମ୍ବର




୧୯୯୫ରେ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଥିଲେ। ଅମୃତା ପ୍ରୀତମ୍‌ଙ୍କ ଜୀବନ ଥିଲା ସାମାଜିକ ଅବକ୍ଷୟ ଓ ମୂଲ୍ୟବୋଧ ପ୍ରତିଷ୍ଠା ପାଇଁ ସ୍ୱର ଉତ୍ତୋଳନ କରିବା, ସେବେଳର ଯେପରି ରକ୍ଷଣଶୀଳ ପଞ୍ଜାବୀ ଝିଅ ସମାଜରେ ସିଗାରେଟ୍ ପିଇବା, ତାଙ୍କଠାରୁ କମ୍ ବୟସ୍କ ଚିତ୍ରକର ଇମ୍‌ରୋଜ୍‌ଙ୍କ ସହ ନିଜ ଘରେ ବାସ କରିବା, ଆହୁରି ଅନେକ ସାମାଜିକ ପରିବେଶ ଓ ସମାଜ ବିରୁଦ୍ଧରେ ପରିବର୍ତ୍ତନ ଏହି ରେଭ୍ୟୁନ୍ ଟିକେଟ୍‌ର ମୁଖ୍ୟ ବିଷୟବସ୍ତୁ। ଅମୃତା ପ୍ରୀତମ୍ ନିଜ ଭିତର ଓ ବାହାରର ଟିକିନିକି ଭାବରେ ବିଶ୍ଳେଷଣ କରିବା ଓ ପାଠକ ପାଠିକାଙ୍କ ନିକଟରେ ଏହାକୁ ଉପସ୍ଥାପନା କରିବା କୌଣସି ପ୍ରତିଷ୍ଠିତ ନାରୀ ପକ୍ଷରେ ସଚରାଚର ଦୃଷ୍ଟିଗୋଚର ହୁଏନାହିଁ, କିନ୍ତୁ ଅନନ୍ୟା ଥିଲେ ଅମୃତା ପ୍ରୀତମ୍।

ଅନୁବାଦିକା ନନ୍ଦିନୀ ଦେବୀଙ୍କ ତୃତୀୟ ଅନୁବାଦ ପୁସ୍ତକ ବିଶିଷ୍ଟ ବଙ୍ଗଳା ଲେଖିକା ତସ୍‌ଲିମା ନାସ୍‌ରିନ୍‌ଙ୍କ ଲଜ୍ଜାର ଓଡ଼ିଆ ଅନୁବାଦ। ଏହି ଅନୁବାଦ ନନ୍ଦିନୀଙ୍କୁ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରିଣୀ କରିପାରିଅଛି କହିଲେ ଅତ୍ୟୁକ୍ତି ହେବନାହିଁ। ବର୍ତ୍ତମାନ ସାରା ପୃଥିବୀରେ ତଥା ଆମ ରାଷ୍ଟ୍ର ଭାରତବର୍ଷରେ ସାମ୍ପ୍ରଦାୟିକତା ଯେପରି ଭୀଷଣ ଆକାର ଧାରଣା କରୁଛି ଓ ସବୁଧର୍ମର ମୌଳିକତାବାଦୀମାନେ ଯେପରି ସେମାନଙ୍କର ଟେଣ୍ଟାକଲ୍ ବିସ୍ତାର କରୁଛନ୍ତି ଲେଖିକା ତସ୍‌ଲିମା ନାସ୍‌ରିନ୍‌ଙ୍କ ଲଜ୍ଜା ତାହାର ଏକ ସାହସିକ ବିରୋଧ। ଏ ପର୍ଯ୍ୟନ୍ତ ଦେଶ ବିଭାଜନର କ୍ଷତ ମିଳାଇ ନାହିଁ, ଯାହାଫଳରେ ମଝିରେ ମଝିରେ ସାମ୍ପ୍ରଦାୟିକତା ସଂଘର୍ଷ ଆରମ୍ଭ ହୋଇ ଏହାର ଶିକାର ହୋଇଥାନ୍ତି ନିରୀହ ଲୋକମାନେ। ଭାରତର ଯେକୌଣସି ଧର୍ମୀୟ ଉନ୍ମାଦନାର ପ୍ରତିକ୍ରିୟା ମଧ୍ୟ ଦେଖାଯାଏ ବଙ୍ଗଳାଦେଶରେ। ବଙ୍ଗଳାଦେଶର ଜଣେ ତରୁଣ ଯୁବକ ସୁରଞ୍ଜନ ବଙ୍ଗଳାଦେଶରେ ତାର ଜନ୍ମ। ଧର୍ମୀୟ ମୌଳବାଦୀମାନଙ୍କର ଉନ୍ମାଦନାରେ ତାକୁ ବାସହରା ଓ ବନ୍ଧୁହରା ହେବାକୁ ପଡ଼ିଲା । ଶେଷ ପର୍ଯ୍ୟନ୍ତ ଗୋଟିଏ ତିକ୍ତ ନୈରାଶ୍ୟମୟ ଜୀବନକୁ ଠେଲି ହୋଇ ଯାଉ ଯାଉ ଗୋଟିଏ କାଣ୍ଡ କରି ବସିଲା। ସାମ୍ପ୍ରତିକ ସମୟରେ ସେ ଅସହାୟ ଦୁଃଖର କଥା ଲେଖିକା ତସ୍‌ଲିମା ନାସ୍‌ରିନ୍‌ଙ୍କ କଲମରେ ଜୀବନ୍ତ ହୋଇ ଫୁଟି ଉଠିଲା। ଏହି କାହାଣୀରେ ସବୁ ସାମ୍ପ୍ରଦାୟିକ ମୌଳବାଦୀମାନଙ୍କୁ ସେ ତୀବ୍ର ଆକ୍ରମଣ କରିଅଛନ୍ତି। ଅନୁବାଦିକା ନନ୍ଦିନୀ ଦେବୀଙ୍କ ଚତୁର୍ଥ ଅନୁବାଦ ପୁସ୍ତକ ବଙ୍ଗଳା ଲେଖିକା ପଦ୍ମଭୂଷଣ ମହାଶ୍ୱେତା ଦେବୀଙ୍କ ନିର୍ବାଚିତ ଗଳ୍ପ। ସେ ଭାରତୀୟ ସାହିତ୍ୟ ଜଗତର ଜଣେ ସୁପରିଚିତ ନାମ। ଜନସାଧାରଣଙ୍କ ତଥା ଦରିଦ୍ର ନିଷ୍ପୀଡ଼ିତ ମଣିଷର ସେବା କରିବା ବିଶେଷ କରି ପାହାଡ଼ ଜଙ୍ଗଲରେ ବସବାସ କରୁଥିବା ଅଧିବାସୀମାନଙ୍କର ସେବାକରିବା ପାଇଁ ସେ ଜୀବନରେ ଏକ ବ୍ରତଭାବରେ ଗ୍ରହଣ କରିଛନ୍ତି। ଜମିଦାର, ମହାଜନ ଇତ୍ୟାଦି ଧନୀ ଲୋକମାନଙ୍କ ସାଧାରଣ ଲୋକମାନଙ୍କ ପ୍ରତି ଯେଉଁ ବ୍ୟବହାର ସେସବୁକୁ ଅତ୍ୟନ୍ତ ସାବଲୀଳ ଓ ପ୍ରାଣସ୍ପର୍ଶୀ ଭାବରେ ମହେଶ୍ୱତା ଦେବୀ ପ୍ରକାଶ କରିଅଛନ୍ତି। ତାଙ୍କର ପଚାଶ ଗୋଟି ଗଳ୍ପ ସଂକଳନ ନିର୍ବାଚିତ ଗଳ୍ପରୁ ନନ୍ଦିନୀ ଦେବୀ ୨୦ଟି ଗଳ୍ପକୁ ଓଡ଼ିଆରେ ଅନୁବାଦ କରିଅଛନ୍ତି ଯଥା– ଜଗନ୍ନାଥଙ୍କ ରଥ, ଶିଶୁ, ଛୁରୀ, କବିପତ୍ନୀ, ଅର୍ଜୁନ, ଦାନବ, ଚୋଲିକେ ପିଛେ, ଭାତ, ଜଳଛତ୍ର, ଭୀଷ୍ମଙ୍କ ପିପାସା, ଉର୍ବଶୀ ଓ ଜାନୀ, ଜନ୍ମଦିନ, ସଞ୍ଜ ଓ ସକାଳର ମା', ସିନ୍ଦୁବାଲା, ଭିତ୍ତି, ଭାରତବର୍ଷ, ଶୂନ୍ୟସ୍ଥାନ ପୂରଣ କର, ଜାନବୀ ମା', ବନ୍ୟା, ନିଶାତ ମାଝିର ଭୁଟାନ୍ ଯାତ୍ରା ଖୁବ୍ ହୃଦୟସ୍ପର୍ଶୀ ।

ନନ୍ଦିନୀ ଶତପଥୀ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ସାହିତ୍ୟ ଭାରତୀ ସମ୍ମାନ, ବହୁ ସାରସ୍ୱତ ଅନୁଷ୍ଠାନରୁ ପୁରସ୍କୃତା ଓ ସମ୍ବର୍ଦ୍ଧିତା । ସେ ମଧ୍ୟ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଥିଲେ। ନନ୍ଦିନୀ ଦେବୀଙ୍କ ଜୀବନୀ ପୁସ୍ତକ–ମାଟିର ନନ୍ଦିନୀର ଲେଖକ ଆଶିଷ୍ ରଞ୍ଜନ୍ ମହାପାତ୍ର ଓ ନନ୍ଦିନୀଙ୍କ ସାରସ୍ୱତ କୃତୀକୁ ନେଇ ଗବେଷଣା କରି ଅଧ୍ୟାପକ ଡ଼କ୍ଟର ସୁବାଷ ନାୟକ ଡ଼କ୍ଟରେଟ୍ ଉପାଧିପ୍ରାପ୍ତ ହୋଇଛନ୍ତି । ଅନେକ ସାହିତ୍ୟିକ, ଗବେଷକ ତାଙ୍କର ସୃଜନୀକୁ ଜାତୀୟ, ଆନ୍ତର୍ଜାତୀୟ ସ୍ତରରେ ପ୍ରତିପାଦନ କରିଛନ୍ତି। ତାଙ୍କ ମୃତ୍ୟୁରେ ଭାରତବର୍ଷ ହରାଇଲା ଜଣେ ଜନନାୟିକାଙ୍କୁ ତଥା ଓଡ଼ିଆ ସାହିତ୍ୟ ଜଗତ ଜଣେ ବିଶିଷ୍ଟ ଲେଖିକାଙ୍କୁ ।

ଆଜୀବନ ସଭ୍ୟା–ଓଡ଼ିଶା ଲେଖିକା ସଂସଦ
ଶ୍ରୀରାମ ନିବାସ, ଭୁବନ ଟାଉନ୍, ଢ଼େଙ୍କାନାଳ

# ପାଷାଣ ହୃଦୟର ବିସ୍ମୟ ଦୃଶ୍ୟ

**ରବିନାରାୟଣ ସାହୁ**

ଏଇ ଆମ ଉତ୍କଳ ଭୂମି । ଯେଉଁଠି କାଳର କରାଳଗର୍ଭରେ କେତେ କେତେ ଦୁଃଖ ପାଇଥିଲେ ମଧ୍ୟ ତାହା ସର୍ବଦା ରତ୍ନପ୍ରସୂ । ଏହି ମାଟି କେତେ ମୂଲ୍ୟବାନ ଖଣିଜପଦାର୍ଥରେ ଭରିରହିଛି ସତ, କେତେବେଳେ ପାହାଡ଼ ପର୍ବତ ଝରଣା ଦ୍ୱାରା ଶୋଭାପାଉଛି । ଏହିପରି ପରିବେଶର ଅପୂର୍ବ ଶୋଭାରାଜିକୁ କେହି କେବେ କ'ଣ ଉପଭୋଗ କରି ରହିପାରିବ ?

ରାଜ୍ୟର ରାଜଧାନୀଠାରୁ ୪୯୩ କି.ମି. ଦୂରରେ ଅବସ୍ଥିତ ଟିଟିଲାଗଡ଼ ସହର । ଶାନ୍ତ ସୁନ୍ଦର ବେଶ୍ ମନମତାଣିଆ ପରିବେଶ, ଯାହାକି ସମସ୍ତ ପ୍ରକାର ବ୍ୟକ୍ତିଙ୍କୁ ନିଜ ଆଡ଼କୁ ଆକର୍ଷିତ କରିଥାଏ । ସହରର ଅନତି ଦୂରରେ ଅବସ୍ଥିତ କୁମ୍ଭଡ଼ା ପାହାଡ଼ । ଯାହାକୁ ପାଖରେ ଯାଇ ନ ଦେଖିଲେ କେହି ବ୍ୟକ୍ତି ବିଶ୍ୱାସ କରିହୁଏନା । ଏହି ପାହାଡ଼ଟି ଏକ ଲଣ୍ଡା ପାହାଡ଼ । ଯାହାର ଉପରେ କୌଣସି ଉଦ୍ଭିଦ ବା ଅରଣ୍ୟ ନ ଥିଲେ ମଧ୍ୟ ସେହି ଚିକ୍କଣ ପାହାଡଟି ଅପୂର୍ବ ଚିରନ୍ତନୀ ଶୋଭା ଧାରଣ କରିଥାଏ । ସେହି ପାହାଡ଼ ସମ୍ବନ୍ଧରେ ଜନସମାଜରେ ଅନେକ ଲୋକକଥା ବା କିମ୍ବଦନ୍ତୀ ଶୁଣିବାକୁ ମିଳେ । ବହୁ ପ୍ରାଚୀନ କାଳରେ ଏହି ପାହାଡ଼ଟି ଏକ ଆଗ୍ନେୟଗିରି ରୂପେ ସେ ଅଞ୍ଚଳରେ ବିଦ୍ୟମାନ୍ । ଗର୍ଭରେ ବହୁଦିନର ଜ୍ୱଳନ୍ତ ଲେଲିହାନ ଲାଭାକୁ ଧାରଣ କରି ସେ କେଉଁକାଳରୁ ସେହି ସହର ଉପକଣ୍ଠରେ ବିଦ୍ୟମାନ । ନୀଛା ପାହାଡ଼ ଉପରେ ଟିକିଏ ବୁଲିଆସିଲେ ବ୍ୟସ୍ତ ବହୁଳ କ୍ଳାନ୍ତ ଜୀବନଟା ନିମିଷକରେ ଶାନ୍ତି ଅନ୍ୱେଷଣର ପୂର୍ଣ୍ଣଚ୍ଛେଦ ପଡ଼ିଯାଏ । ସେହି ଐତିହପୂର୍ଣ୍ଣ କୁମ୍ଭଡ଼ା ପାହାଡ଼ ଉପରକୁ ଉଠିଲେ, ଧୀରେ ଧୀରେ ପାଦ ପକାଉ ପକାଉ ଦୃଷ୍ଟିଗୋଚର ହୁଏ, ଗୋଟିଏ ବଡ଼ ପୁଷ୍କରିଣୀ । ଏହି ଐତିହାସିକ ଗରିମା ବହନ କରୁଥିବା ପୁଷ୍କରିଣୀଟିର ଅପୂର୍ବ ଶୋଭା ବିଷୟରେ କହିଲେ ନ ସରେ । ଏହି ପୁଷ୍କରିଣୀ ନିକଟବର୍ତ୍ତୀ ସ୍ଥାନରେ ରହିଛି ପାଖାପାଖି ୩୦,୦୦୦ (ତିରିଶିହଜାର) ବର୍ଷର ପ୍ରାଚୀନ ମନ୍ଦିର । ଏହି ମନ୍ଦିରରେ ଶୋଭା ପାଆନ୍ତି, ଶାନ୍ତ କମନୀୟ କାନ୍ତିର ଶିବଲିଙ୍ଗ, ଯାହାକି ଧବଳେଶ୍ୱର ମନ୍ଦିର ଭାବରେ ନାମିତ । ସେହି ମନ୍ଦିରରେ ଦେବତାଙ୍କୁ ଦର୍ଶନ କରିବା ପାଇଁ ପାଖାପାଖି ୨୦୦ଟି ପାହାଚ ଅତିକ୍ରମ କରିବାକୁ ପଡ଼ିଥାଏ । ସେହି ମନ୍ଦିରରେ ୩ ଫୁଟ ୬ ଇଞ୍ଚ ଉଚ୍ଚ ବିଶିଷ୍ଟ ମଣ୍ଡପ ଉପରେ ଶିବଲିଙ୍ଗଙ୍କର ଲିଙ୍ଗବଦ୍ଧ ମୂର୍ତ୍ତି ଶୋଭା ପାଉଛନ୍ତି । ପାର୍ଶ୍ୱଦେବତା ଭାବରେ ମା'ଘଣ୍ଟାଶ୍ୱରୀ ସମସ୍ତ ପ୍ରକାରର ଆଶାବାନ୍ଧି ଆସିଥିବା ଭକ୍ତମାନଙ୍କର ଆଶା ପୂର୍ଣ୍ଣ କରିଥାନ୍ତି । କିମ୍ବଦନ୍ତୀ କହେ, କୁମ୍ଭଡ଼ା ପାହାଡ଼ରୁ ରାଣୀପୁର ଝରିଆଲର ଚଉଷଠୀ ଯୋଗିନୀ ପୀଠକୁ ସୁଡ଼ଙ୍ଗପଥ ଲମ୍ବି ଥିବାର ବହୁଳ ଭାବରେ ପ୍ରଚାରିତ ।

ସହରଠାରୁ ୩୫ କିଲୋମିଟର ଦୂରରେ ଅବସ୍ଥିତ ରାଣୀପୁର–ଝରିଆଲର ଚଉଷଠି ଯୋଗିନୀ ପୀଠ ଟିଟିଲାଗଡ଼ର ଅନ୍ୟ ଏକ ଆକର୍ଷଣ । ଏହି ପୀଠଟିର ପାଷାଣର ହୃଦୟ ମଧ୍ୟରେ କମନୀୟ ନରମ ଦରଦୀ ମନଟି ସଦାସର୍ବଦା ଉଦ୍‌ଜୀବିତ ହୋଇଥାଏ । ଚାରିଆଡ଼େ ମାଡ଼ିଥିବା ଚିକ୍କଣିଆ ପଥୁରିଆ ପୃଥିବୀର ପୃଷ୍ଠଭୂମି ସତ୍ୟ, କ୍ଷମା, ଦୟା ଓ ତାରୁଣ୍ୟର ସ୍ୱାକ୍ଷର ବହନ କରେ । ଏହା ପର୍ଯ୍ୟଟକ ଏବଂ ଦର୍ଶକମାନଙ୍କ ମନକୁ ନିଜ ଆଡ଼କୁ ଅନ୍ତରର ସହ ଆକର୍ଷିତ କରିଥାଏ । ଏକ ଏକର ଜମି ଉପରେ ଚାରିଆଡ଼େ ଦେଖିବାକୁ ମିଳେ ଅନେକ ଛୋଟ ଛୋଟ ମନ୍ଦିର । ଚଟାଣର ମଧ୍ୟ ସ୍ଥାନରେ ଏକ ବଳୟ ଆକାରର ବେଢ଼ା ମଧ୍ୟରେ ଚଉଷଠୀ ଯୋଗିନୀଙ୍କର କାନ୍ତ କମନୀୟ ସୌନ୍ଦର୍ଯ୍ୟ ବିଶିଷ୍ଟ ଚଉଷଠୀ ଅବତାର ଦୃଷ୍ଟିଗୋଚର ହୋଇଥାଏ । ବିଭିନ୍ନ ସଂସ୍କୃତି ଗବେଷକମାନଙ୍କର ମତ ଅନୁଯାୟୀ, ଭାରତରେ

ଅବସ୍ଥିତ ମୋଟ ତେରଟି ଯୋଗିନୀପୀଠ ମଧ୍ୟରୁ ଉତ୍କଳ ପ୍ରାନ୍ତରରେ ଚାରିଗୋଟି ପୀଠ ଏଯାବତ୍ ବିଦ୍ୟମାନ । ଛତିଶଗଡ଼ର ଶିରିପୁର ନିକଟସ୍ଥ ହାରାଘାଟରେ ମଧ୍ୟ ଏକ ଯୋଗିନୀ ପୀଠ ଅବସ୍ଥିତ । ରାଣୀପୁର-ଝରିଆଲରେ ଥିବା ଚଉଷଠୀ ଯୋଗିନୀ ପୀଠଟି ଆଧୁନିକ ଓଡ଼ିଶାର ରାଜଧାନୀ, ଭୁବନେଶ୍ୱର ସନ୍ନିକଟସ୍ଥ ହୀରାପୁରଠାରେ ଥିବା ଚଉଷଠୀ ଯୋଗିନୀ ପୀଠ ସହ ଅନେକାଂଶରେ ସାମଞ୍ଜସ୍ୟ ରହିଛି । ମଧ୍ୟଯୁଗୀୟ ସମୟରେ ଉତ୍କଳରେ ଶକ୍ତି ଉପାସନାର ନିଦର୍ଶନ ସ୍ୱରୂପ କେତୋଟି ସ୍ଥାନରେ ଏହିପରି ବିରଳ ତନ୍ତ୍ରପୀଠର ସୂଚନା ମିଳିଥାଏ, ଯାହାକି ସଂସ୍କୃତି ଗବେଷକମାନଙ୍କ ମନରେ ଅନେକରୁ ଅନେକ କୌତୁହଳ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଶାକ୍ତ ଗବେଷଣା ପାଇଁ ପ୍ରେରଣା ଯୋଗାଇଥାଏ । ରାଣୀପୁର-ଝରିଆଲ ପୀଠରେ ଆନନ୍ଦତାଣ୍ଡବ ମୁଦ୍ରାରେ ଶିବ ବଳୟାକାର ମନ୍ଦିରର କେନ୍ଦ୍ରଠାରେ ବିଦ୍ୟମାନ । ଏହା ଶୈବତନ୍ତ୍ର, ଭୌମତନ୍ତ୍ର, ଶାକ୍ତତନ୍ତ୍ର ଓ ଶାବରତନ୍ତ୍ରର ଏକ ମିଳନ ପୀଠ ଭାବରେ ସଦାସର୍ବଦା ପ୍ରାମାଣିତ ହୋଇଛି । ସୋମବଂଶୀ ରାଜା ଜନ୍ମେଜୟ ନବମ ଶତାବ୍ଦୀରେ ଉତ୍କଳ ଭୂମିରେ ଶାକ୍ତ ଉପାସନା ପାଇଁ ଏହି ମନ୍ଦିର ସ୍ଥାପନର ଉଦ୍ୟମ ସଦାସର୍ବଦା ପ୍ରଶଂସନୀୟ । ସୋମବଂଶୀ ରାଜାଙ୍କ ଦ୍ୱାରା ଏହି ଅଞ୍ଚଳରେ ଅନେକଗୁଡ଼ିଏ କୀର୍ତ୍ତିରାଜି ନିର୍ମାଣ କରାଯାଇଥିବାରୁ ରାଣୀପୁର-ଝରିଆଲ ଓ ତା'ର ସନ୍ନିକଟ କେତେକ କୀର୍ତ୍ତିରାଜିକୁ ମିଶାଇ ସୋମାପୁର ତୀର୍ଥଭାବେ ଆଖ୍ୟା ଦିଆଯାଇଥାଏ । ରାଣୀପୁର-ଝରିଆଲ ସନ୍ନିକଟ ଆଉ ଏକ ଆଶ୍ଚର୍ଯ୍ୟ କୌତୁହଳପୂର୍ଣ୍ଣ କୀର୍ତ୍ତି ଦେଖିବାକୁ ମିଳେ, ଯାହାକି ଇନ୍ଦ୍ରନାଥ ମନ୍ଦିର । ଅଷ୍ଟାଦଶ ଶତାବ୍ଦୀରେ ସୋମବଂଶୀ ଶାସକ ଓ ଭୌମବଂଶୀ ଶାସକମାନେ ଉଭୟେ ମିଶି, ଶିବ ଓ ଶାକ୍ତର ସମନ୍ୱୟ ସ୍ୱରୂପ ୯୦ ଫୁଟ ଉଚ୍ଚତାର ଇନ୍ଦ୍ରନାଥ ମନ୍ଦିର ଗଢ଼ାଇ ଥିଲେ । ଏହାର କାରୁକାର୍ଯ୍ୟ ଅତି କମନୀୟ ଓ ସୌନ୍ଦର୍ଯ୍ୟପୂର୍ଣ୍ଣ । ଏହି ୯୦ ଫୁଟ ଉଚ୍ଚର ମନ୍ଦିରଟି ପୋଡ଼ା ଇଟାରେ ବିନା ସିମେଣ୍ଟରେ ତିଆରି କରାଯାଇଛି । ସେହି ଅଞ୍ଚଳର ବିଶିଷ୍ଟ ସଂସ୍କୃତି ବିଶେଷଜ୍ଞ ପ୍ରଫେସର ଦୋଳଗୋବିନ୍ଦ ବିଶିଙ୍କ ମତାନୁଯାୟୀ, ଧାନର କୁଣ୍ଡା ଓ ଚଷୁରେ ସେହି ଇଟା ପୋଡ଼ା ଯାଇଥିଲା ଏବଂ ସେହି ଇଟାକୁ ଏକ ସ୍ୱତନ୍ତ୍ର ଦେଶୀୟ ସଂଯୋଜକ ଅଠାଦ୍ୱାରା ଯୋଡ଼ାଯାଇ ମନ୍ଦିର ନିର୍ମାଣ କରାଯାଇଛି । ଚୁଡ଼ାମଣ୍ଡା, ଗୁଆଘିଅ, କଇଁଥ ଅଠାକୁ ଏକତ୍ର ମିଶାଇ ଏକ ସ୍ୱତଃ ସମ୍ପୂର୍ଣ୍ଣ ସଂଯୋଜକ ଅଠାଳିଆ ପଦାର୍ଥରେ ଇଟା ଯୋଡ଼ାଯାଇ ସୁନ୍ଦର କାରୁକାର୍ଯ୍ୟମୟ ଇନ୍ଦ୍ରନାଥ ଆଜି ବିଶ୍ୱ ପର୍ଯ୍ୟଟନ ଦରବାରରେ ଏକ ଅନନ୍ୟ କୃତି ରୂପେ ବିଦ୍ୟମାନ । ଗବେଷକଙ୍କ ମତାନୁଯାୟୀ ଉତ୍କଳ ପ୍ରଦେଶର ଏକ ସର୍ବପ୍ରାଚୀନ ଶିବମନ୍ଦିର ଭାବରେ ଇନ୍ଦ୍ରନାଥ ମନ୍ଦିର ନିଜର ପ୍ରତିଷ୍ଠା ଅର୍ଜନ କରିପାରିଛି । ଯେଉଁ ମନ୍ଦିରରେ ଶିବ ଓ ଶାକ୍ତ ଉପାସନାର ମିଳନସ୍ଥଳ ଓ ଉତ୍କୃଷ୍ଟ ପୀଠ ରୂପେ ସର୍ବାଦୌ ସୁପ୍ରଶଂସିତ ।

ଟିଟିଲାଗଡ଼ର ଅନତି ଦୂରରେ ଅନ୍ୟ ଏକ ରାଜବଂଶୀୟ କୀର୍ତ୍ତି ବିଦ୍ୟମାନ, ଯାହାକି ସମୀୟାବନ୍ଧ ପୁଷ୍କରିଣୀ ଭାବରେ ନାମିତ । ନିକଟବର୍ତ୍ତୀ ଜନସାଧାରଣଙ୍କ ସ୍ନାନଶୌଚ ପ୍ରଭୃତି ପ୍ରତ୍ୟେକ କାର୍ଯ୍ୟର ଲକ୍ଷ୍ୟ ପୂରଣ କରିବା ପାଇଁ ସୋମବଂଶୀ ରାଜବଂଶର ରାଜାମାନେ ଏହାକୁ ପ୍ରତିଷ୍ଠା କରାଇଥିଲେ । ସେହି ପୁଷ୍କରିଣୀର ତଟଦେଶରେ ଅନ୍ୟ ଏକ ପ୍ରାଚୀନ ଶିବମନ୍ଦିର ବିଦ୍ୟମାନ, ଯାହାକି ସୋମେଶ୍ୱର ମନ୍ଦିର ଭାବରେ ସର୍ବାଦୌ ବିଦିତ । ଏହି ମନ୍ଦିରଟି ମୟୂରନାଥ ସମ୍ପ୍ରଦାୟର ସନ୍ନ୍ୟାସୀ ଗଗନାଚାର୍ଯ୍ୟଙ୍କ ଦ୍ୱାରା ନିର୍ମାଣ କରାଯାଇଛି । ଟିଟିଲାଗଡ଼ ସନ୍ନିକଟ ଯେଉଁ ଚାରୋଟି ମନମତାଣିଆ ଦର୍ଶନୀୟ ସ୍ଥାନଗୁଡ଼ିକ ରହିଛି, ସେଗୁଡ଼ିକ ହେଲା – କୁମୁଡ଼ା ପାହାଡ଼, ଦେବନ୍ଧ, ଚଉଷଠୀ ଯୋଗିନୀ ପୀଠ, ସୋମେଶ୍ୱର ମନ୍ଦିର, ସମୀୟାବନ୍ଧ ଇତ୍ୟାଦି । ଇତ୍ୟବସରରେ ଏଠାରେ ଦୁଇଟି ମୁଖ୍ୟ ଦୃଶ୍ୟ ଆମର ଦୃଷ୍ଟିଗୋଚର ହୋଇଥାଏ । ଗୋଟିଏ ପଟରେ ଜଳାଶୟ ଓ ଅନ୍ୟପଟରେ ଚିକ୍କଣିଆ ନଣ୍ଡାପାହାଡ଼ ଓ ତନ୍ମଧ୍ୟରେ କେତୋଟି ଭଗ୍ନ ଅବସ୍ଥାରେ ଥିବା ଦରଦୀ ପାଷାଣ ହୃଦୟର ଶାକ୍ତ ଉପାସନାର ପ୍ରଶସ୍ତକ୍ଷେତ୍ର । କିଏ ବା ଜାଣିଛି, କେଉଁ ଅନାଦି କାଳରୁ ଶିବତନ୍ତ୍ର ଓ ଶାକ୍ତତନ୍ତ୍ରର ଅମ୍ଳାନ ମିଳନର ସୌନ୍ଦର୍ଯ୍ୟରାଜି ଓ ସୋମବଂଶୀ ରାଜାଙ୍କ ହୃଦୟ କନ୍ଦରର ସେହି ତନ୍ତ୍ରପୀଠ, ଯାହାକୁ ସେମାନେ ମନ ପ୍ରାଣଦେଇ ଗଢ଼ି ଯାଇଛନ୍ତି ପରବର୍ତ୍ତୀ ଦାୟାଦମାନଙ୍କ ପାଇଁ କଳା ଓ ଭାସ୍କର୍ଯ୍ୟର ଏକ ନିଦର୍ଶନସ୍ୱରୂପ । ଚିକ୍କଣ ନଣ୍ଡାପାହାଡ଼ର ଅନ୍ତରରେ ଭରିରହିଥିବା ଅନବଦ୍ୟ ଦୃଶ୍ୟରାଜିର ଏକ ଅଭିନ୍ନ ପରମ୍ପରା, ଆଧୁନିକ ଚିତ୍ରମୟ ଯୁଗରେ ନୂଆକରି ସୃଷ୍ଟି କରେ ମନ ମଧ୍ୟରେ ଏକ ଭିନ୍ନ ଅନୁଭୂତି, ଯାହାକି ପ୍ରମାଣ କରେ ପାଷାଣ ହୃଦୟର ଏକ ନିଜସ୍ୱ ଆକର୍ଷଣ ।

ମୁଁ- ବାଙ୍କିମୁଣ୍ଡାଇ (ଓରଗଳା)
ପୋ-ଚାନ୍ଦୋଳ, ଜି- କେନ୍ଦ୍ରାପଡ଼ା-୭୫୪୨୦୮

# ଓଡିଶାରେ ଖୁଦୁରୁକୁଣୀ ଓଷା

**କ୍ଷୀରୋଦ ପ୍ରସାଦ ମହାନ୍ତି**

ଓଡିଶାରେ କୁମାରୀମାନଙ୍କ ଏକ ଲୋକପ୍ରିୟ ଓଷା ହେଉଛି ଖୁଦୁରୁକୁଣୀ ଓଷା । ଏହାର ସଂପୃକ୍ତି ଉତ୍କଳର ନୌବାଣିଜ୍ୟ ସହ ଥିବାରୁ ଏହି ଓଷାକୁ ଉପକୂଳବର୍ତ୍ତୀ ଜିଲ୍ଲାଗୁଡିକ ଯଥା– କଟକ, ପୁରୀ, ବାଲେଶ୍ୱର, ଭଦ୍ରକ, କେନ୍ଦ୍ରାପଡା ଓ ଜଗତସିଂହପୁର ପ୍ରଭୃତି ଅଞ୍ଚଳରେ ବିଶେଷ ଭାବରେ ପାଳନ କରାଯାଏ ।

ଏହି ଓଷାର ଆରାଧ୍ୟ ଦେବୀ ହେଉଛନ୍ତି ମଙ୍ଗଳା । ଭାଇମାନଙ୍କର ମଙ୍ଗଳ କାମନା କରି ଭଉଣୀମାନେ ଏହି ଓଷା କରିଥାନ୍ତି । କେହି କେହି କହନ୍ତି ସେତେବେଳେ ପରିବାରରେ ମଧ୍ୟ ନାରୀ ନିର୍ଯ୍ୟାତନା ଲାଗି ରହିଥିଲା । ସେପରି ଅତ୍ୟାଚାର ବା ନିର୍ଯ୍ୟାତନାରୁ ରକ୍ଷା ପାଇବା ପାଇଁ ନଣନ୍ଦମାନେ ଏହି ଓଷା କରୁଛନ୍ତି ।

ଏହି ଓଷା କେବଳ ଭାଦ୍ରବ ମାସରେ ରବିବାରମାନଙ୍କରେ ପାଳନ କରାଯାଏ । ମଙ୍ଗଳାଙ୍କ ଓଷା ବିଶେଷତଃ ମଙ୍ଗଳବାରରେ ପାଳନ କରାଯାଉଥିଲେ ହେଁ ଏହି ଓଷା ରବିବାରରେ ଅନୁଷ୍ଠିତ ହୁଏ । ଏହାର କାରଣ ସମ୍ବନ୍ଧରେ କହିବାକୁ ଯାଇ ଗୋପିନାଥ ଦାସ ତାଙ୍କ ରଚିତ ତଅପୋଇ ବା ଖୁଦୁରୁକୁଣୀ ଓଷା ବହିରେ ଲେଖିଛନ୍ତି –

ରୁକ୍ମିଣୀ ଯୋଡି ବେନିକର, ବୋଇଲେ ଶୁଣ ଚକ୍ରଧର,
ଆଦିତ୍ୟବାର ଆଜ ହୁଏ, ହୋଇବ ମଙ୍ଗଳା ଓଷାଏ ।
ଖୁଦୁରୁକୁଣୀ ନାମ ତାର, ପୂଜିଲେ ମଙ୍ଗଳ ଅପାର ।।

ଅର୍ଥାତ୍ ରବିବାର (ଆଦିତ୍ୟବାର) ରେ ମଙ୍ଗଳା ଓଷା ହେବା ପାଇଁ ରୁକ୍ମିଣୀ ଚକ୍ରଧରଙ୍କଠାରୁ ଅନୁମତି ମାଗିଥିଲେ । ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ଜଣାଯାଏ ଯେ ଭାଦ୍ରବ ଓ ଆଶ୍ୱିନ ମାସରେ ଓଡିଶା ଓ ଆନ୍ଧ୍ର ଉପକୂଳ ଅଞ୍ଚଳ ଅଧିକ ବିପଦ ସଂକୁଳ ଅବସ୍ଥାରେ ରହୁଥିଲା । ଅନେକ ସମୟରେ ସାମୁଦ୍ରିକ ଝଡ ମଧ୍ୟ ଅନୁଭୂତ ହେଉଥିଲା । ଏହା ସାଙ୍ଗକୁ ଷୋଡଶ ଶତାବ୍ଦୀର ପ୍ରାରମ୍ଭ (୧୫୦୧–୧୫୫୦) ବେଳକୁ ବଙ୍ଗୋପସାଗରରେ ପର୍ତ୍ତୁଗୀଜ୍‌ମାନେ ଆବିର୍ଭୂତ ହୋଇ ଦେଶୀୟ ଜାହାଜଗୁଡିକୁ ଲୁଣ୍ଠନ କରୁଥିଲେ । ଏସବୁ ବିପଦ ଭିତରେ ବାଣିଜ୍ୟ ସାରି ବିଦେଶରୁ ଫେରୁଥିବା ସାଧବ ପୁଅମାନଙ୍କୁ ବହୁତ ଭୟଭୀତ ହେବାକୁ ପଡୁଥିଲା । ଏପରିକି ସେମାନଙ୍କର ଫେରିବାରେ ବିଳମ୍ବ ହେଉଥିଲେ ସେମାନଙ୍କର ପରିବାରର ଲୋକେ ଅତ୍ୟନ୍ତ ବ୍ୟସ୍ତ ହୋଇପଡୁଥିଲେ । ସେଥିପାଇଁ ସାଧବପୁଅମାନଙ୍କର ମଙ୍ଗଳ ପାଇଁ ଘରେ ଘରେ ମଙ୍ଗଳାଙ୍କ ଓଷା କରାଯାଉଥିଲା । ତଅପୋଇ ମଧ୍ୟ ସେହି ଉଦ୍ଦେଶ୍ୟରେ ଅର୍ଥାତ୍ ଭାଇମାନଙ୍କର ନିରାପଦ ବାହୁଡା କାମନା କରି ମଙ୍ଗଳାଙ୍କ ଓଷା କରିଥିଲା ଓ ଏହି ଓଷାକୁ ଭାଦ୍ରବ ମାସରେ ଅନୁଷ୍ଠିତ କରାଯାଇଥିଲା ।

ଖୁଦକଣାରେ ମଙ୍ଗଳାଙ୍କୁ ପୂଜି ସାଧବଝିଅ ତଅପୋଇ ହଜିଯାଇଥିବା ଛେଳି ଘରମଣିକୁ ଫେରି ପାଇଥିବାରୁ ଏହି ମଙ୍ଗଳାଙ୍କ ଓଷାକୁ ଖୁଦକଣା, ଖୁଦରକଣା ବା ଖୁଦୁରୁକୁଣୀ ଓଷା କୁହାଯାଏ । ଖୁଦକଣା ବା ଖୁଦ ତଣ୍ଡୁଳରେ ତିଆରି ଖାଦ୍ୟ ଶ୍ରୀକୃଷ୍ଣ ପରି ମା ମଙ୍ଗଳାଙ୍କର ପ୍ରିୟ ହୋଇଥିବାରୁ ଏବେ ମଧ୍ୟ କୁମାରୀମାନେ ଖୁଦରେ ତିଆରି ମଣ୍ଡା କିମ୍ବା ଏଣ୍ଡୁରି ମା'ଙ୍କ ପାଖରେ ଭୋଗ ଲଗାନ୍ତି ।

ମୂର୍ତ୍ତି ଗଠନ କଥା ବିଚାର କଲେ ଜଣାଯାଏ ଯେ, ମା' ମଙ୍ଗଳା ହେଉଛନ୍ତି ଚତୁର୍ଭୁଜା । ସେ ଦକ୍ଷିଣ ଭାଗର ଉପର ହସ୍ତରେ ପୂର୍ଣ୍ଣଚନ୍ଦ୍ର, ନିମ୍ନ ହସ୍ତରେ ସତେଇଶ ନକ୍ଷତ୍ର ମାଳା





ଏବଂ ବାମ ଭାଗର ଉପର ହସ୍ତରେ ପଦ୍ମକଳିକା ଧାରଣ କରିଥିବାବେଳେ ନିମ୍ନ ହସ୍ତରେ ଜପମୁଦ୍ରା ଧାରଣ କରିଥାନ୍ତି । ମଙ୍ଗଳାଙ୍କ ସ୍ତୁତି ଅନୁସାରେ ତାଙ୍କର ବାହନ ହେଉଛି ସିଂହ । ସେଥିପାଇଁ ମଙ୍ଗଳାଙ୍କୁ ସ୍ତୁତି କଲାବେଳେ ବୋଲାଯାଏ–

ସିଂହର ପୃଷ୍ଠରେ ମାଗୋ ବିଜେ କରିଥାଉ
ଯେ ମୁଖେ ପଡିଲେ ମାଗୋ ନ ବର୍ତ୍ତନ୍ତି ଆଉ ।

ଏବେ ଯେଉଁ ମୃଣ୍ମୟ ମୂର୍ତ୍ତିମାନ ଆଣି କୁମାରୀମାନେ ଖୁଦୁରୁକୁଣୀ ପୂଜା କରୁଛନ୍ତି, ସେମାନେ ମଧ ଚତୁର୍ଭୁଜା ଓ ସିଂହ ଆରୁଢା । ମୃଣ୍ମୟ ମୂର୍ତ୍ତି ବ୍ୟତୀତ କେତେକ ସ୍ଥଳରେ ଚୂଳମାଳ ପୂଜା କରାଯାଏ । ଏହି ଚୂଳମାଳଗୁଡିକ ବଡ ବଡ ସାରୁ ପତ୍ରରେ ବିଭିନ୍ନ ରଙ୍ଗର ଫୁଲ ଦିଆ ହୋଇ ସଜ୍ଜା ଯାଇଥାଏ । ସତେ ଯେପରି ମା'ସେଠାରେ ଆବିର୍ଭୂତା ହୋଇଛନ୍ତି ।

ଏହି ଲୋକପ୍ରିୟ ଓଷାର ଅନ୍ୟ ଏକ ଦିଗ ହେଉଛି ତତ୍କାଳୀନ ସମାଜର ସାମାଜିକ ଚିତ୍ର ପ୍ରଦର୍ଶନ । ସେତେବେଳେ ସାଧବଘରର ପିଲାମାନେ ସୁନାକୁଲେଇ, ରୂପାକୁଲେଇ, ସୁନାଚାନ୍ଦ ଧରି ଖେଳୁଥିଲେ । ବୋହୂମାନେ ବୋଇତ ବନ୍ଦାଇବାକୁ ଯିବା ପାଇଁ କିଛି ପ୍ରତିବନ୍ଧକ ନ ଥିଲା । ଏପରିକି ପରଦା ଦେଇ ବୋହୂମାନେ ବାହାରକୁ ଯିବା ପାଇଁ କିଛି ନିୟମ ନ ଥିଲା । ପରିବାରର ମଙ୍ଗଳ ପାଇଁ ବିଶେଷକରି ସ୍ୱାମୀମାନଙ୍କର ମଙ୍ଗଳ ପାଇଁ ନାରୀମାନେ ନାନାଦି ଓଷାବ୍ରତ ପାଳନ କରୁଥିଲେ । ନାରୀମାନଙ୍କର ଚିତ୍ରକଳାରେ ବିଶେଷ ଜ୍ଞାନ ଥିଲା । ସେଥିପାଇଁ କାନ୍ଥ ଓ କବାଟମାନଙ୍କରେ ବୋଇତ ଆଦିର ଚିତ୍ର ପରିସ୍ଫୁଟ ହେଉଥିଲା । ବିଦେଶରୁ ମୂଲ୍ୟବାନ ରତ୍ନ, କଳାମେଘୀ ପାଟ ଡମ୍ବରୁ ଶାଢୀ ଆଦି ଆଣିବା ପାଇଁ ପ୍ରିୟତମା ପତ୍ନୀମାନେ ସ୍ୱାମୀଙ୍କ ନିକଟରେ ଅଳି କରୁଥିଲେ । ସାଧବ ବୋହୂମାନେ ବହୁତ ଉଚ୍ଚ ଆକାଙ୍‌କ୍ଷୀ ଥିଲେ, ଯାହା ନିମ୍ନୋକ୍ତ ପଦମାନଙ୍କରୁ ସ୍ପଷ୍ଟ ବାରି ହୋଇପଡେ ।

ଶଶୁର ହୋଇବେ ଗାଆଁ ରାଜନ ଲୋ
ଶାଶୁ ହୋଇଥିବେ ରାଣୀ
ଛ ଦେଢଶୁର ଛ ସାଆନ୍ତେ ଲୋ
ଛ ଯାଆ ସାଆନ୍ତାଣୀ ।
ମୋ ଗିରସ୍ତ ହେବ କନକ ରାଜନ
ମୁଁ ହୋଇବି ପାଟରାଣୀ
ପୁଅ ବେଇଥିବି ରାଜକୁମାର ଲୋ
ପୋଥି ଧରି ଗୀତ ଗାଇବ
ଦ୍ୱାରେ ଲଗାଇବି ସୁନା ଟଭା ଗଛ
ନଗି ଧରି ଫୁଲ ତୋଳିବ ।

(କୁଞ୍ଜ ବିହାରୀ ଦାଶ – ଓଡିଆ ଲୋକଗୀତ ଓ କାହାଣୀ ପୃ୫୦୬–୫୦୭)

ସମୟ ବଦଳିବାରେ ଲାଗିଛି । ସମୟ ସ୍ରୋତରେ ପ୍ରାଚୀନ ଓଡିଶା ସାଧବଙ୍କ ବଂଶଧର ସାହୁ ଓ ପାଟରାମାନଙ୍କର ଆଉ ସେହି ପୂର୍ବ ସମୃଦ୍ଧି ଓ ଆଭିଜାତ୍ୟ ନାହିଁ ।

ଆଜି ସିନା ସାଧବମାନଙ୍କର ପ୍ରଭାବ ନାହିଁ କିମ୍ବା ସେମାନଙ୍କ ପାଖରେ ଧନର ପ୍ରାଚୁର୍ଯ୍ୟ ନାହିଁ, ହେଲେ ତଅପୋଇର ସେହି ଖୁଦୁରୁକୁଣୀ ଓଷା ଓଡିଶାରେ ଏବେ ମଧ ବଞ୍ଚି ରହିଛି । ଗାଁଠାରୁ ସହର ପର୍ଯ୍ୟନ୍ତ ଅନେକ ଘରୁ ଭାସି ଆସୁଛି ସେହି ମଙ୍ଗଳାଙ୍କ ସ୍ତୁତି –

ଜୟ ତୁ ଜୟ ଗୋ ମଙ୍ଗଳା, ଉଦ୍ଧାର ବୁଡିବାର ଭେଳା
ଜୟ ତୁ ମଙ୍ଗଳା ଉତ୍ତମ, ଆରତ ଭଞ୍ଜନୀ ତୋ ନାମ
ସଙ୍କଟ ତାରିଣୀ ମଙ୍ଗଳା, ହୃଦେ ମନ୍ଦାର ପୁଷ୍ପମାଳା
ପ୍ରସନ୍ନ ହୁଅ ମହାମାୟେ, ଆମ୍ଭକୁ ହୁଅ ଗୋ ସଦୟେ ।

(ଖୁଦୁରୁକୁଣୀ ଓଷା, ପୃ୩)

**ସହାୟକ ଗ୍ରନ୍ଥସୂଚୀ**

୧. ରବିନ୍ଦ୍ର କୁମାର ଦେହୁରି – କାର୍ତ୍ତିକ ପୂର୍ଣ୍ଣିମା, ବୋଇତ ବନ୍ଦାଣ ଓ ଉତ୍କଳୀୟ ନୌବାଣିଜ୍ୟ – କୋଣାର୍କ–୧୭୮ରେ ପ୍ରକାଶିତ, ପୃ୯୯ ।

୨. କୁଞ୍ଜ ବିହାରୀ ଦାଶ – ଓଡିଆ ଲୋକଗୀତ ଓ କାହାଣୀ, ପୃ୪୩୫

୩. ଲଲାଟେନ୍ଦୁ ଦାଶ ମହାପାତ୍ର – ଅତୀତ ଓଡିଶାର ନୌବାଣିଜ୍ୟ – ପୃ୪୨

୪. ସୁରେନ୍ଦ୍ର କୁମାର ମହାରଣା – ନବକଳେବର ପରମ୍ପରାରେ ମା' ମଙ୍ଗଳାଙ୍କ ଭୂମିକା – କୋଣାର୍କ, ନବକଳେବର ବିଶେଷାଙ୍କ–୨୦୧୫ରେ ପ୍ରକାଶିତ, ପୃଷ୍ଠା–୧୧୮ ।

ପ୍ରାକ୍ତନ ଗ୍ରନ୍ଥାଗାରିକ
ହରେକୃଷ୍ଣ ମହତାବ ରାଜ୍ୟ ଗ୍ରନ୍ଥାଗାର, ଭୁବନେଶ୍ୱର

# ମହାନ୍ ବିପ୍ଳବୀ ବାଘା ଯତୀନ

ଓଡ଼ିଶାରେ 'ସ୍ୱଦେଶୀ' ଆନ୍ଦୋଳନ ସହିତ ଅନ୍ୟ ଗୋଟିଏ ବିପ୍ଳବାତ୍ମକ ଆନ୍ଦୋଳନ ସୂତ୍ରପାତ ହୋଇଥିଲା । ସେହି ଆନ୍ଦୋଳନ 'ବନ୍ଦେ ମାତରମ୍' ନାମରେ ପରିଚିତ । ବଙ୍ଗ ବିଭାଗରେ ଉତ୍କ୍ଷିପ୍ତ ହୋଇ ବଙ୍ଗର ବହୁ ଯୁବକ ସଶସ୍ତ୍ର ସଂଘର୍ଷ ଦ୍ୱାରା ଇଂରେଜମାନଙ୍କୁ ଭାରତରୁ ତଡିବାର ପରିକଳ୍ପନା କଲେ । ସେହି ଉଦ୍ଦେଶ୍ୟରେ ଗୁପ୍ତ ସମିତିମାନ ସ୍ଥାପିତ ହେଲା ଓ ଅସ୍ତ୍ରଶସ୍ତ୍ର ସଂଗ୍ରହ କରାଗଲା । ବନ୍ଦେ ମାତରମ୍ ଆନ୍ଦୋଳନର ସଂଘର୍ଷବାଦୀ ଯୁବକମାନେ ମୟୂରଭଞ୍ଜର କପ୍ତିପଦାଠାରେ ଗୁପ୍ତ ଭାବରେ ରହୁଥିଲେ । ପରିଶେଷରେ ସେମାନଙ୍କର ପୋଲିସ ସହିତ ସଂଘର୍ଷ ହୋଇଥିଲା । ଏହା ହିଁ ବାଲେଶ୍ୱରରେ ସଂଘର୍ଷବାଦୀଙ୍କର କ୍ରିୟାକଳାପର ଗୋଟିଏ ଘଟଣା ।

୧୯୧୪ ମସିହାରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ସନ୍ତ୍ରାସବାଦୀମାନେ ଏହି ଯୁଦ୍ଧର ସୁଯୋଗ ନେଇ ଇଂରେଜ ବିରୁଦ୍ଧରେ ସେମାନଙ୍କର ଯୁଦ୍ଧ ଅଧିକ ସକ୍ରିୟଭାବେ ଚଳାଇବାକୁ ସ୍ଥିର କଲେ । ସେହି ଉଦ୍ଦେଶ୍ୟରେ ସେମାନେ ବିଦେଶରୁ ତଥା ଅନ୍ୟ ସ୍ଥାନମାନଙ୍କରୁ ଅସ୍ତ୍ରଶସ୍ତ୍ର ସଂଗ୍ରହ କରିବାର ବନ୍ଦୋବସ୍ତ କଲେ । ଗୋଟିଏ ଜାହାଜ ଗୁପ୍ତ ଭାବରେ ସୁନ୍ଦରବନର କୌଣସି ଏକ ସ୍ଥାନରେ ବିଦେଶରୁ ଅଣାଯାଇଥିବା ଅସ୍ତ୍ରଶସ୍ତ୍ର ଖଲାସ କରିଥିବାର ସମ୍ବାଦ ବ୍ରିଟିଶ୍ ପୋଲିସର ଗୁପ୍ତ ସଂସ୍ଥା ଜାଣି ପାରିଥିଲେ । ସେମାନେ ସନ୍ଦେହ କରିଥିଲେ ଯେ ଜର୍ମାନୀରୁ ଗୋଟିଏ ସାନ ଜାହାଜରେ ବିପ୍ଳବୀମାନଙ୍କ ପାଇଁ ଅସ୍ତ୍ରଶସ୍ତ୍ର ଆସିଥିଲା । ସେହି ସମୟରେ କଲିକତାର ଏକ ବିଶିଷ୍ଟ ଅସ୍ତ୍ରଶସ୍ତ୍ର ବିକ୍ରେତା ରଡ୍ସ କମ୍ପାନୀର ମସେର ପିସ୍ତଲ ଥିବା କେତେକ ପେଟି ହାବଡା ଷ୍ଟେସନରୁ ହରଣଚାଳ ହୋଇଗଲା । ସନ୍ତ୍ରାସବାଦୀମାନେ ସେହି ପେଟିସବୁ ଚୋରାଇ ନେଇଥିଲେ ବୋଲି ପୋଲିସ୍ ସନ୍ଦେହ କରି ଏ ସମ୍ପର୍କରେ ଚାରିଆଡେ ଅନୁସନ୍ଧାନ ଚଳାଇଲେ । ଅନୁସନ୍ଧାନରୁ ସେମାନେ ଜାଣିପାରିଲେ ଯେ ବାଲେଶ୍ୱର ସହରରେ ୧୯୧୫ ମସିହାରେ ଖୋଲାଯାଇଥିବା ଏକ ସାଇକେଲ ଦୋକାନର କଲିକତା ପିସ୍ତଲ ଚୋରି ଘଟଣା ସହିତ କିଛି ସମ୍ପର୍କ ରହିଛି । ଏହି ବିଷୟରେ ବିଶେଷ ଅନୁସନ୍ଧାନ କରିବା ପାଇଁ କଲିକତାର ପୋଲିସ କମିଶନର ଟେଗାର୍ଟ ସାହେବ ତାଙ୍କର ଦୁଇଜଣ ସହକାରୀଙ୍କ ସହିତ ସେପ୍ଟେମ୍ବର ୪ ତାରିଖ ୧୯୧୫ ସନ୍ଧ୍ୟାରେ ବାଲେଶ୍ୱରରେ ପହଞ୍ଚିଲେ । ସେମାନେ ସେସମୟର ବାଲେଶ୍ୱରର ମାଜିଷ୍ଟ୍ରେଟ କିଲ୍‌ବି ସାହେବ ସହିତ ସାକ୍ଷାତ୍ କରି ବାଲେଶ୍ୱର ଏମ୍ପୋରିୟମ ନାମକ ସାଇକଲ ଦୋକାନକୁ ଘେରାଉ କରି ଅନୁସନ୍ଧାନ କରିବାର ବନ୍ଦୋବସ୍ତ କଲେ । ପରଦିନ ଭୋର ଚାରିଟାରେ ପୋଲିସ ଦୋକାନକୁ ଘେରାଉ କରିଦେଲେ । କଲିକତାରୁ ଆସିଥିବା ପୋଲିସ୍ ଅଫିସରମାନେ ଓ କିଲ୍‌ବି ସାହେବ ପୋଲିସ୍ ସହାୟତାରେ ଦୋକାନକୁ ତନ୍ନତନ୍ନ କରି ଅନୁସନ୍ଧାନ କଲେ, କିନ୍ତୁ କିଛି ଦୋଷାବହ ଜିନିଷ ବା କାଗଜପତ୍ର ପାଇଲେ ନାହିଁ । ମେଜିଆରେ ପଡିଥିବା ଖଣ୍ଡେ ଛିଣ୍ଡା କାଗଜକୁ ଉଠାଇ ନେଇ ପୋଲିସ ଦେଖିଲେ ସେଥିରେ 'କପ୍ତିପଦା' ଲେଖା ରହିଛି । କପ୍ତିପଦା ସହିତ ସାଇକଲ ଦୋକାନୀର କୌଣସି ଯୋଗସୂତ୍ର ରହିଛି ଭାବି ପୋଲିସ ଅଫିସରମାନେ କପ୍ତିପଦାରେ ଅନୁସନ୍ଧାନ କରିବା ପାଇଁ ସ୍ଥିର କଲେ ।

ସେହି ସିଦ୍ଧାନ୍ତ ଅନୁସାରେ କଲିକତାର ପୋଲିସ ଅଫିସରମାନେ ମାଜିଷ୍ଟ୍ରେଟ୍ କିଲ୍‌ବିଙ୍କ ସହିତ କିଛି ପୋଲିସ ନେଇ କପ୍ତିପଦା ଯାତ୍ରା କଲେ ।

କପ୍ତିପଦାରେ ପୁଲିସ ଦଳ ପହଞ୍ଚିବାର ଜାଣି ସେମାନଙ୍କୁ ଦେଖିବା ପାଇଁ ଅନେକ ଲୋକ ରୁଣ୍ଡ ହେଲେ । ପୋଲିସ୍ ସେମାନଙ୍କୁ ପଚାରା ଉଚରା କରି ଜାଣି ପାରିଲେ ଯେ କପ୍ତିପଦାଠାରୁ କିଛି ଦୂରରେ ଥିବା ମହୁଲପଙ୍କ ନାମକ ଗୋଟିଏ ଗ୍ରାମରେ କେତେକ ଯୁବକ ଗୋଟିଏ ଘରଭଡା ନେଇ ରହିଛନ୍ତି ଓ ଗୋଟିଏ ଚାଉଳ–ଡାଲି ଦୋକାନ ଖୋଲିଛନ୍ତି । ସେମାନଙ୍କର ଜଣେ ଗୁରୁ ଅଛନ୍ତି । ମଝିରେ ମଝିରେ ସେମାନେ ଜଙ୍ଗଲକୁ ଶିକାର କରିବାକୁ ଯାଆନ୍ତି ଓ ସେସମୟରେ ଗ୍ରାମବାସୀମାନଙ୍କୁ ବଣକୁ ନଯିବା ପାଇଁ କହନ୍ତି ।

ଏହି ଖବର ପାଇ ପୋଲିସ ଦଳ ମହୁଲପଙ୍କ ଗ୍ରାମକୁ ଯାଇ ଯୁବକମାନେ ଯେଉଁ ଘରେ ରହୁଥିଲେ, ସେହି ଘର ଖୋଲା ପଡିଥିବାର ଦେଖିଲେ । ଯୁବକମାନେ ପୋଲିସ୍ ଆସିବାର ସମ୍ବାଦ ପାଇ ସେ ସ୍ଥାନ ଛାଡି ଚାଲିଯାଇଥିଲେ । ପୋଲିସ ଘରକୁ ତନ୍ନ ତନ୍ନ କରି ଖାନତଲାସ କରିବା ପରେ ମଧ୍ୟ କୌଣସି ମୂଲ୍ୟବାନ ତଥ୍ୟ ପାଇଲେ ନାହିଁ । ତେବେ ସେମାନେ ଜାଣି ପାରିଲେ ଯେ ସେହି ଯୁବକମାନେ ବଙ୍ଗ ବିପ୍ଳବୀ ଦଳର । ଜଙ୍ଗଲରେ ଯୁବକମାନେ ପିସ୍ତଲ ବ୍ୟବହାର କରୁଥିବାର ପୋଲିସ ପ୍ରମାଣ ପାଇଲେ । ଏହା ପରେ ଟେଗେର୍ଟ ସାହେବ ଓ ତାଙ୍କର ସହଯୋଗୀ ବାଲେଶ୍ୱରକୁ ଫେରି ଆସିଲେ । ପୋଲିସ ପଳାତକ ଯୁବକମାନଙ୍କ ବିଷୟରେ ବାଲେଶ୍ୱର ସହରରେ ପ୍ରଚାର କରିଦେଲେ ଓ କେହି ତାଙ୍କୁ ଦେଖିଲେ ପୋଲିସକୁ ଜଣାଇବା ପାଇଁ କହିଲେ । ବିପ୍ଳବୀ ଯୁବକମାନେ ମୟୂରଭଞ୍ଜ ପଳାଇ ଆସି ସେପ୍ଟେମ୍ବର ୭ ତାରିଖରେ (୧୯୧୫) ବାଲେଶ୍ୱର ସହର ନିକଟରେ ପହଞ୍ଚିଲେ । ସେଠାରେ ଲୋକେ ସେମାନଙ୍କୁ ସନ୍ଦେହ କରିବାରୁ ସେମାନେ ଅଡଇବଜାର ନିକଟସ୍ଥ ଧାନ କ୍ଷେତରେ ଲୁଚି ରହିଲେ ଓ ସୁବିଧାରେ ଖସି ପଳାଇବା ପାଇଁ ଚେଷ୍ଟା କରୁଥିଲେ । ଫୁଲାରି ଘାଟଠାରେ ଗୋଟିଏ ସରକାରୀ ଡଙ୍ଗା ଥିଲା । କିନ୍ତୁ ସରକାରୀ ଘାଟଠାରେ ବୁଢାବଳଙ୍ଗ ନଦୀ ପାର ହେବାକୁ ସେମାନେ ସାହସ କଲେ ନାହିଁ । ସେମାନେ ନଦୀରେ ଜଣେ ଜାଲିଆ ଡଙ୍ଗାରେ ଚଢି ମାଛ ଧରୁଥିବାର ଦେଖି ତାକୁ ନଦୀ ପାର କରାଇ ଦେବା ପାଇଁ ଅନୁରୋଧ କଲେ । ସେ ମନା କରିବାରୁ ତାକୁ ପିସ୍ତଲ ଦେଖାଇଲେ । ଜାଲିଆ ଭୟରେ ତା'ର ଡଙ୍ଗା ଆଣି ବିପ୍ଳବୀ ଦଳକୁ ନଇ ପାର କରାଇ ଦେଲା । ନଦୀପାର ହେବାପରେ ସେମାନେ ନଦୀ ବନ୍ଧରେ ଆଗକୁ ଅଗ୍ରସର ହେଲେ । ସେମାନଙ୍କ ହାତର ପିସ୍ତଲ ଗ୍ରାମବାସୀଙ୍କ ମନରେ କୌତୁହଳ ସୃଷ୍ଟି କଲା । ସେମାନେ ଭାବିଲେ ଯେ ସେହି ଦଳ କୌଣସି ଗୁପ୍ତଚର ଦଳ ଓ କୌଣସି ଗୁପ୍ତ ଉଦ୍ଦେଶ୍ୟରେ ଗ୍ରାମରେ ବୁଲୁଛନ୍ତି । ତେଣୁ ଗ୍ରାମବାସୀମାନେ ସେମାନଙ୍କ ପଛେ ପଛେ ଗଲେ । ବିପ୍ଳବୀମାନେ ସେମାନଙ୍କୁ ଫେରିଯିବାକୁ ଯେତେ କହିଲେ ମଧ୍ୟ ସେମାନେ ମାନିଲେ ନାହିଁ । ତେଣୁ ସେମାନଙ୍କୁ ଭୟ ଦେଖାଇବା ପାଇଁ ବିପ୍ଳବୀ ଦଳରୁ ଜଣେ ଗୋଟିଏ ପିସ୍ତଲରୁ ଥରେ ଗୁଳି ଚଳାଇଲେ । ଦୁର୍ଭାଗ୍ୟବଶତଃ ସେହି ଗୁଳି ରାଜୁ ମହାନ୍ତି ନାମକ ଜଣେ ଗ୍ରାମବାସୀଙ୍କ ଦେହରେ ବାଜିବାରୁ ସେ ସେହି ସ୍ଥାନରେ ମରିଗଲେ । ଏ ସମ୍ବାଦ ଶୀଘ୍ର ଚାରିଆଡେ ଖେଳିଗଲା । ବହୁତ ଲୋକ ଜମା ହୋଇଗଲେ । ବାଲେଶ୍ୱରରୁ ପୋଲିସ୍ ଦଳ ମଧ୍ୟ ଆସିଲେ । ଏପରି ଅବସ୍ଥାରେ ବିପ୍ଳବୀମାନେ ଖସି ପଳାଇ ଯିବାର କୌଣସି ସମ୍ଭାବନା ନଦେଖି ବିଲ ଭିତରେ ଥିବା ଗୋଟିଏ ବଡ ଉଇ ହୁଙ୍କା ପଛରେ ଲୁଚି ରହିଲେ । କିନ୍ତୁ ପୋଲିସ ଦଳ ସେମାନଙ୍କୁ ତିନିଦିଗରେ ଘେରିଗଲେ । ଜିଲ୍ଲା ମାଜିଷ୍ଟ୍ରେଟ ଓ ପୋଲିସ ସାହେବ ସେଠାରେ ପୋଲିସଙ୍କୁ ନିର୍ଦ୍ଦେଶ ଦେଉଥିଲେ । ବିପ୍ଳବୀଦଳ ଓ ପୋଲିସ ଦଳ ମଧ୍ୟରେ ଗୁଳି ବିନିମୟ ହେଲା । ପୋଲିସ ଗୁଳିରେ ବିପ୍ଳବୀ ଦଳର ନେତା ଯତୀନ ମୁଖାର୍ଜି ଭୀଷଣ ଭାବରେ ଆହତ ହେଲେ ଓ ଚିତ୍ତପ୍ରିୟ ନିହତ ହେଲେ । ଜ୍ୟୋତିଷ ଆହତ ହୋଇଥିଲେ । ଦଳର ନୀରେନ୍ ଓ ମନୋରଞ୍ଜନ ପୋଲିସ ନିକଟରେ ଆତ୍ମ ସମର୍ପଣ କଲେ । ପୋଲିସ ଆହତ ଯତୀନ ଓ ଜ୍ୟୋତିଷଙ୍କୁ ଡାକ୍ତରଖାନାକୁ ନେଇଗଲେ । ପରଦିନ ଡାକ୍ତରଖାନାରେ ଯତୀନଙ୍କର ମୃତ୍ୟୁ ହେଲା । ବାକି ତିନିଜଣ ବିପ୍ଳବୀଙ୍କ ବିଚାର ପାଇଁ ସରକାର ଜିଲ୍ଲା ଜଜ୍ ସେକ୍‌ପରସନ ସାହେବ, କଟକର ଓକିଲ ରାୟ ବାହାଦୂର ଏନ୍.ସି.ମିତ୍ର ଓ ଡେପୁଟି ରାୟ ସାହେବ ଦୟାନିଧି ଦାସଙ୍କୁ ନେଇ ଗୋଟିଏ ବିଚାରକ–ମଣ୍ଡଳୀ ଗଠନ କଲେ । ବିଚାରରେ ଜ୍ୟୋତିଷଙ୍କୁ ଯାବତଜୀବନ ଦ୍ୱୀପାନ୍ତର ଓ ମନୋରଞ୍ଜନ ଓ ନୀରେନଙ୍କୁ ଫାଶୀଦଣ୍ଡ ଦିଆଗଲା । ବାଲେଶ୍ୱରର ଓକିଲ ଉପେନ୍ଦ୍ର ନାଥ ଘୋଷ ନୀରେନ ଓ ମନୋରଞ୍ଜନ ପାଇଁ ଓ କଲିକତାର ଓକିଲ ରଜନୀକାନ୍ତ ଗାଙ୍ଗୁଲି ଜ୍ୟୋତିଷ ପାଇଁ ମକଦ୍ଦମା ଲଢିଥିଲେ । ଏହି ଘଟଣାଟି ବାଲେଶ୍ୱରର ଚଷାଖଣ୍ଡ ନାମକ ଗ୍ରାମ ନିକଟରେ ଘଟିଥିଲା । ସେଠାରେ ସ୍ୱାଧୀନତା ପରେ ଏହି ଅମର ଶହୀଦଙ୍କ ସ୍ମୃତିରେ ଗୋଟିଏ ସ୍ମୃତିଫଳକ କରାଯାଇଛି । ପ୍ରତିବର୍ଷ

ସେପ୍ଟେମ୍ବର ୯ ତାରିଖ ଦିନ ସେହି ଶହୀଦମାନଙ୍କୁ ସେଠାରେ ପୁଷ୍ପାଞ୍ଜଳି ଅର୍ପଣ କରାଯାଏ ।

୧୮୭୯ ଖ୍ରୀଷ୍ଟାବ୍ଦରେ ପୂର୍ବ ବଙ୍ଗର ଯଶୋର ଜିଲ୍ଲାର ଗୋଟିଏ ଗ୍ରାମରେ ଯତୀନ୍ଦ୍ର ନାଥ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାବା ବିଶେଷ ଅବସ୍ଥାପନ୍ନ ନଥିଲେ । ଯତୀନ ତାଙ୍କର ବାବାଙ୍କୁ ୫ ବର୍ଷ ବୟସରେ ହରାଇଥିଲେ । ସେ ସ୍କୁଲ ଶିକ୍ଷା ଶେଷ କରି ୧୮୯୫ ମସିହାରେ କଲିକତାର ସେଣ୍ଟ୍ରାଲ କଲେଜରେ ନାମ ଲେଖାଇଲେ । କଲେଜରେ ପଢିବା ସମୟରେ ସର୍ଟହେଣ୍ଡ ଓ ଟାଇପ୍ କରିବା ମଧ୍ୟ ଶିକ୍ଷା କରୁଥିଲେ । ସେ ୧୮ ବର୍ଷ ବୟସରେ କଲେଜ ପଢା ବନ୍ଦ କରି ଜଣେ ଇଂରେଜ ବାରିଷ୍ଟର ଅଧୀନରେ ଚାକିରି କଲେ । ତା'ପରେ ବଙ୍ଗ ସେକ୍ରେଟରିଏଟ୍‌ରେ ଲାଟ୍ ସାହେବଙ୍କ ଅଫିସରେ ଚାକିରି କଲେ । ସେ ଏହି ସମୟରେ ସ୍ୱାମୀ ବିବେକାନନ୍ଦ ଓ ଶ୍ରୀ ଅରବିନ୍ଦଙ୍କ ସଂସ୍ପର୍ଶରେ ଆସିଥିଲେ । ଯତୀନଙ୍କୁ ଅନେକ ବାଘା ଯତୀନ ବୋଲି ନାମ ଦେଇଥିଲେ । କାରଣ ୧୯୦୪ ମସିହାରେ ସେ ଥରେ ଜଣେ ବନ୍ଧୁଙ୍କ ସହିତ ଜଙ୍ଗଲ ମଧ୍ୟ ଦେଇ ଯାଉଥିବା ବେଳେ ହଠାତ୍ ଗୋଟିଏ ବାଘ ଯତୀନଙ୍କ ବନ୍ଧୁଙ୍କୁ ଆକ୍ରମଣ କଲା । ଏହା ଦେଖି ଯତୀନ ବନ୍ଧୁଙ୍କ ପ୍ରାଣରକ୍ଷା ପାଇଁ ବାଘକୁ ଆକ୍ରମଣ କଲେ । ତାଙ୍କ ହାତରେ ଗୋଟିଏ ଭୁଜାଲୀ ଥିଲା । ତା'ରି ସାହାଯ୍ୟରେ ବାଘ ସହିତ କିଛି କ୍ଷଣ ସଂଘର୍ଷ କରି ବାଘକୁ ମାରି ଦେଲେ ମଧ୍ୟ ନିଜେ ଗୁରୁତର ଭାବରେ ଆହତ ହେଲେ । ଏହି ଘଟଣା ପରେ ତାଙ୍କର ବନ୍ଧୁମାନେ ତାଙ୍କୁ 'ବାଘା ଯତୀନ' ବୋଲି ଡାକିଲେ । ପରେ ତାଙ୍କର ସାହସିକତା ପାଇଁ ସେହି ନାମରେ ସେ ଲୋକଙ୍କ ମଧ୍ୟରେ ପରିଚିତ ହେଲେ । ସେ ଏହି ସାହସିକ କାର୍ଯ୍ୟ ପାଇଁ ସରକାରଙ୍କ ଦ୍ୱାରା ମଧ୍ୟ ପୁରସ୍କୃତ ହୋଇଥିଲେ ।

ଏହି ସମୟରେ ତାଙ୍କର ବଡପୁଅର ମୃତ୍ୟୁ ହେବାରୁ ତାଙ୍କ ମନରେ ଗଭୀର ଦୁଃଖ ଜାତ ହୋଇଥିଲା । ମନର ଶାନ୍ତି ପାଇଁ ସେ ତୀର୍ଥ ଭ୍ରମଣରେ ଗଲେ ଓ ବାରାଣସୀରେ ଶ୍ରୀ ଭୋଳାନନ୍ଦ ଗୁରୁ ମହାରାଜଙ୍କ ନିକଟରୁ ଦୀକ୍ଷା ନେଲେ ।

ସେ ଲାଟ୍ ସାହେବଙ୍କ ଅଫିସରରେ ହୁଇଲେର ସାହେବଙ୍କର ଷ୍ଟେନୋ ଥିଲେ । ଲାଟ୍ ସାହେବଙ୍କ ଅଫିସ ଖରାଦିନେ ସିଲିଗୁଡିରେ ହେଉଥିଲା । ଥରେ ସେ ରେଳଗାଡିରେ ସିଲିଗୁଡି ଯିବା ବେଳେ ଦେଖିଲେ ଯେ କେତେକ ଗୋରା ସାହେବ ପ୍ରଥମ ଶ୍ରେଣୀ ଡବାରେ ବସିଥିବା ଭାରତୀୟମାନଙ୍କୁ ସେହି ଡବାରୁ ଜବରଦସ୍ତ ବାହାର କରି ଦେଇ ସେମାନଙ୍କର ବିଛଣାପତ୍ର ବାହାରକୁ ପକାଇ ଦେଲେ । ଏହି ଘଟଣା ନେଇ ଯତୀନଙ୍କର ସାହେବମାନଙ୍କ ସଙ୍ଗରେ ତୀବ୍ର ବାକ୍ୟ ବିନିମୟ ହୋଇଥିଲା । ସାହେବମାନେ ଜଣେ ଭାରତୀୟ ଦ୍ୱାରା ଅପମାନିତ ହୋଇଛନ୍ତି ବୋଲି ମନେକରି ଏ ସମ୍ବନ୍ଧରେ ଯତୀନଙ୍କ ଉପରିସ୍ଥ କର୍ମଚାରୀଙ୍କ ନିକଟରେ ଆପତ୍ତି କଲେ । ଏହି ଘଟଣା ପରେ ପୋଲିସ୍ ତାଙ୍କୁ ବଙ୍ଗ ସନ୍ତ୍ରାସବାଦୀ ଦଳର ଲୋକ ମନେକରି ସବୁବେଳେ ତାଙ୍କ ପିଛା କଲେ । ପୋଲିସର ଏହି ବ୍ୟବହାରରେ ଉତ୍ୟକ୍ତ ହୋଇ ସେ ଚାକିରି ଛାଡିଦେଲେ ଏବଂ ସନ୍ତ୍ରାସବାଦୀ ଦଳରେ ଯୋଗ ଦେଲେ ।

୧୯୧୦ ମସିହାରେ ଗୋଟିଏ ବୋମାଫୁଟା ଘଟଣାରେ ପୋଲିସ ତାଙ୍କୁ ଗିରଫ କରି ତାଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରିଥିଲେ । କିନ୍ତୁ ତାଙ୍କ ବିରୁଦ୍ଧରେ କୌଣସି ପ୍ରମାଣ ନପାଇ ଛାଡିଦେଲେ ।

୧୯୧୪ ମସିହାରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ବିପ୍ଳବୀମାନେ ଜର୍ମାନୀରୁ ଅସ୍ତ୍ରଶସ୍ତ୍ର ସାହାଯ୍ୟ ପାଇବେ ବୋଲି ଆଶା କରି ସେ ଦିଗରେ ଚେଷ୍ଟାକଲେ । ଜର୍ମାନୀରୁ ଗୋଟିଏ ଜାହାଜରେ କିଛି ଅସ୍ତ୍ରଶସ୍ତ୍ର ବିପ୍ଳବୀମାନେ ପାଇଛନ୍ତି ବୋଲି ସନ୍ଦେହ କଲେ । ଯତୀନଙ୍କ ସହଯୋଗୀ ମନୋରଞ୍ଜନ ଓ ନରେନ୍‌କୁ ମଦାରିପୁର ଷଡଯନ୍ତ୍ର ମାମଲାରେ ଲିପ୍ତ ଥିବାର ସନ୍ଦେହ କରି ଗିରଫ କରିଥିଲେ, କିନ୍ତୁ ପରେ ପ୍ରମାଣ ଅଭାବରୁ ସେମାନଙ୍କୁ ଖଲାସ କରିଦେଲେ । ଜଣେ ପୋଲିସ୍ ଇନ୍‌ସପେକ୍ଟରକୁ ଗୁଳିକରି ମାରି ଦେଇଥିବା ଘଟଣାରେ ଚିତ୍ତପ୍ରିୟଙ୍କୁ ସନ୍ଦେହ କରି ପୋଲିସ ତାଙ୍କ ଗତିବିଧି ଉପରେ ସବୁବେଳେ ଲକ୍ଷ୍ୟ ରଖିଥିଲେ । ଏହିସବୁ କାରଣରୁ ସେମାନେ ଉତ୍ୟକ୍ତ ହୋଇ ଯତୀନଙ୍କ ଆଶ୍ରୟରେ ରହିଲେ ଓ ତାଙ୍କ ସହିତ କପ୍ତିପଦାକୁ ଆସିଥିଲେ । ବାଲେଶ୍ୱରର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଏହି ସନ୍ତ୍ରାସବାଦୀ କାର୍ଯ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ।






# ଭାଗବତରେ ମୌଳିକତା ଓ ଧର୍ମତତ୍ତ୍ୱ

**ସୁଚିତ୍ରା ବେହେରା**

ବହୁ ପ୍ରାଚୀନ କାଳରୁ ପୁରାଣ ଶାସ୍ତ୍ର ମଣିଷକୁ ପ୍ରଭାବିତ କରି ଆସିଛି । ଧର୍ମ, ଇତିହାସ ଓ ସାହିତ୍ୟ ଦୃଷ୍ଟିରୁ ପୁରାଣର ଯଥେଷ୍ଟ ଗୁରୁତ୍ୱ ଅନୁଭୂତ ହୋଇଥାଏ । ପୁରାଣକୁ ଭାରତୀୟମାନେ 'ବେଦ' ପରି ପବିତ୍ର ଗ୍ରନ୍ଥ ରୂପେ ମାନିଥାନ୍ତି । କେତେକଙ୍କ ମତରେ ପୁରାଣ ହେଉଛି ପଞ୍ଚମ ବେଦ । ଏଥିରେ ଜ୍ଞାନର ଆଲୋକବର୍ତ୍ତିକା ସତତ ପ୍ରଜ୍ୱଳିତ । ତେଣୁ ଏହାକୁ ଭାରତୀୟ ଜ୍ଞାନକୋଷ କହିବା ସମୀଚୀନ । ଭାରତୀୟ ସଂସ୍କୃତିକୁ ଉଜ୍ଜୀବିତ କରି ରଖିବାରେ ପୁରାଣ ସାହିତ୍ୟ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ ।

ମାନବ କଲ୍ୟାଣ ପାଇଁ କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ ଅଷ୍ଟାଦଶ ପୁରାଣ ଗ୍ରନ୍ଥ ରଚନା କରିବା ପରେ ବିଚାର କଲେ ଯେ ସ୍ୱଳ୍ପ ଆୟୁଷ କାଳ ମଧ୍ୟରେ ଅନନ୍ତ ଶାସ୍ତ୍ରକୁ ଅଧ୍ୟୟନ କରି ସାରତତ୍ତ୍ୱକୁ ପରିଜ୍ଞାତ ହେବା ସମ୍ଭବପର ନୁହେଁ । ତେଣୁ ସକଳ ଶାସ୍ତ୍ରର ସାରତତ୍ତ୍ୱକୁ ସନ୍ନିବିଷ୍ଟ କରି ବ୍ୟାସଦେବ ରଚନା କରିଥିଲେ ସଂସ୍କୃତ ଶ୍ରୀମଦ୍ ଭାଗବତ ମହାପୁରାଣ । ବେଦ ଚତୁଷ୍ଟୟକୁ କଳ୍ପବୃକ୍ଷ ରୂପେ ଋଷିଗଣ କଳ୍ପନା କରିଥିବାବେଳେ ଶ୍ରୀମଦ୍ ଭାଗବତ ହେଉଛି ସେହି ବେଦ କଳ୍ପତରୁର ସୁମଧୁର ପକ୍ୱଫଳ । ଏହି ମହାନ୍ ଗ୍ରନ୍ଥ ହେଉଛି ବିଦ୍ୟାର ଭଣ୍ଡାର । ବ୍ୟାସଦେବଙ୍କ ରଚିତ ଏହି ସଂସ୍କୃତ ଭାଗବତର ପ୍ରଥମ ଟୀକାକାର ହେଉଛନ୍ତି ଶ୍ରୀଧର ସ୍ୱାମୀ । ଏହି ଟୀକା ମାଧ୍ୟମରେ ଭକ୍ତଗଣ ଭାଗବତର ମର୍ମ ବୁଝିବାକୁ ସକ୍ଷମ ହୋଇଥିଲେ ।

ପଞ୍ଚସଖା ଯୁଗରେ ଅତିବଡୀ ଜଗନ୍ନାଥ ଦାସ ରଚନା କରିଥିଲେ ଓଡ଼ିଆ ଭାଗବତ । ପୁରୀ ନିକଟସ୍ଥ କପିଳେଶ୍ୱରପୁର ବ୍ରାହ୍ମଣ ଶାସନରେ ରାଧାଷ୍ଟମୀ ତିଥିରେ ତାଙ୍କର ଜନ୍ମ । ପିତା ଥିଲେ ପୁରାଣ ପଣ୍ଡା ଭଗବାନ ଦାସ ଓ ମାତା ଥିଲେ ପଦ୍ମାବତୀ ଦେବୀ । ମାତା ଅପାଠୋଇ ହୋଇଥିବାରୁ ସଂସ୍କୃତର ଅର୍ଥ ବୁଝିପାରୁ ନଥିଲେ । ତେଣୁ ନିଜ ମା'ଙ୍କର ଇଚ୍ଛା ପୂରଣ ପାଇଁ ନବାକ୍ଷରୀ ବୃତ୍ତରେ ସଂସ୍କୃତ ଭାଗବତର ସେ ଓଡ଼ିଆ ଅନୁବାଦ ଲେଖିଥିଲେ । ନିଜେ ଲେଖିଥିବା ପଂକ୍ତିଗୁଡ଼ିକୁ ପ୍ରଥମେ ଶ୍ରୀଜଗନ୍ନାଥଙ୍କୁ ଶୁଣାଇ ସେ ବଟଗଣେଶ ମୂଳରେ ପୁରାଣ ପାଠ କରୁଥିଲେ । ଏହି ପୁରାଣ ପାଠରେ ଅଗାଧ ପାଣ୍ଡିତ୍ୟ ଦେଖି ଶ୍ରୀଚୈତନ୍ୟ ଦେବ ତାଙ୍କୁ 'ଅତିବଡୀ' ଉପାଧିରେ ଭୂଷିତ କରିଥିଲେ । ସଂସ୍କୃତ ଭାଷାର ପ୍ରବଳ ପ୍ରଭାବ ଥିଲାବେଳେ ଜଗନ୍ନାଥ ଦାସ ଏହି ଓଡ଼ିଆ ଭାଗବତ ରଚନା କରିଥିବାରୁ ତାଙ୍କ ଭାବଗତକୁ ସଂସ୍କୃତ ପଣ୍ଡିତମାନେ 'ତେଲି ଭାଗବତ' ନାମ ଦେଇଥିଲେ । ମାତ୍ର ସମୟକ୍ରମେ ଏହା ଓଡ଼ିଶାର ପୁରପଲ୍ଲୀରେ ଆଦରଣୀୟ ଗ୍ରନ୍ଥ ରୂପେ ପରିଚିତ ହେଲା । ଏହି ଗ୍ରନ୍ଥ ହେଲା ପିଲାମାନଙ୍କ ପାଇଁ ଉଚ୍ଚକୋଟୀର ପାଠ୍ୟ ପୁସ୍ତକ, ଧର୍ମପ୍ରାଣ ବ୍ୟକ୍ତି ପାଇଁ ଆଧାତ୍ମିକ ଗ୍ରନ୍ଥ ଓ ରସିକ ପାଠକ ପାଇଁ ଭାବଗର୍ଭକ ରସସିକ୍ତ ସୃଷ୍ଟି ।

ଅନେକ କଠିନ ପରୀକ୍ଷାର ସମ୍ମୁଖୀନ ହୋଇ ନିଜର ସାଧନା ପାଇଁ ନିର୍ଜନ ବେଳାଭୂମିରେ ସେ ସ୍ଥାପନ କରିଥିଲେ ସାତଲହଡ଼ି ମଠ । ମୂଳ ଭାଗବତ ଆଧାରରେ ଓଡ଼ିଆ ଭାଗବତ ରଚନା ହୋଇଥିଲେ ହେଁ ଏହା ଆକ୍ଷରିକ ଅନୁବାଦ ନୁହେଁ । ମୋଟ ଏକାଦଶ ସ୍କନ୍ଦ ପର୍ଯ୍ୟନ୍ତ ରଚନା ଜଗନ୍ନାଥ ଦାସ କରିଥିବାବେଳେ ଦ୍ୱାଦଶ ଓ ତ୍ରୟୋଦଶ ସ୍କନ୍ଦକୁ ମହାଦେବ ଦାସ ରଚନା କରିଥିଲେ । ମଧ୍ୟଯୁଗୀୟ ଓଡ଼ିଶାରେ ଭାଗବତ ହିଁ ଧର୍ମ ଆନ୍ଦୋଳନରେ ମୁଖ୍ୟ ପୁରୋଧା ଥିବାର ଗବେଷକମାନେ

ମତ ଦିଅନ୍ତି । ଭାଗବତରେ ଜଗନ୍ନାଥ ଦାସଙ୍କର ପ୍ରତିଭା, ସ୍ୱଦେଶ ପ୍ରୀତି ଓ ଭାଷା ପ୍ରୟୋଗ ଦକ୍ଷତାର ପରିଚୟ ସୁସ୍ପଷ୍ଟ । ଭାଗବତରେ ଯେଉଁ ନୈତିକ ମୂଲ୍ୟବୋଧ ଉପରେ ଗୁରୁତ୍ୱାରୋପ ହୋଇଛି, ତାହା ସମଗ୍ର ଓଡିଆ ସାହିତ୍ୟରେ ବିରଳ । ଏହାର ଅନୁକରଣରେ ଓଡିଶାର ପୁରପଲ୍ଲୀରେ ଗଢି ଉଠିଥିଲା 'ଭାଗବତ ଘର' ।

ପରମ ଶାସ୍ତ୍ର ଅଟେ ଭାଗବତ । ଭାବ, ଜ୍ଞାନ, ବୈରାଗ୍ୟ, ତତ୍ତ୍ୱ ମାର୍ଗର ପ୍ରଦର୍ଶକ । ଅନ୍ୟ ଅର୍ଥରେ ଭଗବାନଙ୍କର ସାକ୍ଷାତ ସ୍ୱରୂପ ଏହା ଭାଗବତ ଶାସ୍ତ୍ରରେ ଷଡସମ୍ବାଦ ମାଧ୍ୟମରେ ସକାମ ଓ ନିଷ୍କାମ କର୍ମ, ସକାମ ଓ ନିଷ୍କାମ ଭକ୍ତର ବିବିଧ ସ୍ୱରୂପ, ସାଧନ ଜ୍ଞାନ, ସାଧ୍ୟ ଜ୍ଞାନ, ମର୍ଯ୍ୟାଦା ମାର୍ଗ, ବର୍ଣ୍ଣାଶ୍ରମ ଧର୍ମ, ପୌରୁଷର ସାଧନ, ଅବତାର ରହସ୍ୟ ଧର୍ମର ଆଶ୍ରୟ, ହରିଭକ୍ତ ରସାମୃତ, ସୃଷ୍ଟି ସ୍ଥିତି ପ୍ରଳୟାଦି ବିବରଣୀ ଓ ଦ୍ୱୈତ–ଅଦ୍ୱୈତ ଦର୍ଶନ ଅବତାରଣା କରାଯାଇଛି । ଏହି ଶାସ୍ତ୍ର ପରମାର୍ଥ ସହିତ ସାଂସାରିକ ଜୀବନକୁ ସୁଖମୟ ଓ ଉନ୍ନତି କରିବା ପାଇଁ ମାର୍ଗଦର୍ଶକ ଅଟେ । ସକଳ ବିଘ୍ନ ନାଶ ପାଇଁ ନାରାୟଣ କବଚ, କାମନା ପୂର୍ତ୍ତି ପାଇଁ ପୁଂସବନ ବ୍ରତ, ମନୋବାଞ୍ଛିତ ସନ୍ତାନ ସନ୍ତତି ପାଇଁ ପୟୋବ୍ରତ, ଋଣମୁକ୍ତି ପାଇଁ ଗଜେନ୍ଦ୍ର ସ୍ତୁତି ଆଦି ଅବ୍ୟର୍ଥ ଉପାୟ ସବୁ ଏହି ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି । ଇହଲୋକ ଓ ପରଲୋକରେ କଲ୍ୟାଣକାରୀ ଏହି ଶାସ୍ତ୍ରକୁ ପରମହଂସ ସଂହିତା ବୋଲି ମଧ୍ୟ କୁହାଯାଏ । କବିଙ୍କ ଭାଷାରେ–

'ସକଳ ଶାସ୍ତ୍ର ଭାଗବତ, ଅଭ୍ୟାସ କରୁଥିବ ନିତ୍ୟ' ।

ଷୋଡଶ ଶତାବ୍ଦୀଠାରୁ ଏହି ପରମ ଶାସ୍ତ୍ର ଭାଗବତ ଉତ୍କଳୀୟ ଧର୍ମଧାରାକୁ ପ୍ରଭାବିତ କରିଆସିଛି । ଜଗନ୍ନାଥ ଦାସ ମୁଖ୍ୟତଃ ଭକ୍ତ କବି ହୋଇଥିବାରୁ ଧର୍ମକୁ ମାନବର ଏକ ସହଜାତ ଶୁଦ୍ଧ ନୈତିକ ଭାବନା ରୂପେ ଗ୍ରହଣ କରିଛନ୍ତି । ଜୀବନକୁ ନୈତିକ ମାର୍ଗ ପ୍ରଦର୍ଶନ କରାଇ ଊର୍ଦ୍ଧ୍ୱକୁ ନେଇଯିବା ତାଙ୍କର ବହୁ ଆଦୃତ ଗ୍ରନ୍ଥ ଭାଗବତର ମହାନ ଉଦ୍ଦେଶ୍ୟ । ଏଥିରେ ମଣିଷ ପାଇଁ ସାମ୍ୟ ଭାବନା, ମୈତ୍ରୀବୋଧ ଓ ଆଧ୍ୟାତ୍ମିକ ଚିନ୍ତାର ସମନ୍ୱୟ ହୋଇଛି । ସେଥିପାଇଁ କବିଙ୍କ ଭାଷାରେ ବର୍ଣ୍ଣନା ହୋଇଛି –

'ସତ୍ୟ ଉପରେ ଧର୍ମ ନାହିଁ, ଏ କଥା ଶାସ୍ତ୍ରେ ଅଛି କହି' ।

ଭାଗବତର ଧର୍ମତତ୍ତ୍ୱ ବିଶେଷତ୍ୱରେ କର୍ମଯୋଗ, ଜ୍ଞାନଯୋଗ, ଭକ୍ତି, ଶ୍ରୀରାଧା ତତ୍ତ୍ୱ, ନାମ କୀର୍ତ୍ତନ ମୁଖ୍ୟ । ବିଶେଷ କରି ଭାଗବତର ଏକାଦଶ ସ୍କନ୍ଦରେ ଧର୍ମତତ୍ତ୍ୱର ଉଜ୍ଜ୍ୱଳ ମହିମାକୁ ପ୍ରକାଶ କରାଯାଇଛି । ଯଥା–

'କୃଷ୍ଣର ଶ୍ରବଣ କୀର୍ତ୍ତନ, ଅଶେଷ ଦୂରିତ ବହନ' ।

ଭାଗବତର ମୌଳିକତା ଏହାକୁ ଏକ ଅନନ୍ୟ ସାଧାରଣ ସ୍ୱକୀୟତା ପ୍ରଦାନ କରିଛି । ଜଗନ୍ନାଥ ଦାସ କୌଣସି ସଂପ୍ରଦାୟର ଅର୍ଗଳି ଭିତରେ ନିଜକୁ ଆବଦ୍ଧ ନ କରି ସେବା, ତ୍ୟାଗ ଓ ପରୋପକାରର ବାର୍ତ୍ତା ପ୍ରଚାର କରି ସର୍ବଜନ ମନ–ହୃଦୟରେ ପାଇଛନ୍ତି ଆସନ । ନିତ୍ୟନିରନ୍ତର ସେବା ମନୋବୃତ୍ତି, ଈଶ୍ୱରଙ୍କ ଚରଣରେ ସମର୍ପିତ ଭକ୍ତି ଭାବ ହିଁ କବିଙ୍କର ଭାଗବତ ରଚନାର ମୂଳ ଲକ୍ଷ୍ୟ । ଯଥା–

'ସେବା କରିବ ଦୃଢ ଚିତ୍ତ, ଶିକ୍ଷା ଯେ ଧର୍ମ ଭାଗବତ' ।

ଯୁଗ ଯୁଗ ଧରି ପରମ ଶାସ୍ତ୍ର ଭାଗବତ ଉତ୍କଳୀୟ ଜନଜୀବନକୁ ପ୍ରଭାବିତ କରିଥିବାରୁ କଥା କଥାରେ ଏହାର ପଂକ୍ତି ବ୍ୟବହୃତ ହୋଇଆସିଅଛି । ଜନଶ୍ରୁତି ଆଧାରରେ ଜଗନ୍ନାଥ ଦାସ ଭାଦ୍ରବ ପୂର୍ଣ୍ଣିମାରେ ଭାଗବତ ଲେଖା ଆରମ୍ଭ କରିଥିବା ଏହି ଦିନ ଭାଗବତ ଜନ୍ମ ଓ ଆଷାଢ ଗୁରୁ ପୂର୍ଣ୍ଣିମାରେ ବଡା ଉତ୍ସବ ପାଳିତ ହୁଏ । ଓଡିଶାର ସାଂସ୍କୃତିକ, ସାମାଜିକ ଓ ଆଧ୍ୟାତ୍ମିକ ଜୀବନରେ ଏ ଗ୍ରନ୍ଥର ଉପାଦେୟତା ଅନସ୍ୱୀକାର୍ଯ୍ୟ । ନିରବଧି କାଳର ପ୍ରଚଣ୍ଡ ଗତିସ୍ରୋତରେ ବହୁବିଧ ପରିବର୍ତ୍ତନ ଘଟୁଥିଲେ ସୁଦ୍ଧା ଅଦ୍ୟାବଧି ଓଡିଆ ପାଠକଙ୍କ ନିକଟରେ ଅମୂଲ୍ୟ ଗ୍ରନ୍ଥ ରୂପରେ ଭାଗବତ ବଞ୍ଚିରହିଛି । ତେବେ ପରମଶାସ୍ତ୍ର ଭାଗବତ ଅଭ୍ୟାସ କରୁଥିବା ପ୍ରତ୍ୟେକ ବ୍ୟକ୍ତି ନିଜର କଲ୍ୟାଣ ତଥା ଆତ୍ମୋଦ୍ଧାର ପାଇଁ ନିରନ୍ତର ଭାଗବତ ରସ ଆସ୍ୱାଦନ କରିବା ଆବଶ୍ୟକ । ଏହାଦ୍ୱାରା ମାନବ ଜୀବନ ଚରିତାର୍ଥ ହୋଇଥାଏ ।

---

ପ୍ଲଟ୍ ନଂ–୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱର–୧୮



# ଓଡିଶାରେ ଶାକ୍ତ ଧର୍ମର ପରମ୍ପରା ଓ ଶକ୍ତି ଉପାସନା

ଡକ୍ଟର ରଶ୍ମିତା ତ୍ରିପାଠୀ

ବହୁ ପ୍ରାଚୀନ କାଳରୁ ଶାକ୍ତଧର୍ମର ଉତ୍ପତ୍ତି । ଓଡିଶାରେ ବହୁ ପୂର୍ବରୁ ଶକ୍ତି ଉପାସନା ଓ ଦେବୀପୂଜାର ପ୍ରଚଳନ ହୋଇଆସୁଛି । ପ୍ରକୃତିର ବିଚିତ୍ର ଲୀଳା ଦର୍ଶନ କରି ପ୍ରାଚୀନ କାଳର ସରଳ ମାନବ ଏକ ମହାଶକ୍ତିର ସନ୍ଧାନ କରିଥିଲେ । ଅତୀତରେ ତନ୍ତ୍ରର ପ୍ରଭାବ ଥିଲା ସର୍ବାଧିକ । ତାନ୍ତ୍ରିକ ସାଧକମାନେ ଦେବୀ କୃପାରୁ ଅନେକ ପ୍ରକାର ଅଲୌକିକ କାର୍ଯ୍ୟ କରି ସାଧାରଣ ଲୋକଙ୍କ ମନରେ ଭୟ ଓ ଭକ୍ତି ସଞ୍ଚାର କରୁଥିଲେ । ଏସବୁକୁ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଓଡିଆ ସାହିତ୍ୟରେ ଶାକ୍ତ ଧର୍ମର ଅପ୍ରତିହତ ପ୍ରଭାବ ସାହିତ୍ୟ ଉପରେ ପଡିଥିଲା । ତେଣୁ ଏହି ଶାକ୍ତ ସାହିତ୍ୟର ବିଭାଗୀକରଣ କଲେ ଲକ୍ଷ୍ୟ କରାଯାଏ ଯେ – ବାସ୍ତବରେ ଏହି ପ୍ରକାର ଧାରାକୁ ଲକ୍ଷ୍ୟ କଲେ ଜଣାଯାଏ ସାହିତ୍ୟ ସୃଷ୍ଟିର ଆଦି ପର୍ଯ୍ୟାୟରେ ଧର୍ମର ସୂକ୍ଷ୍ମ ଧାରାହିଁ ମାଡି ଚାଲିଥିଲା । ଏହା ଏତେ ପ୍ରାଚୀନ ହେଲେବି ଏହାର ପ୍ରାଚୀନତାକୁ ସହଜରେ ଲକ୍ଷ୍ୟ କରିହୁଏ ନାହିଁ । ଶକ୍ତି ଉପାସନା ପ୍ରଥମେ ଆଦିମ ଅଧିବାସୀମାନଙ୍କ ମଧ୍ୟରେ ବିକଶିତ ହୋଇଥିଲା । ବାତ୍ୟା, ବନ୍ୟା, ବଜ୍ରପାତ ଓ ମହାମାରୀ ପ୍ରଭୃତି ତାର ଶକ୍ତି ପ୍ରବଣତାକୁ ଦୃଢୀଭୂତ କଲା । କୃଷିଭିତ୍ତିକ ସଭ୍ୟତା ଗଢି ଉଠିଥିବା ସ୍ଥାନରେ ମାତୃକା ପୂଜା ଓ ଭୂମିଦେବୀଙ୍କର ଉପାସନା ଦେଖାଦେଲା । ସେହି ସମୟରୁହିଁ ଆଧୁନିକ ଓଡିଶାରେ ଶକ୍ତି ଉପାସନାର ଧାରା ଦେଖିବାର ଲକ୍ଷ୍ୟ କରାଗଲା ।




ଆଦି ସଂହିତାକାର ମନୁଙ୍କ ମତରେ ସୃଷ୍ଟିର ଆଦିମ ଅବସ୍ଥାରେ କେବଳ ଅନ୍ଧକାରଦ୍ୱାରା ଚତୁର୍ଦ୍ଦିଗ ପରିବ୍ୟାପ୍ତ ଥିଲା । ସେତେବେଳେ ରାତ୍ରି ନ ଥିଲା କି ଦିବସ ନ ଥିଲା । କିନ୍ତୁ ଭାରତୀୟ ଶାକ୍ତ ସାହିତ୍ୟରେ ଯେତେବେଳେ ପରମ ପୁରୁଷ ନ ଥିଲେ ସେତେବେଳେ କେବଳ ଆଦ୍ୟାଶକ୍ତି ମହାମାୟୀ ଥିଲେ ବୋଲି କୁହାଯାଇଛି । ଏହାକୁ ଶ୍ରୀ ଚଣ୍ଡୀରେ ସମସ୍ତ ଜଗତ ସୁପ୍ତ ଥିଲା ବେଳେ ମହାବିଷ୍ଣୁ ନେତ୍ରରେ ଅଧିଷ୍ଠିତା ଯୋଗ ନିଦ୍ରା, ମହାରାତ୍ରି, ମହାମାୟା, ମହାକାଳୀରୂପେ ବର୍ଣ୍ଣନା କରାଯାଇଛି । ତେଣୁ ଅଧିକାଂଶ ଗବେଷକ ଓ ଐତିହାସିକମାନେ ଶାକ୍ତ ଧର୍ମକୁ ପ୍ରାଗ୍ ବୈଦିକ ଯୁଗର ବୋଲି କହିଥାନ୍ତି । ସମାଜର ସମସ୍ତ ଚଳଣି ଆଚାରବିଚାର ଓ ସାଂସ୍କୃତିକ ବିଧିବ୍ୟବସ୍ଥା ସେହି ସମୟରେ ନାରୀମାନଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ ବୋଲି

ମଧ୍ୟ କେତେଜଣ ଐତିହାସିକ ମତବ୍ୟକ୍ତ କରିଛନ୍ତି । ଏହା ବ୍ୟତୀତ ସମସ୍ତ ଜୀବଜଗତର ସୃଷ୍ଟିକାରିଣୀ ହିସାବରେ ନାରୀଶକ୍ତିର ଯେ ଅନବଦ୍ୟ ଭୂମିକା ଥିଲା, ତାହା ମଧ୍ୟ କିଛି କିଛି ଜଣାପଡେ ।

'ଶାକ୍ତଧର୍ମ ଓ ଶକ୍ତି ଉପାସନା' ବିଧିବଦ୍ଧ ଭାବରେ ଭାରତୀୟ ଧର୍ମଧାରା ମଧ୍ୟରେ ପ୍ରତିଷ୍ଠା ଲାଭ କରିସାରିଲା ବେଳକୁ ଦେବୀମାନଙ୍କର ବିଭିନ୍ନ ବିଭାଗ ସୃଷ୍ଟି ହୋଇ ସାରିଥିଲା, ଯଥା– ତ୍ରିଶକ୍ତି, ଷଣ୍ମାତୃକା, ସପ୍ତମାତୃକା, ଅଷ୍ଟମାତୃକା, ଅଷ୍ଟଚଣ୍ଡି, ନବକନ୍ୟା, ନବଶକ୍ତି, ଦଶମହାବିଦ୍ୟା, ଷୋଡଶ ବିଦ୍ୟା, ଷୋଡଶ ମାତୃକା, ଅଷ୍ଟାଦଶ ମାତୃକା, ସପ୍ତବଂଶ ବିଦ୍ୟା, ବିଷ୍ଣୁଶକ୍ତି । ପଞ୍ଚଶତ ରୁଦ୍ରଶକ୍ତି ଓ ଚତୁଷଷ୍ଠୀ ଯୋଗିନୀ ପ୍ରଭୃତି ଅନ୍ୟତମ । ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ନଜରକୁ ଆସେ ଯେ 'ତନ୍ତ୍ର' ଶାକ୍ତ ଧର୍ମ ସହ ଅଙ୍ଗାଙ୍ଗୀଭାବେ ଜଡିତ ହୋଇଥିଲା । ତେଣୁ ତନ୍ତ୍ର ସାଧନ ନିମନ୍ତେ ତନ୍ତ୍ରପୀଠ ଜଳନ୍ଧର, ଓଡ଼ଡୀୟାନ, ପୂର୍ଣ୍ଣଗିରି ଓ କାମରୂପରେ ବିଦ୍ୟାଳୟମାନ ଗଢି ଉଠିଥିଲା । ଆସାମ, ବଙ୍ଗପ୍ରଦେଶ, ବିହାର ଓ ଓଡିଶାରେ ଏହାର ପ୍ରଭାବ ଥିବାର ଲକ୍ଷ୍ୟ କରାଯାଏ । ଏହିଭଳି ଭାବେ ବିଭିନ୍ନ କ୍ଷେତ୍ରରୁ ଲକ୍ଷ୍ୟ କଲେ ଆଧୁନିକ ଓଡିଶାରେ ଶକ୍ତି ଉପାସନାର ଧାରା ବହୁ ପ୍ରାଚୀନ ବୋଲି ଅନୁମାନ କରାଯାଏ । ସର୍ବ ଭାରତୀୟ କ୍ଷେତ୍ରରେ ମଧ୍ୟ ଶାକ୍ତଧର୍ମ ବହୁଳଭାବେ ପ୍ରଚାର ହୋଇ ଉପାସନା କେନ୍ଦ୍ରମାନଙ୍କରେ ଶକ୍ତିପୀଠମାନ ଗଢି ଉଠିଥିଲା । ପରବର୍ତ୍ତୀ କାଳରେ ପୁରାଣ ରଚନା ଯୁଗକୁ ଶକ୍ତିପୀଠର ବ୍ୟାପକତାକୁ ନେଇ ସେଗୁଡିକର ସୃଷ୍ଟି ମୂଳରେ କିମ୍ବଦନ୍ତୀମାନ ଗଢି ଉଠିଥିଲା, ଦେବୀ ଭାଗବତର ବର୍ଣ୍ଣନାରୁ ଜଣାଯାଏ ଯେ ଦକ୍ଷ ଯଜ୍ଞରେ ସତୀ ଶରୀର ବିସର୍ଜନ କରିବା ପରେ ଶଙ୍କର ସତୀଙ୍କର ଶରୀରକୁ ନେଇ ନୃତ୍ୟ କରିବାକୁ ଲାଗିଲେ । ସେଥିପାଇଁ ବିଷ୍ଣୁ ସତୀଙ୍କ ଶରୀରକୁ ସୁଦର୍ଶନ ସାହାଯ୍ୟରେ ଖଣ୍ଡ ବିଖଣ୍ଡିତ କରିଥିଲେ । ସେହି ଖଣ୍ଡ ବିଖଣ୍ଡିତ ସତୀଙ୍କର ଅଂଶ ଭାରତବର୍ଷରେ ଯେଉଁଠାରେ ପଡିଥିଲା ତାକୁ ଦେବୀପୀଠ ବୋଲି କୁହାଗଲା । ପ୍ରାୟତଃ ୫୨ଟି ଶକ୍ତି ପୀଠ ରହିଛି ବୋଲି ଅନୁମାନ କରାଯାଏ । ଆଶ୍ୱିନ ଓ ଚୈତ୍ର ମାସରେ ନବରାତ୍ରି ପାଳନ କରାଯାଏ, ତତ୍ ସହିତ ସେହି ଶକ୍ତି ପୀଠମାନଙ୍କରେ ଦେବୀପୂଜା ହୋଇଥାଏ । ଯେମିତିକି ଆସାମରେ କାମାକ୍ଷା, କଲିକତାରେ କାଳୀ, ଗୁଜୁରାଟର ଅମ୍ବିକା, ଜଳନ୍ଧରର ତ୍ରିପୁରା ମାଳିନୀ, ଉତ୍କଳର ବିରଜା, ବିମଳା, ଶାରଳା, ଉଜ୍ଜୟିନୀର ମଙ୍ଗଳ ଚଣ୍ଡୀ, ବାରଣାସୀର ବିମଳାକ୍ଷୀ ଇତ୍ୟାଦି ସ୍ଥାନରେ ବହୁଳ ଭାବେ ଶକ୍ତିପୀଠ ଥିବା ଲକ୍ଷ୍ୟ କରାଯାଏ, ଏତଦ୍‌ବ୍ୟତୀତ ଓଡିଶାରେ ମଙ୍ଗଳା, ଭଟ୍ଟାରିକା, ସମଲେଇ, ତାରିଣୀ, ତାରାତାରିଣୀ, ହରଚଣ୍ଡୀ, ଗଡଚଣ୍ଡୀ, ଭଗବତୀ, ବନଦୁର୍ଗା, ଗିରିଦୁର୍ଗା ଇତ୍ୟାଦି ଶାରଦୀୟ ପୂଜାମାନ ଅନୁଷ୍ଠିତ ହୋଇଥାଏ ।

ପ୍ରାୟ ୧୬ଶ ଶତାବ୍ଦୀ ପରଠାରୁ ଦେବୀପୀଠମାନଙ୍କରେ ହେଉଥିବା ଶକ୍ତି ଉପାସନା କ୍ରମଶଃ ଗ୍ରାମରେ, ସହରରେ ପ୍ରଚଳିତ ହେବାକୁ ଲାଗିଲା ଯଥା ମୃଣ୍ମୟୀ ଚତୁର୍ଭୁଜା, ଅଷ୍ଟଭୁଜା, ଦଶଭୁଜା, ଷୋଡଶ ଭୁଜା ଦୁର୍ଗାପୂଜା ରୂପେ ପ୍ରଚଳିତ ହେଲା । ପରବର୍ତ୍ତୀ ସମୟରେ ମଧ୍ୟ ଓଡିଶାରେ ରାଜଗୁରୁ ବର୍ଦ୍ଧନ ମହାପାତ୍ରଙ୍କର ପ୍ରେରଣାରେ ଦୁର୍ଗୋତ୍ସବ ଚନ୍ଦ୍ରିକା ଅବଲମ୍ବନରେ ଗ୍ରାମ ସହର ଓ ନଗରମାନଙ୍କରେ ସାର୍ବଜନୀନ ଦୁର୍ଗାପୂଜା ଭାବେ ପ୍ରଚଳନ ହେଲା । ଯାହା ଜଣାଯାଏ ସେହି ଶକ୍ତିମୟୀ ଦୁର୍ଗାଙ୍କୁ ବନଦୁର୍ଗାଭାବେ ମନ୍ତ୍ରରେ ପୂଜା କରାଗଲା ।

ମୋଟାମୋଟି ଭାବେ ଭାରତୀୟ ସଂସ୍କୃତିରେ ବୈଦିକ ଯୁଗରୁ ଏ ସୃଷ୍ଟିର ଆଦ୍ୟାଶକ୍ତି ରୂପେ ମାତୃଶକ୍ତିକୁ ଗ୍ରହଣ କରାଯାଇଛି । କାରଣ ମାତୃ ଉପାସନା ମୋକ୍ଷଧର୍ମୀ ଓ ଆଦିମ ଉପାସନା । ପ୍ରତ୍ୟେକ ମଣିଷ ଅବଗତ ଯେ ମାତୃଶକ୍ତି ହିଁ ମାନବ ଜାତିର ସୃଷ୍ଟିକର୍ତ୍ତ୍ରୀ ।

ଏହି ଶକ୍ତିପୂଜାର ପରଂପରା ମଧ୍ୟରେ ଆମର ଦଶଭୁଜା ବିଶିଷ୍ଟ ଦୁର୍ଗାଙ୍କର ମୂର୍ତ୍ତି ପରିକଳ୍ପନା ଏକ ପ୍ରାଚୀନ ପରଂପରା । ଏହା ବଙ୍ଗୀୟମାନଙ୍କ ମୃଣ୍ମୟୀ ପ୍ରତିମା ନିର୍ମାଣର ପ୍ରଭାବ ବୋଲି ବହୁ ଗବେଷକ ମତ ଦିଅନ୍ତି । ଉତ୍କଳୀୟମାନେ ମତ ଦିଅନ୍ତି ଯେ ଦୁର୍ଗା ହେଉଛନ୍ତି ଚତୁର୍ଭୁଜା । କେତେକ ସ୍ଥାନରେ ମା' ଦୁର୍ଗାଙ୍କୁ ଅଷ୍ଟଭୁଜା ଓ ଷଡଭୁଜା ବୋଲି ମଧ୍ୟ କହିଥାନ୍ତି । ଉଲ୍ଲେଖ ଅଛି, କେଉଁ ପୁରାଣ ଯୁଗରେ ଦାନବ ମହିଷାସୁର ଅତ୍ୟାଚାର କରି ଦେବତାମାନଙ୍କୁ ଅସୁବିଧାରେ ପକାଉଥିଲା, ସେଥିପାଇଁ ଦେବତାମାନେ ବ୍ରହ୍ମାଙ୍କର ଶରଣାପନ୍ନ ହୋଇ ଶିବଙ୍କ ନିକଟକୁ ଯାଇ ଏ ବିଷୟରେ କିଛି ପରାମର୍ଶ ଲୋଡିଥିଲେ । ଦେବତାମାନଙ୍କର କ୍ରୋଧରୁ ଏକ ଅପୂର୍ବ ତେଜ ନିର୍ଗତ ହୋଇଥିଲା ଏବଂ ସେହି ତେଜରୁ ଜନ୍ମ ନେଇଥିଲେ ଏକ ଅପୂର୍ବ ଲାବଣ୍ୟମୟୀ ତେଜସ୍ୱିନୀ ନାରୀ ମୂର୍ତ୍ତି ଦୁର୍ଗା । ଦେବୀ ଦୁର୍ଗା

ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ସିଂହ ଉପରେ ଆରୋହଣ କରି ମହିଷାସୁରକୁ ବଧ କଲେ । ସେହି ସମୟରେ ଦେବତାମାନେ ମହାନନ୍ଦରେ ଜୟଧ୍ୱନି କଲେ । ଫଳରେ ଏହି ବିଜୟ ସ୍ମାରକୀ ସ୍ୱରୂପ କେଉଁ ଅନାଦି କାଳରୁ ଆଶ୍ୱିନ ମାସର ଶୁକ୍ଳପକ୍ଷ ଦଶମୀ ତିଥିଟିକୁ ବିଜୟା ଦଶମୀ ନାମରେ ପାଳନ କରାଯାଏ ।

କ୍ରମଶଃ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀବେଳକୁ 'ଦଶହରା' ଆଡମ୍ବରପୂର୍ଣ୍ଣ ଶକ୍ତି ଉପାସନାରେ ରୂପାନ୍ତରିତ ହେଲା । କିନ୍ତୁ ବାସ୍ତବରେ ଏହାର ସାମାଜିକ ଭୂମିକା ରହିଛି । ସାମୂହିକ ଶକ୍ତିପୂଜା ଫଳରେ ସମାଜରେ ଧର୍ମ ବର୍ଣ୍ଣ ନିର୍ବିଶେଷରେ ଗୋଷ୍ଠୀଗତ ଐକ୍ୟ ଓ ସଂହତି ବଜାୟ ରହିପାରୁଛି । ପରସ୍ପର ସଦ୍‌ଭାବ ଓ ପ୍ରୀତ ସମ୍ଭାଷଣଦ୍ୱାରା ସମାଜରେ ସଂପ୍ରୀତି, ସଦ୍‌ଭାବନା ଓ ମୈତ୍ରୀର ବାତାବରଣ ସୃଷ୍ଟି ହୋଇପାରୁଛି । ଶକ୍ତି ଉପାସନାର ଏକ ବଳିଷ୍ଠ ସାମାଜିକ ଭୂମିକା ରହିଛି । ଏହି ଶକ୍ତି ଉପାସନାଦ୍ୱାରା ରାଷ୍ଟ୍ରୀୟ ସ୍ତରରେ ସଂଘଶକ୍ତି ବା ଗଣଶକ୍ତି ଜାଗ୍ରତ ହୋଇ ରାଷ୍ଟ୍ରରକ୍ଷାରେ ସହାୟକ ହୋଇପାରୁଛି । ଏତଦ୍‌ବ୍ୟତୀତ ସମାଜରେ ଦେବୀ ମାହାତ୍ମ୍ୟ ଓ ଉପାସନାର ପ୍ରଭାବରେ ସକଳ ଦୁଃଖ ବ୍ୟାଧି, ଅଜ୍ଞାନତା ପ୍ରଭୃତି ଦୂରହୋଇ ଏକ ସୁସ୍ଥ ଓ ଉନ୍ନତ ସମାଜ ଗଠନ ତ୍ୱରାନ୍ୱିତ ହୋଇପାରୁଛି ବୋଲି ଆଧ୍ୟାତ୍ମିକ ଦୃଷ୍ଟିରୁ ବିଚାର କରାଯାଏ ।

କୋ– ଅପରେଟିଭ ହାଉସିଂ କଲୋନୀ
ବିଏସ୍‌ଏନ୍‌ଏଲ୍ ନିକଟ
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର

# ଶ୍ରୀଚଣ୍ଡୀ ନାମାମୃତ

**ବିଚିତ୍ରାନନ୍ଦ ବାରିକ**

ଶ୍ରୀଚଣ୍ଡୀ ତାରିଣୀ ଶିବା
ତାରା ତରୁଣ ବଲ୍ଲରୀ
ତୀବ୍ରରୂପା ଶ୍ୟାମାକାଳୀ
ତନୁକ୍ଷୀଣା ପୟୋଧରୀ ।

ରାମଚଣ୍ଡୀ ନାରାୟଣୀ
ଚଣ୍ଡିକା ନୀଳ ଲୋଚନୀ
ଜୟା ଉଗ୍ରଚଣ୍ଡା ଦେବୀ
କୁତାମଚଣ୍ଡୀ ଭବାନୀ ।

ଶାମ୍ଭବୀ ତାରାତାରିଣୀ
ସିଦ୍ଧିଦାତ୍ରୀ ବୁଦ୍ଧିଦାତ୍ରୀ
ଉଗ୍ରତାରା ପ୍ରଭା ନୀଳୀ
କୃଷ୍ଣା ନୀଳ ସରସ୍ୱତୀ ।

ମହାଲକ୍ଷ୍ମୀ ମହାକାଳୀ
ମହା ସରସ୍ୱତୀ ଦୁର୍ଗା
ଦେବୀ ଗଗନ ବାହିନୀ
ଚଣ୍ଡିକା ବିଜୟାରାଧ୍ୟା ।

ଅର୍ଦ୍ଧ କେଶେଶ୍ୱରୀ କେଶା
କେଶ ବେଶ ବିଭୂଷିତା
ମାହେଶ୍ୱରୀ ମହାଦେବୀ
ପଞ୍ଚାନନାଦି ପୂଜିତା ।

ଶିବ ପୂଜ୍ୟ ଶିବାରାଧ୍ୟା
ଶିବ ଧେୟା ସନାତନୀ
ରୁଦ୍ରା ରୌଦ୍ରମୟୀ ମୂର୍ତ୍ତି
ବିଶୋଦା ଶୋକନାଶିନୀ ।

ବ୍ରହ୍ମବିଦ୍ୟା ଜଗଦ୍ଧାତ୍ରୀ
ନିର୍ଗୁଣ ଗୁଣ ସମ୍ଭୂତା
ସଗୁଣା ସୁଗୁଣାରାଧ୍ୟା
ହରିନ୍ଦ୍ର ଦେବ ପୂଜିତା ।

ଅଟ୍ଟହାସ୍ୟ, କରାଳାସ୍ୟା
ଚତୁଃରାସ୍ୟା ଅଦିତି ପୂଜିତା
ବଳପ୍ରିୟା ବଳିରତା
ବଳରାମ ପ୍ରପୂଜିତା ।

ଶ୍ରୀଚଣ୍ଡୀ ସିଦ୍ଧିରୂପା ଗୌରୀ
ତ୍ରିନେତ୍ରା ଶିବ ଗୃହିଣୀ
ଶଙ୍କରୀ ବେଦମାତା ଶିବା
ଜଗତ ଜନବନ୍ଦିନୀ ।

ଶରଣାଗତ ଜୀବୀନାଂ
ସର୍ବଦୁଃଖ ବିନାଶିନୀ
ସର୍ବ ସମ୍ପଦ କରୀଂ ଦେବୀ
କୁତାମଚଣ୍ଡୀ ଶରଣଂ ।

ନିଆଳୀ, କଟକ

# ତ୍ୟାଗ ଓ ସମର୍ପଣର ପର୍ବ ଇଦ୍-ଉଜ୍-ଜୁହା

**ଶେଖ୍ ଅବ୍ଦୁଲ୍ କଲିମ୍**

ଇଦ୍-ଉଜ୍-ଜୁହା ମୁସଲମାନ ଧର୍ମର ଏକ ଗୁରୁତ୍ୱପୂର୍ଣ୍ଣ ପର୍ବ । ଇଦ୍ ବର୍ଷକରେ ତିନି ଥର ପାଳିତ ହୋଇଥାଏ । ଇଦ୍-ଉଜ୍-ଜୁହା, ଇଦ୍-ଉଲ୍-ଫିତର ଯାହାକୁ ରମ୍‌ଜାନ୍ ଇଦ୍ ବୋଲି କୁହାଯାଇଥାଏ ଓ ତୃତୀୟ ଇଦ୍ ହେଉଛି ମିଲାଦୁନ୍ ନବୀ। ଏହି ତିନୋଟି ଯାକ ଇଦ୍ ଭାଇଚାରା-ତ୍ୟାଗ-ସମର୍ପଣ ଓ ମାନବିକତାର ବାର୍ତ୍ତା ଦେଇଥାଏ । ସମସ୍ତଙ୍କ ସହ ମିଶି ରହିବା ଓ ସମସ୍ତଙ୍କ ଭଲ ଚିନ୍ତା କରିବା ହିଁ ଇଦ୍ ଶିକ୍ଷା ଦେଇଥାଏ ।



ଇଦ୍-ଉଜ୍-ଜୁହାକୁ ଅନେକ ନାମରେ ନାମିତ କରାଯାଇଛି । କେତେକ ଏହାକୁ ନମ୍‌କୀନ୍ ଇଦ୍ ବୋଲି କହିଥାନ୍ତି। ଏହାଛଡା ଏହାକୁ ମଧ୍ୟ ଇଦେ କୁର୍ବାନ୍ କୁହାଯାଇଥାଏ । ନମ୍‌କୀନ୍ ଇଦ୍‌ର ଅର୍ଥ ହେଉଛି ଏହିଦିନ କୌଣସି ମିଷ୍ଟାନ୍ନ ଖାଦ୍ୟପଦାର୍ଥ ବ୍ୟତୀତ ନମ୍‌କୀନ୍ ଖାଦ୍ୟପଦାର୍ଥ ରୋଷେଇ କରାଯାଇଥାଏ । କୁର୍ବାନୀ ସହିତ ସମ୍ପୃକ୍ତ ଥିବାରୁ ଏହାକୁ ଇଦେ କୁର୍ବାନ୍ ମଧ୍ୟ କୁହାଯାଇଥାଏ । ଏହାକୁ ମଧ୍ୟ ବକ୍ରୀ ଇଦ୍ ବୋଲି କୁହାଯାଇଥାଏ । ପ୍ରତିବର୍ଷ ମୁସଲମାନ ମାସ ଜୁଲ୍-ହିଜାର ଦଶମ ଦିନ ଏହା ପାଳନ କରାଯାଇଥାଏ । ସାଧାରଣ ଭାବେ ମନେ କରାଯାଇଥାଏ ଯେ ଏହି ଇଦ୍‌ର ସମ୍ବନ୍ଧ ବକ୍ରୀ ସହିତ ରହିଛି । ବାସ୍ତବରେ 'ବକର୍'ର ଅର୍ଥ ହେଉଛି ବଡ଼ ପଶୁ । 'ଇଦେ କୁର୍ବାନ୍'ର ଅର୍ଥ ହେଉଛି ବଳିଦାନର ଭାବନା । ଆରବୀ ଭାଷାରେ 'କର୍ବ' ଅର୍ଥ ବହୁତ ନିକଟରେ ରହିବା । ଅର୍ଥାତ୍ ଏହି ଅବସରରେ ଭଗବାନ ପୁରୁଷମାନଙ୍କ ନିକଟତର ହୋଇଥାନ୍ତି । ସେଥିପାଇଁ ଏହି ହଜ୍ ମାସର ଦଶମ, ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ତାରିଖରେ ଇଶ୍ୱର 'ଖୁଦା'ଙ୍କୁ ଖୁସି କରିବା ପାଇଁ ହଜ୍‌ର ପ୍ରକ୍ରିୟା ଶେଷ କରାଯାଏ ।

କୁର୍ବାନୀ ବା ତ୍ୟାଗ ପ୍ରତ୍ୟେକ ଧର୍ମ ଓ ଶାସ୍ତ୍ରରେ ଈଶ୍ୱରଙ୍କୁ ପାଇବା ପାଇଁ ସବୁଠାରୁ ବଡ଼ ଅସ୍ତ୍ର ବୋଲି ମନେ କରାଯାଇଥାଏ । ହିନ୍ଦୁ ଧର୍ମରେ ଆମେ କୁର୍ବାନୀକୁ ତ୍ୟାଗ ସହିତ ଯୋଡି ଦେଖିଥାଉ । ସେହିପରି ମୁସଲମାନ ଧର୍ମରେ କୁର୍ବାନୀର ଅର୍ଥ ହେଉଛି ନିଜକୁ ଖୁଦା ବା ଈଶ୍ୱରଙ୍କ ନାମରେ କୁର୍ବାନ୍ କରିଦେବା ଅର୍ଥାତ୍ ନିଜର ସବୁଠାରୁ ପ୍ରିୟ ସାମଗ୍ରୀକୁ ତ୍ୟାଗ କରିବା । ଏହି ଭାବନାକୁ ଉଜାଗର କରିଥାଏ ଇଦ୍-ଉଜ୍-ଜୁହା ପର୍ବ ।

ଏହି ଅବସରରେ ଆନନ୍ଦପୂର୍ଣ୍ଣ ଉତ୍ସବ ଓ ସନ୍ତୁଳିତ ଧାର୍ମିକ ଅନୁଷ୍ଠାନ କରାଯାଇଥାଏ । ବିଶ୍ୱାସର ଏହି ପରୀକ୍ଷାରେ ସମଗ୍ର ବିଶ୍ୱରେ ମୁସଲମାନମାନେ ଆଲ୍ଲାଙ୍କ ପାଖରେ ନିଜର ଆସ୍ଥା ଦେଖାଇଥାନ୍ତି ।

ଏହିପର୍ବ ପାଳନ ପଛରେ ଏକ ସୁନ୍ଦର କଥାବସ୍ତୁ ରହିଛି । ପୈଗମ୍ବର ହଜ୍‌ରତ ଇବ୍ରାହିମ୍‌ଙ୍କୁ ଈଶ୍ୱରଙ୍କ ନିର୍ଦ୍ଦେଶ ଆସିଲା ଯେ, ସେ ତାଙ୍କର ସବୁଠାରୁ ଅଧିକ ପ୍ରିୟ ବସ୍ତୁକୁ କୁର୍ବାନୀ ବା ବଳିଦାନ ଦିଅନ୍ତୁ । ହଜ୍‌ରତଙ୍କ ପାଇଁ ତାଙ୍କ ପୁଅ ସବୁଠାରୁ ଅଧିକ ପ୍ରିୟ ଥିଲେ । ତେଣୁ ଖୁଦା ବା ଈଶ୍ୱରଙ୍କ ନିର୍ଦ୍ଦେଶ ହଜ୍‌ରତଙ୍କ ପାଇଁ ପଥରର ଗାର ସଦୃଶ ଥିଲା । ସେ ଏହାକୁ ମାନିବା ପାଇଁ ପ୍ରସ୍ତୁତ ହୋଇଗଲେ । କୁର୍ବାନୀ ଦେବା ପୂର୍ବରୁ ସେ ଏ ସମ୍ପର୍କରେ ତାଙ୍କ ପୁଅ ସହିତ ଆଲୋଚନା କଲେ । ୧୧ ବର୍ଷର ପୁଅ ପିତାଙ୍କ ନିଷ୍ପତ୍ତିକୁ ଠିକ୍ ବୋଲି କହିବା ସହିତ ହସି ହସି କୁର୍ବାନ୍ ହେବା ପାଇଁ ରାଜି ହୋଇଗଲେ । ପିତା ଓ ପୁତ୍ରଙ୍କ ଭକ୍ତିକୁ ଦେଖି ଈଶ୍ୱର ପ୍ରସନ୍ନ ହେଲେ ଓ ସେ ହଜ୍‌ରତଙ୍କ ପୁତ୍ରକୁ ଜୀବନଦାନ ଦେଲେ । ସେବେଠାରୁ ଆଜି ପର୍ଯ୍ୟନ୍ତ ଏହାକୁ ପାଳନ କରାଯାଉଛି ।

ହଜରତ୍ ଇବ୍ରାହିମ୍‌ଙ୍କୁ ପୈଗମ୍ବର ରୂପରେ ଦେଖାଯାଇଥାଏ । ଯିଏ କି ଆଲ୍ଲାଙ୍କର ସବୁଠାରୁ ନିକଟତର । ସେ ଯେଉଁ ତ୍ୟାଗ ଓ କୁର୍ବାନୀର ଉଦାହରଣ ସମଗ୍ର ବିଶ୍ୱ ସମ୍ମୁଖରେ ଦେଇ ଯାଇଛନ୍ତି, ତାହା ଅଦ୍ୱିତୀୟ ।

ବକ୍ରୀ ଇଦ୍‌ର କିଛିଦିନ ପୂର୍ବରୁ ଉତ୍ସବ ଆରମ୍ଭ ହୋଇଯାଏ । ଏଥିପାଇଁ ପରିବାରର ସମସ୍ତ ସଦସ୍ୟଙ୍କ ପାଇଁ ନୂତନ କପଡା କ୍ରୟ କରାଯାଏ । ଇଦ୍ ଦିନ ସକାଳୁ ପ୍ରତ୍ୟେକ ଇସ୍‌ଲାମ ଧର୍ମାବଲମ୍ବୀ ନୂତନ ପୋଷାକ ପରିଧାନ କରି ମସ୍‌ଜିଦ୍‌କୁ ନମାଜ ପଢିବାକୁ ଯାଇଥାନ୍ତି ।

ଭାଇଚାରାର ଏହି ପର୍ବର ଆରମ୍ଭ ଆରବରୁ ହିଁ ହୋଇଥିଲା । କିନ୍ତୁ 'କୁଜକେ ଜାହାଙ୍ଗୀର'ରେ ଉଲ୍ଲେଖ ଅଛି, ଏହି ପର୍ବକୁ ଭାରତୀୟମାନେ ଯେଉଁଭଳି ଭାବେ ପାଳନ କରନ୍ତି ତାହା ସମରକନ୍ଦ, କାନ୍ଦାହାର, ଇସ୍‌ଫାହାନ୍, ବୁଖାରା, ଖୁରାସାନ୍, ବାଗ୍‌ଦାଦ୍ ଓ ତବରେଜ ଭଳି ସହରରେ ମଧ୍ୟ ଦେଖିବାକୁ ମିଳି ନ ଥାଏ । ଯେଉଁଠାରେ କି ଇସ୍‌ଲାମ ଧର୍ମର ଜନ୍ମ ଭାରତ ପୂର୍ବରୁ ହୋଇଥିଲା ।

ଇସ୍‌ଲାମ ଧର୍ମର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଉଛି ଯେକୌଣସି ପର୍ବରେ ସମାଜର ଦୁର୍ବଳ ଓ ଗରିବମାନଙ୍କୁ ସେମାନେ ଭୁଲନ୍ତି ନାହିଁ ବରଂ ସେମାନଙ୍କୁ ସହାୟତା କରିବା ଧର୍ମର ଏକ ଅଭିନ୍ନ ଅଙ୍ଗ ବୋଲି ବିବେଚନା କରାଯାଏ । ବକ୍ରୀ ଇଦ୍ ଏହା ହିଁ ଶିକ୍ଷା ଦେଇଥାଏ ଯେ ସତ୍ୟର ରାସ୍ତାରେ ନିଜର ସବୁକିଛିକୁ ବଳିଦାନ କରିବା ପାଇଁ ସବୁବେଳେ ପ୍ରସ୍ତୁତ ରହିବା ଉଚିତ ।

ମୋଗଲ ବାଦ୍‌ଶାହା ଜାହାଙ୍ଗୀର ତାଙ୍କର ପ୍ରଜାଙ୍କ ସହିତ ମିଶି ଇଦ୍-ଉଜ୍-ଜୁହା ପାଳନ କରୁଥିଲେ । ଅଣ ମୁସଲମାନମାନଙ୍କୁ ଯେଭଳି କୌଣସି ସଙ୍କୋଚ ନ ଲାଗିବ ସେଥିପାଇଁ ଇଦ୍ ଦିନ ସନ୍ଧ୍ୟାରେ ଦରବାରରେ ସେମାନଙ୍କ ପାଇଁ ସ୍ୱତନ୍ତ୍ର ଶୁଦ୍ଧ ବୈଷ୍ଣବ ଭୋଜନର ଆୟୋଜନ କରାଯାଉଥିଲା । ଇଦ୍ ପାଳନ କରିବାର ପରମ୍ପରା ଭାରତରେ ମୋଗଲମାନେ ହିଁ ଆରମ୍ଭ କରିଥିଲେ । ସେହି କାରଣ ଯୋଗୁଁ ଇଦ୍ ଦିନ ଆଜିକାଲି ଭାରତରେ ଏଭଳି ପରିବେଶ ଦେଖିବାକୁ ମିଳିଥାଏ ଯେପରିକି ଏହା ସମଗ୍ର ଭାରତବର୍ଷର ନିଜସ୍ୱ ପର୍ବ । ଏହା ହିଁ ଭାରତୀୟ ସଂସ୍କୃତିର ଗୌରବଶାଳୀ ପରମ୍ପରା । ପବିତ୍ର ଇଦ୍-ଉଜ୍-ଜୁହା ପର୍ବରେ ଗୋଟିଏ ପଟେ ପୈଗମ୍ବର ହଜ୍‌ରତ ଇବ୍ରାହିମ୍‌ଙ୍କ ସୁନ୍ନତ ପାଳନ କରିବା ସହ ଇଦ୍‌ଗାହାଠାରେ ମୁସ୍‌ଲିମ୍ ସମାଜ ଏକତ୍ର ହୋଇ ନମାଜ ପାଠ କରନ୍ତି । ବଳିଦାନର ଏହି ପାରମ୍ପରିକ ପର୍ବ ହିଂସା-ଦ୍ୱେଷ-କପଟ ଆଦିକୁ ବଳି ଦେଇ ନିସ୍ୱାର୍ଥପର ଭାବରେ ଏକ ବିକଶିତ ସୁସ୍ଥ ସମାଜ ଗଠନ ନିମିତ୍ତ ଆହ୍ୱାନ ଦେଇଥାଏ ।

ପ୍ଲଟ୍ ନଂ- ୨୮୫/୨୯୩୬
ଗୋବିନ୍ଦ ପ୍ରସାଦ
ବମିଖାଲ, ଭୁବନେଶ୍ୱର



# ମହିଳା ସଶକ୍ତିକରଣର ନୂତନ ପରିଭାଷା

# ବିଜୁ କନ୍ୟା ରତ୍ନ ଯୋଜନା



**୧. ଉପକ୍ରମ**

ଶିଶୁ ଲିଙ୍ଗହାର କମିଯିବା ଆମ ରାଜ୍ୟର ଏକ ଚିନ୍ତାର ବିଷୟ । ୨୦୦୧ (ଜନଗଣନା) ହିସାବରେ ଶିଶୁଙ୍କ ଲିଙ୍ଗହାର ୧୯୯୧ ଜନଗଣନା ହିସାବରେ ୯୬୭ରୁ ୯୫୩କୁ କମିଯାଇଛି। ୨୦୧୧ ଜନଗଣନା ହିସାବରେ ପୁଣି ଲିଙ୍ଗହାର ୯୪୧କୁ କମିଯାଇଛି। ଯଦିଓ ଜାତୀୟ ସ୍ଥିତି ଅନୁସାରେ ଓଡିଶାର ସ୍ଥିତି ଭଲ ଅଛି, ରାଜ୍ୟର ନୟାଗଡ, ଢ଼େଙ୍କାନାଳ, ଅନୁଗୁଳ ଏବଂ ଗଞ୍ଜାମ ଜିଲ୍ଲାରେ ଯଥାକ୍ରମେ ୮୫୫, ୮୭୭, ୮୮୯ ଏବଂ ୯୦୮ ଶିଶୁଙ୍କ ଲିଙ୍ଗହାର କମ୍ ରହିଛି।

ଓଡ଼ିଶା ସରକାର ରାଜ୍ୟରେ ଶିଶୁମାନଙ୍କର ଲିଙ୍ଗହାର କମିଯିବା ସମସ୍ୟାର ସମାଧାନ କରିବା ନିମନ୍ତେ ପ୍ରତିଶ୍ରୁତିବଦ୍ଧ। ଯେଉଁ ଜିଲ୍ଲାଗୁଡିକରେ ଶିଶୁମାନଙ୍କର ଲିଙ୍ଗହାର କମ୍ ଅଛି ସେହି ଜିଲ୍ଲା ପ୍ରତି ଅଧିକ ଯତ୍ନବାନ ଅଛନ୍ତି।

ଏହି ସଂକ୍ରାନ୍ତରେ ଓଡ଼ିଶା ସରକାର ରାଜ୍ୟ ବାଳିକା ଓ ମହିଳା ନୀତି, ୨୦୧୪ ମାଧ୍ୟମରେ ବାଳିକାମାନଙ୍କୁ ସମାନ ସୁବିଧା ସୁଯୋଗ ପ୍ରଦାନ କରିବା, ଲିଙ୍ଗଗତ ପକ୍ଷପାତିତା ଦୂର କରିବା ଏବଂ ସାମାଜିକ ବ୍ୟବହାର ପରିବର୍ତ୍ତନ ମାଧ୍ୟମରେ କିଶୋରୀମାନଙ୍କୁ ସଶକ୍ତ କରିବା ପାଇଁ ଉତ୍ତମ ପରିବେଶ ସୃଷ୍ଟି କରିବା ପାଇଁ ପ୍ରତିଶ୍ରୁତିବଦ୍ଧ। କିଶୋରୀ ଏବଂ ମହିଳାମାନଙ୍କର ବିକାଶ ଏବଂ ସଶକ୍ତିକରଣ ନିମନ୍ତେ ବିଭିନ୍ନ ପଦକ୍ଷେପ ନିଆଯାଇଛି।

ଅଭିଯାନ ମାଧ୍ୟମରେ ନିର୍ଦ୍ଦିଷ୍ଟ ଭାବରେ କନ୍ୟା ଶିଶୁଙ୍କ ଲିଙ୍ଗହାର କମିଯିବା ସମସ୍ୟାର ସମାଧାନ କରିବା, କନ୍ୟା ଶିଶୁ ଜନ୍ମନେବା, ବଞ୍ଚିରହିବା ଏବଂ ସେମାନଙ୍କର ବିକାଶ ନିମନ୍ତେ ମହିଳା ଓ ଶିଶୁ ବିକାଶ ବିଭାଗ ଗୋଷ୍ଠୀ ଏବଂ ସମସ୍ତ କାର୍ଯ୍ୟକାରୀ ସଂସ୍ଥାଙ୍କୁ ଏକତ୍ରିତ କରାଯିବ।

ବିଜୁ କନ୍ୟା ରତ୍ନ (ଆମ କନ୍ୟା ଆମ ରତ୍ନ) ନାମରେ ଏକ ନୂତନ ଯୋଜନା ରାଜ୍ୟର ଅନୁଗୁଳ, ଢ଼େଙ୍କାନାଳ ଏବଂ ଗଞ୍ଜାମ ଜିଲ୍ଲାରେ ୨୦୧୬–୧୭ ଠାରୁ ତିନି ବର୍ଷ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହେବ। ୪ଟି ଜିଲ୍ଲା ମଧ୍ୟରୁ ନୟାଗଡ ବ୍ୟତୀତ ତିନୋଟି ଜିଲ୍ଲା

ଯେଉଁଠାରେ କନ୍ୟା ଶିଶୁଙ୍କର ହାର କମ୍ ସେହି ଜିଲ୍ଲାରେ ବିଜୁ କନ୍ୟା ରତ୍ନ (ଆମ କନ୍ୟା ଆମ ରତ୍ନ) ଯୋଜନା କାର୍ଯ୍ୟକାରୀ କରାଯିବ।

**୨. ମୁଖ୍ୟ ଉଦ୍ଦେଶ୍ୟ**

କନ୍ୟା ଶିଶୁ ବଞ୍ଚି ରହିବା ଏବଂ ସେମାନଙ୍କର ବିକାଶ ନିମନ୍ତେ ସକ୍ଷମକାରୀ ପରିବେଶ ସୃଷ୍ଟି କରିବା ଏବଂ ସେମାନଙ୍କର ସମ୍ମାନ ବଜାୟ ରଖିବା।



**୩. ଏହି ଯୋଜନାର ଲକ୍ଷ୍ୟ**

କ. ଲିଙ୍ଗଗତ ତାରତମ୍ୟଜନିତ ଲିଙ୍ଗ ନିରୂପଣ ରୋକିବା।

ଖ. କନ୍ୟା ସନ୍ତାନର ସ୍ୱାସ୍ଥ୍ୟ, ପୁଷ୍ଟି, ନିରାପତ୍ତା ଏବଂ ବଞ୍ଚି ରହିବା ସୁନିଶ୍ଚିତ କରିବା।

ଗ. କନ୍ୟା ଶିଶୁମାନେ ସ୍କୁଲ୍‌କୁ ଯିବା ଏବଂ ସ୍କୁଲ୍‌ରେ ଉପସ୍ଥାନ ହାର ବଢ଼ାଇବା ନିଶ୍ଚିତ କରିବା।

ଘ. କନ୍ୟା ଶିଶୁର ଗୁରୁତ୍ୱ ସମ୍ପର୍କରେ ଗୋଷ୍ଠୀ ଏବଂ ସମସ୍ତ ସେବା ପ୍ରଦାନକାରୀ ସଂସ୍ଥା ମଧ୍ୟରେ ସଚେତନତା ବୃଦ୍ଧି କରିବା।

ଙ. କନ୍ୟାମାନେ ସେମାନଙ୍କର ମତ ପରିପ୍ରକାଶ କରିବା ଏବଂ ସମସ୍ତ କାର୍ଯ୍ୟକ୍ରମରେ ସକ୍ରିୟ ଭାବରେ ସଫଳତାର ସହ ଏବଂ ସମକକ୍ଷ ହୋଇ ଅଂଶଗ୍ରହଣ କରିବା ନିମନ୍ତେ ପଦକ୍ଷେପ ଗ୍ରହଣ କରିବା।

**୪. ତଦାରଖ ସୂଚକ**

୧. ଜନ୍ମ ସମୟରେ ଲିଙ୍ଗଗତ ହାର ବଢ଼ାଇବା ଏବଂ ଜିଲ୍ଲାରେ କନ୍ୟା ଶିଶୁ ଲିଙ୍ଗ ହାର ବଢ଼ାଇବା।

୨. ପାଞ୍ଚବର୍ଷ ଭିତରେ ଶିଶୁଙ୍କ ଲିଙ୍ଗଗତ ଭେଦଭାବ ଦୂର କରିବା ଏବଂ ଶିଶୁ ମୃତ୍ୟୁହାର କମାଇବା ଏବଂ ପାଞ୍ଚବର୍ଷ ଭିତରେ ହୋଇଥିବା କନ୍ୟା ଶିଶୁଙ୍କ ମୃତ୍ୟୁର ସମୀକ୍ଷା କରିବା।

୩. କନ୍ୟା ଶିଶୁଙ୍କ ପୁଷ୍ଟି ସ୍ଥିତି ବଢ଼େଇବା – ପାଞ୍ଚ ବର୍ଷ ମଧ୍ୟରେ ଥିବା ଶିଶୁଙ୍କ ସ୍ୱଳ୍ପ ଓଜନ ଏବଂ ରକ୍ତହୀନତା କମାଇବା।

୪. ଜିଲ୍ଲାରେ ଥିବା ଅଲ୍‌ଟ୍ରାସାଉଣ୍ଡ୍ କ୍ଲିନିକ୍‌ଗୁଡିକ ପଞ୍ଜୀକରଣ ନିଶ୍ଚିତ କରାଇବା।

୫. ଅଙ୍ଗନୱାଡି କେନ୍ଦ୍ରରେ ସମସ୍ତ ଶିଶୁଙ୍କୁ ପଞ୍ଜୀକୃତ ସୁନିଶ୍ଚିତ କରାଇବା।

୬. ପ୍ରାଥମିକ କାର୍ଯ୍ୟକ୍ରମରେ ସମସ୍ତ କନ୍ୟା ଶିଶୁଙ୍କ ପଞ୍ଜୀକରଣ ନିଶ୍ଚିତ କରାଇବା।

୭. ଜିଲ୍ଲାରେ ସମସ୍ତ ସ୍କୁଲ୍‌ରେ ଝିଅମାନଙ୍କ ନିମନ୍ତେ ପାଇଖାନା ଯୋଗାଇଦେବା।

୮. ସ୍କୁଲ୍ ଛାଡିଥିବା ପିଲାଙ୍କ ଉପରେ ନଜର ରଖିବା ଏବଂ ସ୍କୁଲ୍‌ରେ ନାମ ଲେଖାଇବା।

୯. ସ୍କୁଲ୍‌ରେ ଝିଅମାନଙ୍କୁ ଆତ୍ମରକ୍ଷା ପ୍ରଶିକ୍ଷଣ ପ୍ରଦାନ କରିବା।

୧୦. କିଶୋରୀ ବାଳିକାଙ୍କୁ ଯୌନ ଓ ପ୍ରଜନନ ସ୍ୱାସ୍ଥ୍ୟ ସମ୍ପର୍କରେ ସଚେତନ କରାଇବା।

୧୧. ନିର୍ବାଚିତ ପ୍ରତିନିଧି / ଗ୍ରାମ୍ୟ ସ୍ତରର କାର୍ଯ୍ୟକର୍ତ୍ତା / ସ୍ୱୟଂ ସହାୟକ ଗୋଷ୍ଠୀ ସଦସ୍ୟା, ସରକାରୀ ଅଧିକାରୀ, ଧାର୍ମିକ ନେତା, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ମିଡିଆ, ସ୍ୱାସ୍ଥ୍ୟ ସଂଘ, ବାଣିଜ୍ୟ / ଶିଳ୍ପ ସଂଘ, ଯୁବକ ଏବଂ କିଶୋର (ବାଳକ ଓ ବାଳିକା), ସରକାରୀ ଓ ବେସରକାରୀ ଡାକ୍ତର, ଧାଇ ଗୃହ (ନର୍ସିଂ ହୋମ୍) ଚିକିତ୍ସା କେନ୍ଦ୍ର, ଯୁବକ ଏବଂ ନୂଆ ବିବାହିତ ଦମ୍ପତି : ଗର୍ଭବତୀ ଏବଂ ପ୍ରସୂତି ମହିଳା, ବୟସ୍କ ବ୍ୟକ୍ତି, ଅଭିଭାବକ, ଛାତ୍ରଛାତ୍ରୀ, ଶିକ୍ଷକ ଏବଂ ସାଧାରଣ ଗୋଷ୍ଠୀଙ୍କ ଦକ୍ଷତା ଓ ସଚେତନତା ବୃଦ୍ଧି କରିବା।

**୫. ଉପାଦାନ / ଅଂଶ**

**ଯୋଜନାରେ ୪ଟି ଗୁରୁତ୍ୱପୂର୍ଣ୍ଣ ଅଂଶ**

୧. ଅନ୍ତଃ ବିଭାଗ ସମନ୍ୱୟ

୨. ପ୍ରଶିକ୍ଷଣ ଏବଂ ଦକ୍ଷତା ବୃଦ୍ଧି କାର୍ଯ୍ୟକ୍ରମ

୩. ଅଭିନବ ପ୍ରକ୍ରିୟା

୪. ତଥ୍ୟ ଶିକ୍ଷା ଏବଂ ସୂଚନା କାର୍ଯ୍ୟକ୍ରମ

ସଠିକ୍ କାର୍ଯ୍ୟକାରୀ ଯୋଜନା ଅନୁସାରେ ଏହି ଉପାଦାନଗୁଡିକ ଉଭୟ ରାଜ୍ୟ ଏବଂ ଜିଲ୍ଲାରେ କାର୍ଯ୍ୟକାରୀ କରାଯିବ।

**ଅନ୍ତଃ ବିଭାଗ ସମନ୍ୱୟ –** ଏହି ଯୋଜନାଟି ମହିଳା ଓ ଶିଶୁ ବିକାଶ ବିଭାଗ, ସ୍ୱାସ୍ଥ୍ୟ ବିଭାଗ ଏବଂ ଗଣ ଶିକ୍ଷା ବିଭାଗର ମିଳିତ ସମନ୍ୱୟରେ କାର୍ଯ୍ୟକାରୀ କରାଯିବ। ଯେହେତୁ କନ୍ୟା ଶିଶୁଙ୍କ ବଞ୍ଚିରହିବା, ସ୍ୱାସ୍ଥ୍ୟ, ଶିକ୍ଷା ଏବଂ ବିକାଶ ଏହି ଯୋଜନାର ଲକ୍ଷ୍ୟ ତେଣୁ ଏହି ତିନୋଟି ବିଭାଗଗୁଡିକ ମିଳିତ ଭାବରେ କାର୍ଯ୍ୟ କରିବା ଆବଶ୍ୟକତା ରହିଅଛି। ଅନ୍ୟାନ୍ୟ ବିଭାଗ ଯଥା ଅନୁସୂଚିତ ଜାତି ଓ ଜନଜାତି କଲ୍ୟାଣ ବିଭାଗ, ପଞ୍ଚାୟତିରାଜ, ଶ୍ରମ ଏବଂ ରାଜ୍ୟ କର୍ମଚାରୀ ବୀମା, ଗ୍ରାମ୍ୟ ଉନ୍ନୟନ, ଆଇନ ପ୍ରାଧିକରଣ ବିଭାଗଗୁଡିକର ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି। ରାଜ୍ୟ ଏବଂ ଜିଲ୍ଲା ସ୍ତରରେ ବିଭିନ୍ନ ବିଭାଗ ମଧ୍ୟରେ ସମନ୍ୱୟରେ ଏହି ଯୋଜନାର ଲକ୍ଷ୍ୟ ହାସଲ କରିହେବ।

**ପ୍ରଶିକ୍ଷଣ ଏବଂ ଦକ୍ଷତା ବୃଦ୍ଧି କାର୍ଯ୍ୟକ୍ରମ –** ସମସ୍ତ କାର୍ଯ୍ୟକାରୀ ସଂସ୍ଥାର ପ୍ରଶିକ୍ଷଣ ଏବଂ ଦକ୍ଷତା ବୃଦ୍ଧି ଏହି ଯୋଜନାର ମୁଖ୍ୟ ଉପାଦାନ। ପ୍ରଶିକ୍ଷଣ ପାଇବାକୁ ଥିବା କାର୍ଯ୍ୟକର୍ତ୍ତାମାନେ ହେଲେ ସରକାରୀ କର୍ମଚାରୀ / ନିର୍ବାଚିତ ପ୍ରତିନିଧି / ଗ୍ରାମ୍ୟ ସ୍ତରର କାର୍ଯ୍ୟକର୍ତ୍ତା (ଅଙ୍ଗନୱାଡି କର୍ମୀ / ଏ.ଏନ୍.ଏମ୍ / ଆଶା ଇତ୍ୟାଦି) ସ୍ୱୟଂ ସହାୟକ ଗୋଷ୍ଠୀ ସଦସ୍ୟା, ଧାର୍ମିକ ନେତା, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ମିଡିଆ, ସ୍ୱାସ୍ଥ୍ୟ ସଂଘ, ବାଣିଜ୍ୟ / ଶିଳ୍ପ ସଂଘ, ଯୁବକ ଏବଂ କିଶୋର (ବାଳକ ଓ ବାଳିକା), ସରକାରୀ ଓ ବେସରକାରୀ ଡାକ୍ତର, ଧାଇ ଗୃହ (ନର୍ସିଂ ହୋମ୍), ଚିକିତ୍ସା କେନ୍ଦ୍ର, ଯୁବକ ଏବଂ ନୂଆ ବିବାହିତ ଦମ୍ପତି ଗର୍ଭବତୀ ଏବଂ ପ୍ରସୂତି ମହିଳା, ବୟସ୍କ ବ୍ୟକ୍ତି, ଅବିଭାବକ ଏବଂ ସାଧାରଣ ଗୋଷ୍ଠୀ।

**ଅଭିନବ ପ୍ରକ୍ରିୟା –** ଯୋଜନା କାର୍ଯ୍ୟକାରୀ ହେବାକୁ ଥିବା ଜିଲ୍ଲାଗୁଡିକରେ ସମସ୍ୟା ସମାଧାନ ନିମନ୍ତେ ନୂତନ ପଦକ୍ଷେପ ଏବଂ ସୁ ଅଭ୍ୟାସଗୁଡିକ ଗ୍ରହଣ କରିବେ ଏବଂ ଶିଶୁ କନ୍ୟା ଦିବସ, ନୂତନ ପଦକ୍ଷେପ / କାର୍ଯ୍ୟ ନିମନ୍ତେ ଗ୍ରାମପଞ୍ଚାୟତଗୁଡ଼ିକୁ ପୁରସ୍କୃତ କରିବା, ଡାକ୍ତରଖାନାରେ କନ୍ୟା ସନ୍ତାନ ଜନ୍ମ ପରେ ପରିବାର ସଦସ୍ୟଙ୍କୁ ସମ୍ବର୍ଦ୍ଧନା, ଅନୁଧ୍ୟାନ ଏବଂ ସର୍ବେକ୍ଷଣ ଇତ୍ୟାଦି କାର୍ଯ୍ୟକ୍ରମ କରାଯିବ।

**ତଥ୍ୟ ଶିକ୍ଷା ଓ ସୂଚନା କାର୍ଯ୍ୟକ୍ରମ –** ସମାବେଶ / କର୍ମଶାଳା / ଗୋଷ୍ଠୀ ରେଡିଓ / କ୍ଷୁଦ୍ର ପୁସ୍ତିକା (ପାମ୍ଫ୍ଲେଟ) / ଟେଲିଭିଜନ / ରେଡିଓ ସ୍ପଟ / ବିଜ୍ଞାପନ ପ୍ରଦର୍ଶନ (ହୋର୍ଡିଂ) ଇତ୍ୟାଦି ମାଧ୍ୟମରେ ସଚେତନତା ବୃଦ୍ଧି।

**୬. ଭୌଗୋଳିକ ଅଞ୍ଚଳ**

ଏହି ଯୋଜନା କେବଳ ଅନୁଗୁଳ, ଢେଙ୍କାନାଳ ଏବଂ ଗଞ୍ଜାମ ଜିଲ୍ଲାରେ କାର୍ଯ୍ୟକାରୀ ହେବ।

**୭. କାର୍ଯ୍ୟକାରୀ ଯୋଜନା**

ରାଜ୍ୟ ସ୍ତରରେ ରାଜ୍ୟ କାର୍ଯ୍ୟକ୍ରମ କରିବା ନିମନ୍ତେ କାର୍ଯ୍ୟ ଯୋଜନା ପ୍ରସ୍ତୁତ କରାଯିବା। (ପରିଶିଷ୍ଟ-କ)

ଜିଲ୍ଲା ସ୍ତରରେ ଜିଲ୍ଲା କାର୍ଯ୍ୟକ୍ରମ ଯୋଜନା ପ୍ରସ୍ତୁତ କରାଯିବା। (ପରିଶିଷ୍ଟ-ଖ)

**ମହିଳା ଓ ଶିଶୁ ବିକାଶ ବିଭାଗର ଭୂମିକା**

- ଏହି ଯୋଜନାର ସମସ୍ତ କାର୍ଯ୍ୟକ୍ରମ ରାଜ୍ୟ ଏବଂ ଜିଲ୍ଲା ସ୍ତରରେ କାର୍ଯ୍ୟକାରୀ କରାଇବା ନିମନ୍ତେ ଯୋଗାଯୋଗ କରିବା ମହିଳା ଓ ଶିଶୁ ବିକାଶ ବିଭାଗର ଭୂମିକା।
- ବିଭାଗ ଯୋଜନା ପରିଚାଳନା ୟୁନିଟ୍ (ଚଗଟ) ମାଧ୍ୟମରେ ଯୋଜନା କାର୍ଯ୍ୟକାରୀତା ନିମନ୍ତେ ଯୋଗାଯୋଗ କରିବା ବିଭାଗର କୂମିକା।
- ବିଭାଗ ଯୋଜନାର ସ୍ଥିତି ବିବରଣୀ ବାଳିକା ଓ ମହିଳାଙ୍କ ଯତ୍ନ, ସୁରକ୍ଷା ଏବଂ ବିକାଶ ପାଇଁ ଥିବା ରାଜ୍ୟ ଟାସ୍କ ଫୋର୍ସଙ୍କୁ ଅର୍ଦ୍ଧବାର୍ଷିକ ଭିତ୍ତିରେ ପ୍ରଦାନ କରିବେ।

**ରାଜ୍ୟ ମହିଳା ସମ୍ବଳ କେନ୍ଦ୍ର (ଏସ୍.ଆର୍.ସି.ଡବ୍ଲୁ)ର ଭୂମିକା**

- ରାଜ୍ୟ ମହିଳା ସମ୍ବଳ କେନ୍ଦ୍ର ରାଜ୍ୟ ଏବଂ ଜିଲ୍ଲା କାର୍ଯ୍ୟକ୍ରମ ଯୋଜନା ପ୍ରସ୍ତୁତ କରିବେ ଏବଂ ଏହାର କାର୍ଯ୍ୟକାରିତା ନିମନ୍ତେ ବୈଷୟିକ ସହାୟତା ପ୍ରଦାନ କରିବେ।
- ତଦାରଖ ଏବଂ ମୂଲ୍ୟାଙ୍କନ ନିମନ୍ତେ ରାଜ୍ୟ ମହିଳା ସମ୍ବଳ କେନ୍ଦ୍ର ସମସ୍ତ ସହାୟତା ପ୍ରଦାନ କରିବେ।

**ଜିଲ୍ଲାପାଳଙ୍କ ଦାୟିତ୍ୱ**

- ଜିଲ୍ଲାପାଳ ଏହି ଯୋଜନାର ଜିଲ୍ଲାର ବିଭିନ୍ନ କାର୍ଯ୍ୟକ୍ରମଗୁଡିକୁ ସଫଳ ଭାବରେ କାର୍ଯ୍ୟକାରୀ କରାଇବା ଯାଞ୍ଚ ଏବଂ ତଦାରଖ/ପରିଦର୍ଶନ କରିବେ।

➤ ଜିଲ୍ଲାପାଳ ଯୋଜନା ଅନୁଯାୟୀ ସମସ୍ତ କାର୍ଯ୍ୟକ୍ରମର ସ୍ଥିତି/ପ୍ରଗତି ଜାଣିବା ନିମନ୍ତେ ନିୟମିତ ସମୀକ୍ଷା କରିବେ ଏବଂ ପ୍ରଗତି ବିବରଣୀ ପ୍ରଦାନ କରିବେ।

➤ ଜିଲ୍ଲା ଟାସ୍କ ଫୋର୍ସ ଏବଂ ବ୍ଲକ୍ ଟାସ୍କ ଫୋର୍ସ ଗଠନ ହେବା ନିଶ୍ଚିତ କରାଇବେ।

➤ ଜିଲ୍ଲାପାଳ ଜିଲ୍ଲା କାର୍ଯ୍ୟକାରୀ ଯୋଜନା ଏବଂ ତ୍ରୈମାସିକ ବିବରଣୀ ପ୍ରଦାନ କରିବା ସୁନିଶ୍ଚିତ କରିବେ।

➤ ଜିଲ୍ଲାପାଳ ଯୋଜନାର ସଫଳ ରୂପାୟନ ନିମନ୍ତେ ରାଜ୍ୟ ସ୍ତରରେ ମହିଳା ଓ ଶିଶୁ ବିକାଶ ବିଭାଗ ସହିତ ଯୋଗାଯୋଗ କରିବେ।

➤ ଯୋଜନାର ସଫଳ କାର୍ଯ୍ୟକାରିତା ନିମନ୍ତେ ଅନ୍ୟାନ୍ୟ କାର୍ଯ୍ୟ କରିବେ।

➤ ଜିଲ୍ଲାପାଳ ଯୋଜନା କାର୍ଯ୍ୟକାରୀ ହେବାର ପ୍ରଥମ ବର୍ଷରେ ଯୋଜନାର ସ୍ଥିତି ସର୍ବେକ୍ଷଣ କରିବେ। ତା'ପର ବର୍ଷ ଜିଲ୍ଲାରେ ଯୋଜନାର ସ୍ଥିତି ଏବଂ ପ୍ରଭାବ ଜାଣିବା ପାଇଁ ବାର୍ଷିକ ଭିତ୍ତିରେ କାର୍ଯ୍ୟକ୍ରମର ତଦାରଖ କରିବେ।

**ଜିଲ୍ଲା ସମାଜ ମଙ୍ଗଳ ଅଧିକାରୀ / ସମନ୍ୱିତ ଶିଶୁ ବିକାଶ ଅଧିକାରୀଙ୍କ ଭୂମିକା**

➤ ଜିଲ୍ଲା ସମାଜ ମଙ୍ଗଳ ଅଧିକାରୀ / ସମନ୍ୱିତ ଶିଶୁ ବିକାଶ ଅଧିକାରୀ ଜିଲ୍ଲା ଯୋଜନା ପ୍ରସ୍ତୁତ ଏବଂ ଯୋଜନା କାର୍ଯ୍ୟକାରିତା ସମ୍ପର୍କରେ ବିଭିନ୍ନ କାର୍ଯ୍ୟକ୍ରମ ପରିଚାଳନା କରିବେ।

➤ ଜିଲ୍ଲାର ତ୍ରୈମାସିକ ବିବରଣୀ ପ୍ରସ୍ତୁତ କରିବେ।

➤ ବ୍ଲକ୍‌ଗୁଡିକର ତ୍ରୈମାସିକ ବିବରଣୀ ଜିଲ୍ଲା ସ୍ତରରେ ଏକତ୍ର କରିବେ।

**ବ୍ଲକ୍ ଉନ୍ନୟନ ଅଧିକାରୀଙ୍କ ଭୂମିକା**

➤ ବ୍ଲକ୍ ଉନ୍ନୟନ ଅଧିକାରୀ ବ୍ଲକ୍ ଟାସ୍କ ଫୋର୍ସର ନିୟମିତ ତ୍ରୈମାସିକ ବୈଠକ ସୁନିଶ୍ଚିତ କରିବେ।

➤ ନିର୍ଦ୍ଧାରିତ ସମୟରେ ଅଧିକତର କାର୍ଯ୍ୟ କରିବା ନିଶ୍ଚିତ କରିବେ।

➤ ବ୍ଲକ୍ ଉନ୍ନୟନ ଅଧିକାରୀ ଯୋଜନାର ସଫଳ ଭାବରେ କାର୍ଯ୍ୟକାରୀ କରାଇବା, ଯାଞ୍ଚ ଏବଂ ତଦାରଖ କରାଇବା ଏବଂ ଜିଲ୍ଲାକୁ ତ୍ରୈମାସିକ ବିବରଣୀ ପ୍ରଦାନ କରିବା ସୁନିଶ୍ଚିତ କରିବେ।

➤ ଯୋଜନାର ସଫଳ ରୂପାୟନ ନିମନ୍ତେ ଅନ୍ୟାନ୍ୟ କାର୍ଯ୍ୟ କରିବେ।

